# ଭାଗବତ କଥା

( ଏକତ୍ରିଂଶ ଖଣ୍ଡ )

ଲେଖକ :

ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

ସମ୍ପାଦନା :

ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର

ଅନୁବାଦକ :

ପଣ୍ଡିତ ନୀଳମଣି ମିଶ୍ର

ପ୍ରକାଶକ :



ଧର୍ମଗ୍ରନ୍ଥ ଷ୍ଟୋର

# ଭାଗବତ କଥା

## ଏକତ୍ରିଂଶ ଖଣ୍ଡ

ପ୍ରକାଶିକା :
ଶ୍ରୀମତୀ ଅନ୍ନପୂର୍ଣ୍ଣା ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨
ପ୍ରଥମ ସଂସ୍କରଣ : ୧୯୮୯
ପ୍ରଚ୍ଛଦ :
ଅସୀତ୍ ମୁଖାର୍ଜୀ
ମୁଦ୍ରଣ :
କଲ୍ୟାଣୀ ପ୍ରିଣ୍ଟର୍ସ
ପିଠାପୁର, କଟକ
ମୂଲ୍ୟ :
ସାଦା : ୧୭ ଟଙ୍କା
ବନ୍ଧାଇ : ୨୦ ଟଙ୍କା

# BHAGABAT KATHA

( Thirtyone part )

Sri Prabhudatta Brahmachari

Publisher :
Smt. Annapurna Mishra
Cuttack Students' Store
Balubazar, Cuttack-753002
First Edition-1989
Price :
Popular Rs. 17-00
Deluxe : Rs. 20-00



ଶ୍ରୀ ପ୍ରଭୁଦତ୍ତ ବ୍ରହ୍ମଚାରୀ

# ସୂଚୀ


| ବିଷୟ | ପୃଷ୍ଠା |
|---|---|
| ୧ । ଜଗଜ୍ଜନନୀ ଜାନକୀଙ୍କ ପୃଥିବୀ ପ୍ରବେଶ | ୧ |
| ୨ । ଶ୍ରୀରାମଙ୍କ ଶୋକ | ୩୧ |
| ୩ । ଲୀଳାସମ୍ବରଣର ପ୍ରସ୍ତାବନା | ୩୮ |
| ୪ । ଶ୍ରୀରାମଙ୍କ ଦ୍ୱାରା ଲକ୍ଷ୍ମଣଙ୍କ ପରିତ୍ୟାଗ | ୪୬ |
| ୫ । ଶ୍ରୀରାମଙ୍କ ପରମଧାମ ଯାତ୍ରା | ୫୩ |
| ୬ । ଅନ୍ୟ ଜୀବଙ୍କ ପରମ ଗତି | ୫୯ |
| ୭ । ସୁଖାନ୍ତ ରାମ ଚରିତ | ୬୩ |
| ୮ । ଶ୍ରୀରାମ ଚରିତ ମାହାତ୍ମ୍ୟ | ୭୧ |
| ୯ । ଇକ୍ଷ୍ୱାକୁ ବଂଶର ଅନ୍ୟ ରାଜାଗଣ | ୭୭ |
| ୧୦ । ନିମି ବଂଶ ବର୍ଣ୍ଣନ | ୮୩ |
| ୧୧ । ଆଦି ବିଦେହ ମହାରାଜ ଜନକ | ୮୭ |
| ୧୨ । ମହାରାଜ ସୀରଧ୍ୱଜ | ୯୧ |
| ୧୩ । ମହାରାଜ ଧର୍ମଧ୍ୱଜ ଓ ଯୋଗିନୀ ସୁଲଭା | ୯୭ |
| ୧୪ । ମହାରାଜ କେଶିଧ୍ୱଜ ଓ ଖାଣ୍ଡିକ୍ୟ | ୧୦୨ |
| ୧୫ । କେଶିଧ୍ୱଜ ଦ୍ୱାରା ଖାଣ୍ଡିକ୍ୟଙ୍କ ଜ୍ଞାନୋପଦେଶ | ୧୦୭ |
| ୧୬ । ଜନକବଂଶୀୟ ଶେଷ ରାଜା | ୧୧୪ |
| ୧୭ । ମହାରାଜ ଦଣ୍ଡକ | ୧୨୭ |




# ଜଗଜ୍ଜନନୀ ଜାନକୀଙ୍କ ପୃଥିବୀ ପ୍ରବେଶ

ମୁନୌ ନିକ୍ଷିପ୍ୟ ତନୟୌ ସୀତା ଭର୍ତ୍ରା ବିବାସିତା ।
ଧ୍ୟାୟନ୍ତୀ ରାମଚରଣୌ ବିବରଂ ପ୍ରବିବେଶହ ॥

(ଶ୍ରୀ:ଭା:-୯ ସ୍କ-୧୧ ଅ-୧୫ ଶ୍ଲୋ)

## ଛପ୍ପୟ

ଅଶ୍ୱମେଧ କୌ ଅଶ୍ୱ ପକର ଲବକୁଶ ନେ ଲୀନ୍ହୋ ।
ନହୀଁ ଛୋଡ଼ୟୌ ନହୀଁ ଡରେ ସମର ତର୍ତି ତେ ତିନ କୀନ୍ହୋ ॥
ପୁନି ମୁନି ସଁଗ ମଖ ଗୟେ ରାମ କୀ କଥା ସୁନାଈ ।
ଜାନି ତନୟ ନିଜ ରାମ ଜନକ ତନୟା ବୁଲବାଈ ।
ସହମୀ ସିକୁଡ଼ୀ ଲଜତେଂ, ମୁନି ପାଛେ ଣୁତ ସବସ ହିୟ ।
ଜନୁ କରୁଣା ସଁଗ ଶାନ୍ତ ଯେ, ଲେହିଁ ରାମଦେ ଧୀର ଧୟ ॥

ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ! ପତିଙ୍କଦ୍ୱାରା ନିର୍ବାସିତା ସୀତା ନିଜର ଦୁଇ ପୁତ୍ରଙ୍କୁ ଭଗବାନ ବାଲ୍ମୀକିଙ୍କୁ ସମର୍ପି ଦେଇ, ଶ୍ରୀରାମଙ୍କ ଚରଣ ଯୁଗଳକୁ ଧ୍ୟାନ କରିବା ସଙ୍ଗେ ସଙ୍ଗେ ପୃଥିବୀର ବିବରରେ ଡୁବିଗଲେ ।"

ହେ ଭଗବାନ୍ ! ତୁମେ ସଂସାରରେ ପ୍ରେମ କାହିଁକି ସୃଷ୍ଟି କଲ ? ଯଦି ପ୍ରେମ ବିନା ତୁମ ସୃଷ୍ଟି ଚଳୁନଥିଲା, ତେବେ ତା'ସହିତ ବିୟୋଗର ବିଷ କାହିଁକି ମିଶାଇ ଦେଲ ? ଯଦି ବିୟୋଗ ପାଇଁ ତୁମ ମନରେ ଏତେ ଦରଦ ଥିଲା, ତେବେ ମିଳନ ସୃଷ୍ଟି କଲ କାହିଁକି ? ତା' ଛଡ଼ା ବନ୍ଧି ରହିବାପାଇଁ ଇଚ୍ଛା ମନରେ ରଖିଦେଲ କାହିଁକି ? ଯଦି ଏସବୁ ନିତାନ୍ତ ଆବଶ୍ୟକ ଥିଲା, ତେବେ ଲୋକଲଜ୍ଜା, ମର୍ଯ୍ୟାଦା, କର୍ତ୍ତବ୍ୟପରାୟଣତା ଆଦି ଝଞ୍ଜଟ ତା' ମଧ୍ୟରେ ପୂରାଇଲ କାହିଁକି ? ପ୍ରେମୀ ଏହାର ଫଳରେ ପ୍ରତ୍ୟେକ ପଦକ୍ଷେପରେ ପେଷି ହୋଇଯାଉଛି । ପ୍ରେମ ଏପରି ଏକ ରାଜଯୋଗ

ଯେ, ତାହା ସାଧାରଣ ଜୀବନ ଗୁଡ଼ିଯାଏ ନାହିଁ, ସ୍ନେହର ବନ୍ଧନ ଅତୁଟ । ତା' ଫଳରେ ଅବଶ୍ୟ ପ୍ରାଣ ବାହାରି ଯାଏ ନାହିଁ; କିନ୍ତୁ ବରାବର ସେଇଥିରେ ଘାଣ୍ଟି ହୋଇ ମରିବାକୁ ପଡ଼େ । ଛଟପଟ ହୋଇ ଜୀବନ ବିତାଇବାକୁ ପଡ଼େ । ପ୍ରେମାସ୍ପଦ ବ୍ୟକ୍ତିଙ୍କୁ ପ୍ରେମପାଇଁ ମାନ, ଅପମାନ ଓ ଲୋକାପବାଦ ଆଦି ସବୁକିଛି ସହିବାକୁ ପଡ଼େ, ଅତି ସୁକୁମାର ହୃଦୟରେ ପ୍ରେମିର କଠୋର ପ୍ରହାର ସହ୍ୟ କରିବାକୁ ପଡ଼େ । ହେ ପରମେଶ୍ୱର, ଏହା ତୁମର କି ବିଡ଼ମ୍ବନା ? କେଣୁ କହିହେବ ନାହିଁ ପ୍ରେମଜନିତ ବିରହରେ ସୁଖ ଥାଏ ନା ଦୁଃଖ ରହିଥାଏ !

ସୂତ ମହର୍ଷି କହିଲେ—"ହେ ମୁନିବୃନ୍ଦ ! ଭଗବାନ ବାଲ୍ମୀକିଙ୍କ ଆଶ୍ରମରେ କୁଶ ଲବ ଜନ୍ମଗ୍ରହଣ କଲେ । ମୁନିବର ଶାସ୍ତ୍ରୀୟ ବିଧିବିଧାନରେ ତାଙ୍କର ସମସ୍ତ ସଂସ୍କାର ସମ୍ପାଦନ କଲେ । ସେ ଦୁହେଁ ଅଶ୍ୱିନୀକୁମାରଙ୍କ ପରି ସୁନ୍ଦର ଥିଲେ ଏବଂ ଶୁକ୍ଳପକ୍ଷର ଚନ୍ଦ୍ରମା ସଦୃଶ ପ୍ରତ୍ୟେକ ଆଶ୍ରମ ବାସୀଙ୍କର ଅତ୍ୟନ୍ତ ପ୍ରିୟ ଥିଲେ । ମହାମୁନି ବାଲ୍ମୀକି ସେ ଦୁହିଁଙ୍କୁ ଧନୁର୍ବେଦ ଶିଖାଇଲେ । ସେ ଦୁହେଁ ସମସ୍ତ ପ୍ରକାର ଦିବ୍ୟାସ୍ତ୍ର ବିଧି ଅନୁସାରେ ଶିକ୍ଷା କରିବାକୁ ଲାଗିଲେ । ସେ ଦୁହେଁ କବଚ ଧାରଣ କରି, ହାତରେ ଧନୁଶର, ପିଠିରେ ଶରପୂର୍ଣ୍ଣ ତୂଣୀର ବାନ୍ଧି ବୁଲୁଥିବାବେଳେ ମନେହୁଏ; ସତେ ଅବା ବୀରରସ ସାକ୍ଷାତ୍ ମୂର୍ତ୍ତିମାନ ହୋଇ ବୁଲୁଛି । ସୀତାଦେବୀ ଦୁହିଙ୍କୁ ଦେଖି ବେଳେ ବେଳେ ଭ୍ରମରେ ପଡ଼ୁଥିଲେ—ସତେ କ'ଣ ରାମଚନ୍ଦ୍ର ସେଠାକୁ ଆସିଗଲେ କି ? ବାଳକ ଦୁହିଙ୍କୁ ଦେଖିବା ମାତ୍ରେ, ସୀତାଙ୍କ ମନରେ ଧନୁଭଙ୍ଗର ଦୃଶ୍ୟ ସାକାର ହୋଇ ଉଠୁଥିଲା । ଧନୁଭଙ୍ଗ ସମୟରେ ଶ୍ରୀରାମଚନ୍ଦ୍ର ଠିକ୍ ଏହିପରି ଦେଖା ଯାଉଥିଲେ । ତାଙ୍କ ଚାଲିଚଳନ, ରଙ୍ଗଢଙ୍ଗ, ଭାବଭଙ୍ଗୀ, ହସଖୁସି ସବୁ ଠିକ୍ ଏହିପରି ଅବିକଳ ଥିଲା । ପିଲା ଦୁଇଟି ଅତି ଆଦରରେ ଆସି ସୀତାଙ୍କୁ କୁଣ୍ଢାଇ ପକାଇ 'ମାଆ' 'ମାଆ' ଡାକ ଛାଡ଼ୁଥିଲେ । ସେତେବେଳେ ସୀତାଦେବୀଙ୍କ ହୃଦୟ ପୂରି ଉଠୁଥିଲା ଏବଂ ସେ ତାଙ୍କ ଗଣ୍ଡଦେଶରେ ସରୁ ଚୁମାଟିଏମାନ ଆଙ୍କି ଦେଉଥିଲେ । ପିଲାଦୁହେଁ ବେଳେ ବେଳେ ଭାବବିହ୍ୱଳ ହୋଇ ପଚାରୁଥିଲେ—"ମାଆ, ଆମ ବାପା କିଏ ?"

ଦେବୀ ଜାନକୀ ଆଖିରେ ଲୁହ ଛଳ ଛଳ କରି କହୁଥିଲେ—"ବାପା, ତୁମର ମାତା ପିତା ହେଉଛନ୍ତି—ମୁନିବର ବାଲ୍ମୀକି । ମୁଁ କେବଳ ତୁମ ଦୁହିଙ୍କ ଧାଈ ମାଆ । ମୁନିବର ଦୟାକରି ତୁମ ଦୁହିଙ୍କ ଲାଳନ ପାଳନ ଲାଗି ମୋତେ ଖାଇବାକୁ ଦେଇ ପୋଷିଛନ୍ତି ।"

ପୁଅ ଦୁହେଁ ଏକା ସାଥିରେ କହି ଉଠନ୍ତି—"ନା · ମା', ତୁମେ ଆମକୁ ଭଣ୍ଡି ଦେଉଛ । ତୁମେ ହିଁ ଆମର ମାଆ ! ତୁମେ ହିଁ ପ୍ରକୃତରେ ଆମର ଜନନୀ ! ସେଦିନ ସେଇ ଋଷିକୁମାର କହୁଥିଲା—ତୁମ ବାପା ବଡ଼ ନିଷ୍ଠୁର ! ସେ ତୁମ

ମାଆଙ୍କୁ ଘରୁ ତଡ଼ି ଦେଇଛନ୍ତି । ସତରେ କ'ଣ ମାଆ, ଆମ ବାପା ଅତି ନିର୍ଦ୍ଦୟ ? ସେ କ'ଣ ପ୍ରକୃତରେ ତୁମକୁ ଘରୁ ତଡ଼ି ଦେଇଛନ୍ତି ?''

ଏହା ଶୁଣିବା ମାତ୍ରେ ସୀତାଙ୍କ ଧୈର୍ଯ୍ୟର ବାନ୍ଧବନ୍ଧ ଛଡ଼ିକେ ଭାଙ୍ଗିଯାଏ । ସେ କହନ୍ତି—''ନାଃ……ବାପା, ସେପରି କୁହନାହିଁ । ତୁମ ବାପା ଆଦୌ ନିର୍ଦ୍ଦୟ ନୁହନ୍ତି; ସେ ଆଦୌ ସାଧାରଣ ମନୁଷ୍ୟ ନୁହନ୍ତି, ସେ ଦେବତା ! ସେ ନିଶ୍ଚୟ ଦିନେ ନା ଦିନେ ତୁମ ଉପରେ ଦୟା ଓ ଆଶୀର୍ବାଦ ଅଜାଡ଼ି ଦେବେ ।''

ତା'ପରେ ପିଲା ଦିଓଟି ମନେ ମନେ କୋମଳ ହୋଇଯାଇ କହନ୍ତି— ''ମାଆ, ତୁମକୁ ବାପାଙ୍କ କଥା ପଚାରିଲେ, ତୁମେ ମୁହଁ ଶୁଖାଇ ଦେଉଛ, ତୁମ ଆଖି ଯୋଡ଼ିକ ଛଳଛଳ ହୋଇଯାଉଛି । ତୁମେ ମନେ ମନେ ଖୁବ୍ କଷ୍ଟ ପାଉଛ । ଆଉ, ଆଉ ଦିନେହେଲେ ଆମେ ତୁମକୁ ବାପାଙ୍କ ବିଷୟରେ ପଚାରିବୁ ନାହିଁ ।'' ଏହିପରି ଭାବରେ ପିଲାଦୁହେଁ ଅତି ସ୍ନେହରେ ଲାଳିତ ପାଳିତ ହେବାକୁ ଲାଗିଲେ । ସୀତାଦେବୀ ପିଲାଦୁହିଙ୍କୁ ବୀରବେଶରେ ଦେଖିଲେ ତାଙ୍କ ମନଃ ପୂରିଉଠେ । କିନ୍ତୁ ଶ୍ରୀରାମଙ୍କ ମୋହିନୀ ଛବି ତାଙ୍କ ହୃଦୟ-ସିଂହାସନରେ ସବୁବେଳେ ଉଙ୍କି ମାରୁଥାଏ । ସେ ସବୁବେଳେ ତାଙ୍କର ଚିନ୍ତାରେ ନିମଗ୍ନ ରହୁଥିଲେ ।

ଏଣେ ଶ୍ରୀରାମଚନ୍ଦ୍ର ସୀତାଙ୍କ ବିରହରେ ଅତ୍ୟନ୍ତ ବିଷଣ୍ଣ ହୋଇ ଯାଗ-ଯଜ୍ଞରେ ମନ ଲଗାଇ କାଳଯାପନ କଲେ । ମୁନିମାନଙ୍କ ଆଜ୍ଞାନୁସାରେ ସେ ଅନେକ ଅଶ୍ୱମେଧ ଯଜ୍ଞ କରିଥିଲେ । ଶତ୍ରୁଘ୍ନ ଲବଣାସୁରକୁ ମାରି ମଥୁରାରେ ନିଜର ରାଜଧାନୀ ନିର୍ମାଣ କଲେ । ଏହାପରେ ଶ୍ରୀରାମଙ୍କ ଇଚ୍ଛା ହେଲା—ଗୋଟିଏ ରାଜସୂୟ ଯଜ୍ଞ କରିବା ଲାଗି, ସେ ନିଜ ଅଭିଳାଷ ସମସ୍ତଙ୍କ ଆଗରେ ପ୍ରକାଶ କଲେ । ଏହାଶୁଣି ହାତଯୋଡ଼ି ଭରତ କହିଲେ—''ପ୍ରଭୋ, ଆପଣ ଆମର ସ୍ୱାମୀ, ଆମେ ଆପଣଙ୍କର ତୁଚ୍ଛ ସେବକ ମାତ୍ର । ଆପଣ ଯାହା ଆଜ୍ଞା ଦେବେ, ପାଳନ କରିବା ଆମର ଧର୍ମ । ତଥାପି ମୋର ଏକମାତ୍ର ତୁଚ୍ଛ ଅନୁରୋଧ—ଆପଣ ରାଜସୂୟ ପରି ପ୍ରଚଣ୍ଡ ହିଂସାତ୍ମକ ଯଜ୍ଞ କରନ୍ତୁ ନାହିଁ । ସମସ୍ତ ରାଜସମାଜକୁ ଯୁଦ୍ଧରେ ଜୟ କରିବା ପରେ ରାଜସୂୟ ଯଜ୍ଞ କରାଯାଏ । ବହୁ ରାଜା ସ୍ନେହରେ ଆପଣଙ୍କ ବଶୀଭୂତ ହୋଇଛନ୍ତି । ରାଜସୂୟ ଯଜ୍ଞର ନାମ ଶୁଣିବା ମାତ୍ରେ ରାଜାମାନେ ସାଧାରଣତଃ ଚିଡ଼ି ଉଠନ୍ତି । ସେମାନଙ୍କ ମନରେ ଅହଂ ଜାଗି ଉଠେ । ତେଣୁ ଅସମୟରେ ରାଜାମାନଙ୍କୁ ଉତ୍ତେଜିତ କରିବା ଠିକ୍ ନୁହେଁ । ଏ ଯଜ୍ଞ ଛଡ଼ା ଆହୁରି ଅନେକ ପୁଣ୍ୟପ୍ରଦ ଯଜ୍ଞ ତ ରହିଛି ।''

ଏହା ଶୁଣିବା ମାତ୍ରେ ଶ୍ରୀରାମଚନ୍ଦ୍ର ଭରତଙ୍କୁ ଉଲ୍ଲସିତ କରାଇ କହିଲେ— ''ଭରତ ! ତୁମେ ପ୍ରକୃତରେ ବୁଦ୍ଧିମାନ୍ ଏବଂ ମୋର ପରମ ମିତ୍ର ଅଟ । ଠିକ୍ ଅଛି,

ମୁଁ ତୁମର କହିବା ଅନୁସାରେ ରାଜସୂୟ ଯଜ୍ଞ କରିବାର ବାସନା ତ୍ୟାଗ କରି ଦେଉଛି । କାରଣ, ଠିକ୍ କଥା ପିଲାଟିଏ କହିଲେ ମଧ୍ୟ ତାକୁ ମାନିବା ଉଚିତ । କିନ୍ତୁ ଅଶ୍ୱମେଧ ଯଜ୍ଞ କରିବାରେ ତୁମର ବୋଧହୁଏ ଆପତ୍ତି ନାହିଁ । ରାଜା, ମହାରାଜା, ଏପରି ଇନ୍ଦ୍ର ମଧ୍ୟ ଅଶ୍ୱମେଧ ଯଜ୍ଞ କରି ପାପମୁକ୍ତ ହୋଇଛନ୍ତି ।"

ଏହାଶୁଣି ଭରତ କହିଲେ—"ହଁ, ମହାରାଜ, ଆପଣ ଅଶ୍ୱମେଧ ଯଜ୍ଞ କରିପାରନ୍ତି । ଏଥିରେ ବ୍ରାହ୍ମଣମାନଙ୍କୁ ଦାନ ଧ୍ୟାନ କରିବାର ସୁଯୋଗ ମିଳିଯିବ ଏବଂ ଅତିଥି-ସତ୍କାର ପାଇଁ ଆପଣଙ୍କୁ ଉପଯୁକ୍ତ ଅବସର ମଧ୍ୟ ମିଳିବ ।"

ଏହା ଶୁଣିବା ମାତ୍ରେ ଶ୍ରୀରାମଚନ୍ଦ୍ର ଅଶ୍ୱମେଧ ଯଜ୍ଞ କରିବା ଲାଗି ଆଜ୍ଞା ଦେଲେ । ବିଭିନ୍ନ ସ୍ଥାନରୁ ବେଦଜ୍ଞ ବ୍ରାହ୍ମଣମାନଙ୍କୁ ଡକାଇ ଆଣିଲେ । ସରଯୂ ନଦୀ ତଟରେ ଗୋଟିଏ ବିସ୍ତୃତ ପଡ଼ିଆରେ ଯଜ୍ଞଶାଳା ନିର୍ମିତ ହେଲା । ଅଶ୍ୱଶାଳାରୁ ଗୋଟିଏ ଉତ୍ତମ ଲକ୍ଷଣଯୁକ୍ତ ଘୋଡ଼ା ବଛା ହୋଇ ଆସିଲା । ତାକୁ ଯଥାବିଧିରେ ପୂଜା କରି ଛାଡ଼ି ଦିଆଗଲା । ତା'ର ସୁରକ୍ଷା ନିମିତ୍ତ ଶତ୍ରୁଘ୍ନ ନିଯୁକ୍ତ ହେଲେ । ତାଙ୍କ ସହିତ ଭରତଙ୍କ ପୁତ୍ର ପୁଷ୍କଳ, ହନୁମାନ ଏବଂ ସୁଗ୍ରୀବ ମଧ୍ୟ ଗଲେ । ଚତୁରଙ୍ଗବଳ ସହିତ ଶତ୍ରୁଘ୍ନ ଘୋଡ଼ାର ପଛେ ପଛେ ଚାଲିଲେ । ଅଶ୍ୱ ନିଜ ଇଚ୍ଛାରେ ଯେଉଁଆଡ଼େ ଯାଏ, ଶତ୍ରୁଘ୍ନ ସେନା ସହିତ ତା'ର ଅନୁଗମନ କଲେ । ଘୋଡ଼ା ଅଙ୍ଗ, ବଙ୍ଗ, କଳିଙ୍ଗ, ସୌରାଷ୍ଟ୍ର, ମଗଧ, ପୌଣ୍ଡ୍ର, ଉତ୍କଳ, ଗୁର୍ଜର, କୁରୁ ଓ ଜାଙ୍ଗଲ ଆଦି ବହୁ ଦେଶ ବୁଲି ବୁଲି ଶେଷରେ ବ୍ରହ୍ମାବର୍ତ୍ତ ମଧ୍ୟରେ ପ୍ରବେଶ କଲା । ସ୍ୱେଚ୍ଛାରେ ବିଚରଣ କରି କରି ଶେଷରେ ସେ ଆସି ଗଙ୍ଗା ତଟରେ ଥିବା ବାଲ୍ମୀକିଙ୍କ ଆଶ୍ରମ ନିକଟସ୍ଥ ଜଙ୍ଗଲରେ ଉପସ୍ଥିତ ହେଲା । ସେହି ସମୟରେ କୁଶଙ୍କ ସାନଭାଇ ଲବ ତାକୁ ଦେଖି ପକାଇଲା । ଲବ ଋଷି କୁମାରମାନଙ୍କ ସହିତ କୁଶ ସମିଧ ଆଣିବାପାଇଁ ବନକୁ ଯାଇଥିଲା । ସେ ସୁସଜ୍ଜିତ ଘୋଡ଼ାଟିକୁ ଦେଖି କହିଲା—"ଭାଇମାନେ, ଏ ସୁନ୍ଦର ଘୋଡ଼ାଟିକୁ ଦେଖିଲ ! ଆରେ, ଏହାର ମୁଣ୍ଡରେ ଗୋଟିଏ ସୁବର୍ଣ୍ଣ ପତ୍ର ଝୁଲୁଛି । ସେଥିରେ କ'ଣ ସବୁ ଲେଖାଯାଇଛି । ଚାଲ, ତାକୁ ଧରି ସେହି ପତ୍ରଟିକୁ ପଢ଼ିବା । ତୁମେମାନେ ଭୟ କରୁଛ କି ? କିଛି ଡର ନାହିଁ, ମୁଁ ଅଛି ।"

ଏହା କହି ସେ ଋଷିକୁମାରମାନଙ୍କୁ ସେଠାରେ ଠିଆ କରାଇ ଦେଇ, ହାତରେ ଧନୁଶର ଧରି ଘୋଡ଼ା ପାଖକୁ ଗଲା । ସେ ଘୋଡ଼ାଟିକୁ ଧରି ପକାଇ, ତା' ମୁଣ୍ଡରେ ବନ୍ଧା ହୋଇଥିବା ପତ୍ରଟିକୁ ପାଠ କଲା । ସେଥିରେ ଲେଖାଥିଲା—"ଏ ଘୋଡ଼ା ଶ୍ରୀରାମଚନ୍ଦ୍ରଙ୍କର । ଏହା ଅଶ୍ୱମେଧ ଘୋଡ଼ା । ଯେଉଁ ବ୍ୟକ୍ତି ପ୍ରକୃତରେ କ୍ଷତ୍ରିୟ, ସେ ଏ' ଘୋଡ଼ାକୁ ଧରିବ । ଅନ୍ୟଥା ସେ ଶ୍ରୀରାମଙ୍କ ଆଜ୍ଞାଧୀନ ହୋଇ

ରହିବ ।" ଏହା ପାଠ କରିବା ମାତ୍ରେ ଲବର ଭ୍ରୂକୁଟୀ କୁଟିଳ ହୋଇଗଲା । ସେ କ୍ରୋଧରେ ହତଜ୍ଞାନ ହୋଇ କହିଲା—"ଏ, ମଦଗର୍ବୀ ରାଜା କିଏ ? ସେ କ'ଣ ନିଜକୁ ସଂସାରରେ ସବୁଠାରୁ ବଡ଼ ବୋଲି ମନେ କରୁଛି ! ଆମେ କ'ଣ ତା'ହେଲେ କ୍ଷତ୍ରିୟ ନୋହୁଁ ? ଆମେ କ'ଣ ମହର୍ଷି ବାଲ୍ମୀକିଙ୍କଠାରୁ ଅସ୍ତ୍ର ଶସ୍ତ୍ର ଶିକ୍ଷା ପାଇ ନାହୁଁ ? ଏ ରାଜା କିବା ଛାର, ସ୍ୱୟଂ ଇନ୍ଦ୍ର ଆସିଲେ ମଧ୍ୟ ଆମକୁ ଯୁଦ୍ଧରେ ଜୟ କରି ପାରିବେ ନାହିଁ ।"

ଏହା କହି ଲବ ସେ ଘୋଡ଼ାଟିକୁ ବାନ୍ଧି ପକାଇଲା । ଏହା ଦେଖି ମୁନି-କୁମାରମାନେ କହିଲେ—"ଲବ, ତୁମେ ଏପରି ଦୁଃସାହସ କାହିଁକି କରୁଛ ? ତୁମେ କ'ଣ ଜାଣନାହିଁ ଯେ ଏ' ଘୋଡ଼ାଟି ଅଯୋଧ୍ୟାର ରାଜା ଶ୍ରୀରାମଚନ୍ଦ୍ରଙ୍କ ଅଶ୍ୱମେଧ ଘୋଡ଼ା । ସ୍ୱର୍ଗର ରାଜା ଇନ୍ଦ୍ର ମଧ୍ୟ ଏ ଘୋଡ଼ାକୁ ଧରିବାପାଇଁ ସାହସ କରିବେ ନାହିଁ । ତୁମେ ବାଲାଚପଲତା ଛାଡ଼ିଦିଅ । ତୁମେ ଘୋଡ଼ାଟିକୁ ଛାଡ଼ିଦେଇ, ତାର ରକ୍ଷକମାନଙ୍କଠାରେ କ୍ଷମା ମାଗିନିଅ । ନୋହିଲେ ମହାନ୍ ଅନର୍ଥ ଘଟିବ ।"

ଲବ ଋଷିକୁମାରମାନଙ୍କୁ ଉପହାସ କରି କହିଲା—"ତୁମେମାନେ ଭୀରୁ, କାପୁରୁଷ ! ତୁମେମାନେ ବ୍ରାହ୍ମଣ କୁମାର ହୋଇଥିବାରୁ, ଏପରି ଭୟ କରୁଛ । ଏହା ପ୍ରକୃତରେ କ୍ଷତ୍ରିୟଙ୍କର କାର୍ଯ୍ୟ । ତୁମେ ଆଶ୍ରମକୁ ଫେରିଯାଇ ମିଷ୍ଟାନ୍ନ ଭୋଜନ କରି ସୁଖରେ ରୁହ । ମୁଁ ଏ ଘୋଡ଼ାଟିକୁ ନିଶ୍ଚୟ ବାନ୍ଧି ରଖିବି ! ଯେ ମୋ' ସହିତ ଯୁଦ୍ଧ କରିବାକୁ ଆସିବ, ମୁଁ ତାକୁ ନିଶ୍ଚୟ ପରାସ୍ତ କରିଦେବି ! ମୋତେ ସ୍ୱୟଂ ଭଗବାନ୍ ବାଲ୍ମୀକି ସ୍ୱହସ୍ତରେ ଅସ୍ତ୍ର ଶସ୍ତ୍ର ଶିକ୍ଷା ଦେଇଛନ୍ତି । ମୁଁ ଯୁଦ୍ଧ କରିବାର ଗୋଟିଏ ସୁଯୋଗ ପାଇଛି, ତାକୁ ଛାଡ଼ିଦେବି କିପରି ?"

ଋଷିକୁମାରମାନେ ଲବ କଥା ଶୁଣି ଚୁପ୍ ହୋଇ ଗୋଟିଏ ଗଛ ଉହାଡ଼ରେ ଛିଡ଼ା ହୋଇଗଲେ । ସେମାନଙ୍କ ମନରେ କୌତୁହଳ ଜାଗିଉଠିଲା ।

ସେହି ସମୟରେ ସୈନିକମାନେ ଗର୍ଜି ଉଠିଲେ—"କିଏ ସେ ? କାହାକୁ କାଳ ଡାକିଲାଣି ? ଜାଣିଶୁଣି କିଏ ସେ ଶ୍ରୀରାମଙ୍କ ଯଜ୍ଞ ଅଶ୍ୱକୁ ବାନ୍ଧିବାକୁ ଯାଉଛି ?"

ଏହା ଶୁଣି ଲବ କ୍ରୋଧରେ ଜର୍ଜରିତ ହୋଇ କହିଲା—"ମୁଁ ଘୋଡ଼ାଟାକୁ ବାନ୍ଧିଛି । ସେ ଘୋଡ଼ା ରାମର ହେଉ ବା ଶତ୍ରୁଘ୍ନର ହେଉ, ମୋର ସେଥିରେ ଯାଏ ଆସେ କେତେ ? ଦୁନିଆରେ କ'ଣ ଶ୍ରୀରାମ ବା ଶତ୍ରୁଘ୍ନ କେବଳ ଜଣେ ଜଣେ କ୍ଷତ୍ରିୟ ଅଛନ୍ତି ? ଯଦି କାହାର ଶକ୍ତି ଅଛି, ତେବେ ମୋ ସହିତ ଯୁଦ୍ଧ କରି ସେ ଘୋଡ଼ାକୁ ଛଡ଼ାଇ ନେଉ !"

ସୈନିକମାନେ ଶ୍ରେଷ୍ଠ ପିଲାଟିର ସାହସପୂର୍ଣ୍ଣ ଦମ୍ଭୋକ୍ତି ଶୁଣି ହସି ହସି କହିଲେ—"ଅରେ ! ଏ' ପିଲାଟି ନିଶ୍ଚୟ ଋଷିଙ୍କ ଆଶ୍ରମର ଗୋଟିଏ କ୍ଷତ୍ରିୟ ବାଳକ ।" ଆଉ ଜଣେ କହିଲା—"ସେ ସାମାନ୍ୟ ବାଳକ ପରି ମନେ ହେଉନାହିଁ । ମୁଁ ଭାବୁଛି—ସେ ସାକ୍ଷାତ୍ ସେ ବୀର ରସ ! ଏ ପିଲାଟିର ଚେହେରା ଶ୍ରୀରାମଚନ୍ଦ୍ରଙ୍କ ପରି ଦିଶୁଛି । ଠିକ୍ ତାଙ୍କର ପରି କମଳ ନୟନ, ସେହିପରି ବିଶାଳ ବକ୍ଷ, ବୃଷସ୍କନ୍ଧ ! ଧନୁଶର ଧାରଣ କରି ପିଲାଟି ଇନ୍ଦ୍ରଙ୍କ ପୁତ୍ର ଜୟନ୍ତ ପରି ଶୋଭା ପାଉଛି । ପିଲାମାନେ ସ୍ୱାଭାବିକ ଟିକିଏ ଚପଳ ହୋଇ ଥାଆନ୍ତି । ସେ ମଧ୍ୟ ବାଳସୁଲଭ ଚପଳତା ବଶତଃ ଘୋଡ଼ାଟିକୁ ଧରି ବାନ୍ଧି ଦେଇଛି । ପିଲାଙ୍କର ସବୁ ଦୋଷ କ୍ଷମା କରିଦିଏ । ଚାଲ, ଘୋଡ଼ାଟିକୁ ଖୋଲି ଆମେ ନେଇଯିବା ।"

ଲବ ଏହା ଲକ୍ଷ୍ୟ କରି ଧନୁରେ ଶର ଯୋଚି ଆଗରେ ଛିଡ଼ା ହୋଇ କହିଲା—"ସାବଧାନ ! ଯେ ମୋ' ଘୋଡ଼ାଟିକୁ ଛୁଇଁବ, ମୁଁ ତା'ହାତ କାଟି ଦେବ !"

ସୈନିକମାନେ ଲବର ଆଦେଶ ପ୍ରତି ବିଶେଷ ଧ୍ୟାନ ନ ଦେଇ ଘୋଡ଼ାଟିକୁ ଫିଟାଇ ଆଣିବାପାଇଁ ଯାଆନ୍ତେ, ବାଳକ ଲବ କ୍ଷୁରାସ୍ତ୍ର ପ୍ରୟୋଗ କରି ସେମାନଙ୍କ ହାତ କାଟିଦେଲା । ତହୁଁ ସେମାନେ ଭୟରେ ଧାଇଁ ଯାଇ ଶତ୍ରୁଘ୍ନଙ୍କ ଆଗରେ ଗୁହାରି କଲେ ।

ଶତ୍ରୁଘ୍ନ ସୈନିକମାନଙ୍କଠାରୁ ସବୁ କଥା ଶୁଣି ସେନାପତି କାଳଜିତ୍‌ଙ୍କୁ ପଠାଇଲେ । କାଳଜିତ୍ ଅଶ୍ୱ ନିକଟକୁ ଯାଇ ଋଷିକୁମାର ମେଳରେ ଦୃଢ଼ତାର ସହିତ ଛିଡ଼ା ହୋଇଥିବା ଲବକୁ ଅନେକ ବୁଝାଇ ଘୋଡ଼ାଟିକୁ ଛାଡ଼ିଦେବା ଲାଗି କହିଲେ । ନୋହିଲେ ତାଙ୍କୁ ସେ ବାନ୍ଧି ପକାଇ ଅଯୋଧ୍ୟା ନେଇଯିବେ ବୋଲି ଧମକ ମଧ୍ୟ ଦେଲେ ।

ସେନାପତି କାଳଜିତ୍‌ଙ୍କ ନିବେଦନ ଓ ଧମକପୂର୍ଣ୍ଣ ବାଣୀ ବ୍ୟର୍ଥ ହୋଇଗଲା । ଲବ ଦୃଢ଼ତାର ସହିତ କହିଲା—"ସେନାପତି ମହୋଦୟ ! ବୀରଙ୍କର ବୟସ ବିଚାର କରାଯାଏ ନାହିଁ । ତୁମ ନାମ କାଳଜିତ୍ ଓ ମୋ ନାମ ଲବ । ତୁମର କାଳ ସ୍ୱରୂପ ମୁଁ ତୁମ ଆଗରେ ଛିଡ଼ା ହୋଇଛି । ଯଦି ତୁମେ ମୋତେ ଜିତିପାରିବ, ତେବେ ତୁମ ନାମ ସାର୍ଥକ ହୋଇଯିବ । ମୁଁ ଯଦି ଲବକରେ (କ୍ଷଣକରେ) ତୁମକୁ ଜିତି ନ ହିବ, ତେବେ ମୋ' ନାମ ଲବ ନୁହେଁ ।

ତଥାପି ସେନାପତିଙ୍କ ମନରେ ପିଲାଟି ପ୍ରତି ଦୟା ଜାତ ହେଲା । ସେ ତାକୁ ତା'ର କୁଳ, ଗୋତ୍ର ପଚାରି, ଏପରି ଦୁଃସାହସିକତା ନ ଦେଖାଇବା ଲାଗି ପୁଣି ଥରେ ବୁଝାଇ କହିଲେ । ତାହା ଶୁଣି ଲବ କହିଲା—"କୁଳ ଗୋତ୍ର କେବଳ ବିବାହ ଆଦିରେ ପଚରାଯାଏ । ଯୁଦ୍ଧ କରିବା ଲୋକର କୁଳ ଓ ଗୋତ୍ର ହେଉଛି—ତାର ଅସ୍ତ୍ରଶସ୍ତ୍ର । ସେହି ଯୁଦ୍ଧରୁ ହିଁ ତା'ର ପରିଚୟ ମିଳିଥାଏ ।"

କାଳଜିତ୍ ପୁଣି କହିଲେ "ବତ୍ସ ! ମୁଁ ରଥ ଉପରେ ବସିଛି, ତୁମେ ତଳେ ଚାଲୁଛ । ଏଥିରେ ଆମ ମଧ୍ୟରେ ଯୁଦ୍ଧ ହେବ କିପରି ?"

"କିଛି ଚିନ୍ତା ନାହିଁ...... ।" ଲବ ଉତ୍ତର ଦେଲା—"ମୁଁ ଏଇ କ୍ଷଣକ ମଧ୍ୟରେ ତୁମ ରଥକୁ ଭାଙ୍ଗି ଚୁରମାର୍ କରି ଦେବି । ତା'ପରେ ତୁମେ ମଧ୍ୟ ମୋରି ପରି ବିରଥ ହୋଇ ମୋ' ସହିତ ଯୁଦ୍ଧ କରିବ !"

ଏହା କହି ଲବ ଆଉ ଅପେକ୍ଷା ନ କରି ଗୋଟିଏ ବାଣ କାଳଜିତ୍ ଉପରକୁ ମାରିଦେଲା । ସେହି ବାଣର ଆଘାତରେ ସେନାପତି ନିତାନ୍ତ ବିଚଳିତ ହୋଇ ଉଠିଲେ । ସେ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଲବ ଉପରକୁ ବାଣ ନିକ୍ଷେପ କଲେ । ଲବର ତୂଣୀର ଥିଲା—ଅକ୍ଷୟ । ମହର୍ଷି ବାଲ୍ମୀକି ତାହାକୁ ପ୍ରଦାନ କରିଥିଲେ । ତେଣୁ ଶର ସମାପ୍ତ ହେଲା ନାହିଁ । ସେ ଅକ୍ଷୟ ତୂଣୀରରୁ ଶର ବର୍ଷା କରି କାଳଜିତ୍ଙ୍କ ସୈନିକମାନଙ୍କୁ ଭୂମିରେ ଶୁଆଇ ଦେଇ, ତାଙ୍କ ରଥଟିକୁ କ୍ଷଣକ ମଧ୍ୟରେ ନଷ୍ଟଭ୍ରଷ୍ଟ କରିଦେଲା । ସେନାପତି ଉପସ୍ଥିତ ହୋଇ ଗୋଟିଏ ମତ୍ତଗଜ ମଗାଇଲେ । ସେ ସେଇଥିରେ ବସି ଯୁଦ୍ଧ କରିବାକୁ ଲାଗିଲେ । ତେଣୁ ଲବ ହଠାତ୍ ଧାଇଁ ଯାଇ ଅଦ୍ଭୁତ ବିକ୍ରମର ସହିତ ଖଣ୍ଡ ତରବାରିରେ ହାତୀର ଶୁଣ୍ଢଟିକୁ କାଟି ପକାଇଲା । ଶୁଣ୍ଢଟି କଟିଯିବା ମାତ୍ରେ ହାତୀ ଭୀଷଣ ଗର୍ଜନ କରି ସେଠାରୁ ପଳାଇବାକୁ ଲାଗିଲା । ଲବ ବିଜୁଳି ପରି ତୀବ୍ର ବେଗରେ କୁଦିପଡ଼ି ହାତୀର ଦାନ୍ତ ଉପରେ ଗୋଡ଼ରଖି, ତା' ପିଠି ଉପରକୁ ଚଢ଼ିଗଲା । ହାତୀର ହାଉଦା ଉପରେ ମୂର୍ଚ୍ଛିତ ହୋଇ ପଡ଼ିଥିବା କାଳଜିତ୍ର ମୁଣ୍ଡରୁ ମୁକୁଟ ବାହାର କରି ତାକୁ ସେ ତଳକୁ ଗଡ଼ାଇ ଦେଲା । ସେନାପତିଙ୍କ ଦୁର୍ଦ୍ଦଶା ଦେଖି ସୈନ୍ୟମାନେ ପ୍ରାଣଭୟରେ ଦଉଡ଼ିବାକୁ ଲାଗିଲେ । ଲବ କ୍ଷଣକ ମଧ୍ୟରେ ହାତୀର ପିଠିରୁ ତଳକୁ କୁଦି ପଡ଼ି ସୈନ୍ୟମାନଙ୍କୁ ସଂହାର କରିବାକୁ ଲାଗିଲା ।

ଏହି ସମୟରେ କାଳଜିତ୍ର ଚେତା ଫେରି ଆସିଲା । ସେ ଧନୁଶର ଧରି ଯୁଦ୍ଧ ଲାଗି ଉଦ୍ୟତ ହେବାମାତ୍ରେ ଲବର ବାଣରେ ସେଇଠାରେ ଢଳି ପଡ଼ିଲେ । ଏହା ଦେଖି ସୈନ୍ୟମାନେ ଧାଇଁ ଯାଇ ଶତ୍ରୁଘ୍ନଙ୍କୁ ଏ ଖବର ଦେଲେ ।

କାଳଜିତ୍ଙ୍କ ମୃତ୍ୟୁ ସମ୍ବାଦ ପାଇବା ମାତ୍ରେ ଶତ୍ରୁଘ୍ନ ଆଶ୍ଚର୍ଯ୍ୟ ହୋଇଗଲେ । ସେ ବାଳକ କିଏ ବୋଲି ଶତ୍ରୁଘ୍ନ ଆଦୌ ଚିନ୍ତା କରି ନ ପାରି ଭରତଙ୍କ ପୁତ୍ର ପୁଷ୍କଳ

ସହିତ ହନୁମାନଙ୍କୁ ଯୁଦ୍ଧ ସ୍ଥଳକୁ ପଠାଇଲେ । ପୁଷ୍କଳ ଲବକୁ ଦେଖିବା ମାତ୍ରେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ଭାବିଲେ—ମୋର ବୟସର ଏ ତେଜସ୍ୱୀ ବାଳକ କିଏ ହୋଇପାରେ । ଧାଇଁ ଯାଇ ଲବର ପାଦକୁ ଚୁମ୍ବନ ଦେବାଲାଗି ମନ ତା'ର ବ୍ୟଗ୍ର ହୋଇ ଉଠିଲା । କିନ୍ତୁ ତାହା ଶତ୍ରୁର ଦେବତେଲେ ଅସହାୟ ଭାବରେ ଶରଣ ପଶିବା ପରି ହୋଇଥାନ୍ତା । ସେ ଲବକୁ ସମ୍ବୋଧନ କରି କହିଲେ—"ବୀରବର, ମୋ' ନାମ ପୁଷ୍କଳ । ମୁଁ ମହାରାଜା ଶ୍ରୀରାମଚନ୍ଦ୍ରଙ୍କ ଭାଇ ଭରତଙ୍କର ପୁତ୍ର । ଆପଣଙ୍କ ସହିତ ଯୁଦ୍ଧ କରିବାକୁ ମୁଁ ଆସିଛି । କିନ୍ତୁ ଆପଣ ତଳେ ଛିଡ଼ା ହୋଇଛନ୍ତି, ମୁଁ ରଥରେ ବସିଛି । ଏ ପ୍ରକାର ବିଷମତା ରଖି ଦୁଇ ବୀରଙ୍କ ମଧ୍ୟରେ ଯୁଦ୍ଧ ଶୋଭା ପାଏନାହିଁ । ମୁଁ ଆପଣଙ୍କ ପାଇଁ ଗୋଟିଏ ସୁସଜ୍ଜିତ ରଥ ମଗାଇ ଦେଉଛି । ଆପଣ ସେହି ରଥରେ ବସି ମୋ' ସହିତ ଯୁଦ୍ଧ କରନ୍ତୁ ।"

ଏହା ଶୁଣି ଲବ କହିଲେ—"ପୁଷ୍କଳ, ମୁଁ କ୍ଷତ୍ରିୟ ! କ୍ଷତ୍ରିୟମାନେ ଦାନ ଦିଅନ୍ତି, କେବେହେଲେ ହାତପାତି ଦାନ ନିଅନ୍ତି ନାହିଁ । ଶତ୍ରୁର ଅନୁଗ୍ରହରେ ମିଳିଥିବା ରଥରେ ବସି ଯୁଦ୍ଧ କରିବାରେ ବାହାଦୁରି କଅଣ ? ମୁଁ ମଧ୍ୟ କ୍ଷଣକ ମଧ୍ୟରେ ତୁମକୁ ରଥହୀନ କରାଇ ଦେବି । ତୁମେ ପ୍ରସ୍ତୁତ ହୋଇଯାଅ···।"

ଏହା କହି ଲବ ପୁଷ୍କଳ ଉପରକୁ ଶର ବର୍ଷା କଲେ । କେତେ ସମୟ ପର୍ଯ୍ୟନ୍ତ ଦୁଇବୀରଙ୍କ ମଧ୍ୟରେ ଘୋରତର ଯୁଦ୍ଧ ହେବାକୁ ଲାଗିଲା । ଲବର ବାଣ ପ୍ରହାରରେ ପୁଷ୍କଳ ଅତ୍ୟନ୍ତ ବ୍ୟସ୍ତ ହୋଇ ପଡ଼ିଲେ । ଶେଷରେ ଲବର ଗୋଟିଏ ଶର ତା' ଛାତିରେ ବାଜିବାରୁ ସେ ସେଇଠାରେ ମୂର୍ଚ୍ଛିତ ହୋଇ ଭୂମିରେ ଲୋଟି ପଡ଼ିଲେ । ମହାବୀର ହନୁମାନ୍ ସଙ୍ଗେ ସଙ୍ଗେ ପୁଷ୍କଳକୁ ଟେକି ଉଠାଇ ଶତ୍ରୁଘ୍ନଙ୍କ ନିକଟକୁ ନେଇଗଲେ ।

ପୁଷ୍କଳର ଦୟନୀୟ ଦଶା ଦେଖି ଶତ୍ରୁଘ୍ନଙ୍କର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ସେ ଭାବିଲେ—"ସତରେ କ'ଣ ବାଳକ ବେଶରେ ଆମ ଆଗରେ ଆସି କାଳ ପହଞ୍ଚି ଗଲା କି ? କିନ୍ତୁ ମହାବୀର ହନୁମାନ କାଳକୁ ମଧ୍ୟ ଅନାୟାସରେ ସାଧ୍ୟ କରି-ପାରନ୍ତି ! ତହୁଁ ସେ ହନୁମାନ୍‌ଙ୍କୁ କହିଲେ—"ହେ ଅଞ୍ଜନେୟ, ତୁମେ ସେ ବୀର ବାଳକଟିକୁ ଦୟାକର ନାହିଁ । ଯେତେ ଶୀଘ୍ର ସମ୍ଭବ ତୁମେ ତାକୁ ଗଦା ପ୍ରହାରରେ ଯମପୁରକୁ ପଠାଇ ଦିଅ ।"

ଏହା ଶୁଣିବା ମାତ୍ରେ ହନୁମାନ୍ କିଳକିଳା ନାଦ କରି ଯୁଦ୍ଧ କ୍ଷେତ୍ରକୁ ଗମନ କଲେ । ସେ ପର୍ବତ ଶିଖରରୁ ବିଶାଳ ବୃକ୍ଷମାନ ଉପାଡ଼ି ଆଣି ଲବ ଉପରେ ପ୍ରହାର କରିବାକୁ ଲାଗିଲେ । କିନ୍ତୁ ବୀର ବାଳକ ଲବ, ଆଖି ପିଛୁଳାକେ ସବୁତକ କାଟି ପକାଇ ମହାବୀର ହନୁମାନଙ୍କୁ ଅମୋଘ ବାଣରେ ମୂର୍ଚ୍ଛିତ କରାଇ ଦେଲେ ।

ହନୁମାନଙ୍କ ଅବସ୍ଥା ସମ୍ବନ୍ଧରେ ଖବର ପାଇବାମାତ୍ରେ ଶତ୍ରୁଘ୍ନଙ୍କ ଧୈର୍ଯ୍ୟ କୂଳ ଲଙ୍ଘନ କରିଗଲା । ସେ ଦିବ୍ୟାସ୍ତ୍ରମାନଙ୍କରେ ସଜ୍ଜିତହୋଇ ସମର ଭୂମିକୁ ଧାଇଁଗଲେ । ସେ ଦୂରରୁ ଲକ୍ଷ୍ୟ କଲେ—କ୍ଷୁଦ୍ର ସିଂହ ଶାବକ ପରି ବୀରବର ଲବ ଶତ୍ରୁର ଆଗମନକୁ ଅପେକ୍ଷା କରି ଛିଡ଼ା ହୋଇଛି । ସେ ବାଳକର ରୂପ ତଥା ବସ୍ତୁସ୍ୱକାନ୍ତି ଗୁଣ ଦେଖି ବିସ୍ମିତ ହୋଇଗଲେ । ସେ ମନେ ମନେ ସ୍ଥିର କଲେ— ଏ ବାଳକ ନିଶ୍ଚୟ ଶ୍ରୀରାମଚନ୍ଦ୍ରଙ୍କର ପୁତ୍ର । ସେ ପୁଣି ମନେ ମନେ ସ୍ମରଣ କରି ଡାକିଲେ—'ହଁ, ମୁଁ ଲବଣ ଦୈତ୍ୟକୁ ବଧ କରିବା ଲାଗି ଯିବା ସମୟରେ, ସୀତା ଦେବୀ ବାଲ୍ମୀକିଙ୍କ ଆଶ୍ରମରେ ଦୁଇଟି ପୁତ୍ର ସନ୍ତାନ ଜନ୍ମ କରିଥିଲେ । ସେ ବାଳକ ଦୁହେଁ ଏବେ ଠିକ୍ ଏତିକି ବଡ଼ ହୋଇଥିବେ । ଏହାର ଚାଲିଚଳଣ ଓ ରୂପ— ସବୁକିଛି ଅବିକଳ ଶ୍ରୀରାମଚନ୍ଦ୍ରଙ୍କ ପରି । କିନ୍ତୁ ଯାହାହେଲେ ମଧ୍ୟ ସେ ଯେତେବେଳେ ଯୋଦ୍ଧୃବେଶରେ ଏଠାରେ ଛିଡ଼ା ହୋଇଛି; ତା ପ୍ରତି ଦୟା ପ୍ରଦର୍ଶନ କରିବା ଭୀରୁତା ହେବ ।' "ଯୁଦ୍ଧ କ୍ଷେତ୍ରରେ ବୀରମାନେ ବାପା, ଭାଇ, ମିତ୍ର ତଥା ଆତ୍ମୀୟଙ୍କ ସହିତ ଯୁଦ୍ଧ କରୁଥିବାର ଦୃଷ୍ଟାନ୍ତ ଅନେକ ରହିଛି ।"

ତଥାପି ସେ ବାଳକ ନିକଟକୁ ଯାଇ କହିଲେ—"ବୀରବର, ତୁମେ କିଏ ? କେଉଁ ବଂଶରେ ତୁମର ଜନ୍ମ ? ତୁମର ମାତା ପିତା ଧନ୍ୟ ! ତୁମ ପରି ସମରବିଶାରଦ ସୌଭାଗ୍ୟଶାଳୀ ପୁତ୍ରକୁ ଜନ୍ମ ଦେଇ ସେମାନଙ୍କ ଜୀବନ ଧନ୍ୟ ହୋଇଛି । କିନ୍ତୁ ମନେରଖ, ମୋ ନାମ ଶତ୍ରୁଘ୍ନ । ବହୁ ଯୁଦ୍ଧରେ ମୁଁ ବିଜୟଶ୍ରୀରେ ବିମଣ୍ଡିତ ହୋଇଛି । ତେଣୁ ତୁମେ ମୋ ସମ୍ମୁଖରେ ବିଜୟୀ ହୋଇ ପାରିବ ନାହିଁ ।"

ଲବ ଗମ୍ଭୀର ହୋଇ କହିଲା—"ରାଜନ୍ ! ଆପଣ ଗୁଡ଼ାଏ ଏଣୁତେଣୁ କହୁଛନ୍ତି କାହିଁକି ? ବୀରମାନେ ବେଶୀ କଥା କହନ୍ତି ନାହିଁ । ସେମାନେ କାର୍ଯ୍ୟରେ ସବୁ କିଛି ଦେଖାଇ ଦିଅନ୍ତି । ମୋର ଯୁଦ୍ଧ କୌଶଳରୁ ଆପଣ ସବୁକିଛି ଜାଣି ପାରିବେ ।"

ଏତିକି କହି ଲବ ଶତ୍ରୁଘ୍ନଙ୍କ ଉପରକୁ ବାଣ ନିକ୍ଷେପ କଲା । ଶତ୍ରୁଘ୍ନ ପ୍ରସ୍ତୁତ ହୋଇଥିବାରୁ ସେ ମଧ୍ୟ ପ୍ରତିଶର ବିଧାନ କରିବାକୁ ଲାଗିଲେ । କିନ୍ତୁ ଲବର ରଣକୌଶଳ ଦେଖି ଶତ୍ରୁଘ୍ନ ଅତ୍ୟନ୍ତ ବିସ୍ମିତ ହୋଇଗଲେ । ଲବର ଅସ୍ତ୍ରଚାଳନାର କ୍ଷିପ୍ରତା ବିଶେଷ ଭାବରେ ତାଙ୍କୁ ମୁଗ୍ଧ କରିଦେଲା । ଲବ ଅନବରତ ବାଣ ବର୍ଷା କରି ଶତ୍ରୁଘ୍ନଙ୍କ ସୈନ୍ୟମାନଙ୍କୁ ଆଚ୍ଛାଦିତ କରିବା ସଙ୍ଗେ ସଙ୍ଗେ ତାଙ୍କ ରଥଟିକୁ ଭାଙ୍ଗି ଦେଲା ଏବଂ ତାଙ୍କ ଧନୁର ଗୁଣଟିକୁ ଛିଡ଼ାଇ ଦେଲା । ଶତ୍ରୁଘ୍ନ ନୂତନ ରଥ ଓ ଧନୁ ଧରି ଯୁଦ୍ଧ କରନ୍ତେ, ଲବ ତାଙ୍କୁ ଏକ ଅବ୍ୟର୍ଥ ବାଣ ମାରି ମୂର୍ଚ୍ଛିତ କରିଦେଲା ।

ଶତ୍ରୁଘ୍ନ ମୂର୍ଚ୍ଛିତ ହୋଇଯାଆନ୍ତେ, ତାଙ୍କ ସୈନ୍ୟ ଓ ସେନାପତିଗଣ ଯୁଦ୍ଧର ନୀତି ନିୟମ ପ୍ରତି ଦୃଷ୍ଟି ନ ଦେଇ, ଏକ ସଙ୍ଗରେ ସମସ୍ତେ ଲବଙ୍କ ଉପରେ ଆକ୍ରମଣ କରିଦେଲେ; ଏହାଫଳରେ ଲବ ତିଳେ ମାତ୍ର ବିଚଳିତ ନ ହୋଇ, ପ୍ରତ୍ୟେକଙ୍କୁ ଦଶଗୋଟି ଲେଖାଏଁ ବାଣ ମାରି ସମସ୍ତଙ୍କୁ ମୂର୍ଚ୍ଛିତ କରିଦେଲା ଏବଂ ଅନ୍ୟମାନେ ରଣଭୂମି ତ୍ୟାଗ କରି ପଳାଇଗଲେ । ସମସ୍ତଙ୍କୁ ପରାସ୍ତ କରି ଦେଇ ଲବ ବୀରଦର୍ପରେ ଗର୍ଜନ କରିବାକୁ ଲାଗିଲା । କେତେ ସମୟ ପରେ ଶତ୍ରୁଘ୍ନଙ୍କ ମୂର୍ଚ୍ଛା ଭଙ୍ଗ ହେଲା । ସେ ସାବଧାନ ହୋଇ ପୁଣି ଯୁଦ୍ଧ ଲାଗି ପ୍ରସ୍ତୁତ ହୋଇଗଲେ । ସେ ଗୋଟିଏ ସାମାନ୍ୟ ବାଳକ ଆଗରେ ଅସହାୟଭାବେ ପରାସ୍ତ ହୋଇଥିବାରୁ ତାଙ୍କ ମନକୁ ଆତ୍ମଗ୍ଳାନି ଘାରି ଦେଲା । ସେ ମଧ୍ୟ ମନେ ମନେ କ୍ରୁଦ୍ଧ ହୋଇ ଉଠିଲେ । ଯେଉଁ ଦୈବ୍ୟ ଶରରେ ସେ ଲବଣାସୁରକୁ ବଧ କରିଥିଲେ, ସେ ଶରଟିକୁ ତୂଣୀରରୁ ବାହାର କରି ଲବ ଉପରକୁ ନିକ୍ଷେପ କଲେ । ସେହି ଶରଟି ଲବର ଛାତିରେ ବାଜିବାକ୍ଷଣି ସେ ମୂର୍ଚ୍ଛିତ ହୋଇ ଭୂମିରେ ପଡ଼ିଗଲା । ତହୁଁ ଶତ୍ରୁଘ୍ନ ଲବକୁ ଟେକି ଉଠାଇଆଣି ନିଜ ରଥରେ ବାନ୍ଧି ଦେଲେ ।

ଋଷି ବାଳକମାନେ ସେଠାରେ ଆଡୁଆଳରେ ଛିଡ଼ା ହୋଇ କୌତୁହଳର ସହିତ ଯୁଦ୍ଧ ଦେଖୁଥିଲେ । ସେମାନେ ଲବର ଅବସ୍ଥା ଦେଖି ଆଶ୍ରମକୁ ଧାଇଁଗଲେ । ସେ ସମୟରେ ମହର୍ଷି ବାଲ୍ମୀକି ଆଶ୍ରମରେ ନ ଥିଲେ । ସେ ଗଙ୍ଗା କୂଳର ଏକ ନିଭୃତ କୁଞ୍ଜରେ ଧ୍ୟାନମଗ୍ନ ଥିଲେ । ତହୁଁ ବାଳକମାନେ ଧାଇଁ ଯାଇ ସୀତାଙ୍କୁ ସବୁ କଥା ଜଣାଇ ଦେଲେ । ସୀତା ଯୁଦ୍ଧର କାରଣ ସମ୍ପର୍କରେ ପଚାରନ୍ତେ ବାଳକଗଣ କହିଲେ— "ମାତା, ଜଣେ ବଡ଼ ରାଜା ଆସିଛନ୍ତି । ତାଙ୍କ ସାଥିରେ ଅସୁମାରି ସୈନ୍ୟ, ହାତୀ, ଘୋଡ଼ା, ରଥ ରହିଛି । ତାଙ୍କ ଘୋଡ଼ାରୁ ଗୋଟିଏକୁ ଲବ ବାନ୍ଧି ପକାଇଲା । ତା'ପରେ ଅନେକ ବୀର ଆସି ତାକୁ ଘେରିପକାଇ ଦେଲେ । ଲବ ଏକାକୀ ସମସ୍ତଙ୍କୁ ମାରି ଭୂମିରେ ଶୁଆଇ ଦେଲା । ତା'ପରେ ସେ ରାଜା ନିଜେ ସେଠାକୁ ଆସି ଲବ ସହିତ ଯୁଦ୍ଧ କଲେ । ଲବ ସେ ରାଜାଙ୍କୁ ମଧ୍ୟ ବାଣ ମାରି ମୂର୍ଚ୍ଛିତ କରିଦେଲା । କେତେ ସମୟ ପରେ ସେ ରାଜାଙ୍କର ମୂର୍ଚ୍ଛା ଭଙ୍ଗ ହେଲା । ତା'ପରେ ସେ ଉଠିପଡ଼ି ଅନେକ ସମୟ ପର୍ଯ୍ୟନ୍ତ ଲବ ସହିତ ଯୁଦ୍ଧ କଲେ । ଶେଷରେ ସେ ଗୋଟିଏ ଶର ମାରି ଲବକୁ ଭୂମିରେ ଶୁଆଇ ଦେଲେ । ଲବର ଯେପରି କିଛି କ୍ଷତି ହେଲା ନାହିଁ । କିନ୍ତୁ ସେ ମୂର୍ଚ୍ଛିତ ହୋଇଯିବା ମାତ୍ରେ ସେ ରାଜା ତାକୁ ଟେକି ଉଠାଇ ନେଇ ରଥରେ ବାନ୍ଧିକରି ରଖିଛି ।"

ଏହା ଶୁଣି ସୀତା ଦେବୀ ଅତ୍ୟନ୍ତ ଦୁଃଖିତା ହୋଇ କହିଲେ—"ହାୟ ! କେଡ଼େ ନିର୍ଦ୍ଦୟ ସେ ରାଜା ! ଗୋଟିଏ ସୁକୁମାର ବାଳକର ବୀରତାରେ ସେ ମୁଗ୍ଧ

ନ ହୋଇ ତାକୁ ରଥରେ ବାନ୍ଧି ପକାଇଛି ! ଏବେ ମୁଁ କ'ଣ କରିବି ? ମହର୍ଷି ମଧ୍ୟ ଆଶ୍ରମରେ ନାହାନ୍ତି । କୁଶ ଥିଲେ, ସେ ଯାଇ ତା' ଭାଇକୁ ରାଜା ହାତରୁ ଛଡ଼ାଇ ଆଣନ୍ତା......!"

ଏହା କହି ସୀତା ବିଳାପ କରୁଥିବା ସମୟରେ କୁଶ ଆସି ସେଠାରେ ପହଞ୍ଚିଗଲା । ସେ ମାତାଙ୍କୁ ପ୍ରଣାମ କରିବା ପରେ ତାଙ୍କ ଆଖିରେ ଲୁହ ଦେଖି କହିଲା—"ମାଆ ! ତମେ କାନ୍ଦୁଛ କାହିଁକି ? ତୁମ ଦୁଃଖର କାରଣ କ'ଣ ? ମୁଁ ତୁମ ଆଖିର ଲୁହ ଦେଖି ଧୈର୍ଯ୍ୟ ଧରି ପାରୁନାହିଁ । ତୁମେ ଶୀଘ୍ର ତୁମର ମନୋବ୍ୟଥା ମୋ ଆଗରେ ପ୍ରକାଶ କର !"

ଏହା ଶୁଣି ସୀତାଦେବୀ କହିଲେ—"ବାପା, କେଉଁ ଦେଶରୁ ଜଣେ ରାଜା ଆସି ତୋ' ଭାଇ ଲବକୁ ତା' ରଥରେ ବାନ୍ଧି ପକାଇଛି । ତୁ ଶୀଘ୍ର ଯାଇ ଲବକୁ ରକ୍ଷା କର !"

ଏହା ଶୁଣିବା ମାତ୍ରେ ସିଂହ ଶାବକ ହାତୀର ଅତ୍ୟାଚାରରେ କ୍ରୁଦ୍ଧ ହେବା ପରି, କୁଶ ଅଧୀର ହୋଇ ମାତାଙ୍କୁ ପ୍ରଣାମ କରି, ଅସ୍ତ୍ରଶସ୍ତ୍ର ସହିତ ଯୁଦ୍ଧ କ୍ଷେତ୍ରକୁ ଧାଇଁଗଲା । ସେଠାରେ ସେ ଅସଂଖ୍ୟ ସୈନ୍ୟଙ୍କୁ ଧରାଶାୟୀ ହୋଇ ଥିବାର ଦେଖି ମନେ ମନେ ଲବର ପରାକ୍ରମକୁ ପ୍ରଶଂସା କରିବାକୁ ଲାଗିଲା । ଏହି ସମୟରେ ଲବର ମୂର୍ଚ୍ଛା ଭଙ୍ଗ ହେଲା । ସେ କୁଶକୁ ଯୁଦ୍ଧ କ୍ଷେତ୍ରରେ ଦେଖି ମନେ ମନେ ଅସୀମ ଉତ୍ସାହର ସହିତ ନିଜ ବନ୍ଧନକୁ ଛଡ଼ାଇ ଦେଇ ରଥ ଉପରୁ ତଳକୁ ଡେଇଁ ପଡ଼ିଲା । ସେ ସେଠାରୁ ଧାଇଁ ଆସି ବଡ଼ଭାଇ କୁଶର ପାଦତଳେ ପ୍ରଣାମ କଲା । କୁଶ ଲବକୁ ଟେକି ଉଠାଇ ଛାତିରେ ଭିଡ଼ି ଧରିଲା । ଶତ୍ରୁଘ୍ନ ଅବାକ୍ ହୋଇ ବାଳକ ଦୁହିଁଙ୍କ ଆଡ଼କୁ ଅପଲକ ଦୃଷ୍ଟିରେ ଚାହିଁ ରହିଲେ । ଦୁଇଭାଇଙ୍କର ସ୍ୱରୂପ ଓ ଶରୀର ଗଠନରୁ ତାଙ୍କୁ ଶ୍ରୀରାମଙ୍କ ପୁତ୍ର ବୋଲି ମନେ ମନେ ନିଶ୍ଚିତ ଧାରଣା କରି ନେଲେ । ସେ ଭାବିଲେ—"ଭଗବାନଙ୍କ ବୀର୍ଯ୍ୟରୁ ଜାତ ହୋଇ ନଥିଲେ, ବାଳକ ହୋଇ ଏପରି ଦୁର୍ଦ୍ଧର୍ଷ ଯୁଦ୍ଧ ଆଉ କିଏ କରି ପାରିବ ? ଏମାନଙ୍କୁ ଅନ୍ୟ କେହି ଯୁଦ୍ଧରେ ପରାସ୍ତ କରି ପାରିବେ ନାହିଁ । ତଥାପି ଯୁଦ୍ଧ କ୍ଷେତ୍ରରୁ ପଳାୟନ କରିବା ବୀରର ଧର୍ମ ନୁହେଁ । ମୁଁ ଏ ଦୁହିଁଙ୍କ ସହିତ ଅବଶ୍ୟ ଯୁଦ୍ଧ କରି ମୋ' ମନର କୌତୂହଳ ଶାନ୍ତ କରିବି ।"

ଶତ୍ରୁଘ୍ନଙ୍କ ସହିତ ଦୁଇ ମହାନ୍‌ବୀର ଯୁଦ୍ଧରେ ପ୍ରବୃତ୍ତ ହେଲେ । ଶତ୍ରୁଘ୍ନ ପ୍ରାଣମୂର୍ଚ୍ଛା ସଂଗ୍ରାମ କରି ଶେଷରେ ସୁଗ୍ରୀବ, ହନୁମାନ, ସୁଦେବ, ପୁଷ୍କଳ, ତଥା ଅନ୍ୟାନ୍ୟ ବୀରାଗ୍ରଣୀମାନଙ୍କ ସହିତ ମୋହନାସ୍ତ୍ରରେ ମୋହିତ ହୋଇ ପଡ଼ିଗଲେ ।

ସମସ୍ତେ ମୂର୍ଚ୍ଛିତ ହୋଇଥିବା ପରେ, ଲବ ଉତ୍ସୁକତାର ସହିତ କହିଲେ—"ଭାଇ ! ଚାଲ ଆମେ ମାଆଙ୍କ ପାଇଁ କିଛି ସମ୍ପଦ ନେଇଯିବା ।" କୁଶ ଲବର ଆଗ୍ରହକୁ

ଅନୁମୋଦନ କଲେ । ବାଲସିଂହ ପରି ତେଉଁ କୁଦି ଦୁଇଭାଇ ଶତ୍ରୁଘ୍ନଙ୍କ ନିକଟକୁ ଗଲେ । ସେ ଦୁହେଁ ତାଙ୍କ ମସ୍ତକରୁ ମୁକୁଟ ଟାଣି ନେଲେ ।

ଲବ କହିଲା—"ଭାଇ ! ଭରତଙ୍କ ପୁତ୍ର ପୁଷ୍କଳର ମୁକୁଟଟି ଅତି ସୁନ୍ଦର । ଏହା ମୋର ମାପରେ ହୋଇଛି । ମୁଁ ଏହାକୁ ମଧ୍ୟ ନେଉଛି ।"

ସେମାନେ ମୂର୍ଚ୍ଛିତ ବୀରମାନଙ୍କ ଅଙ୍ଗରୁ ଅଳଙ୍କାର, ଶିରରୁ ମୁକୁଟ ବାହାର କରି ନେଇ, ଶେଷରେ ସୁଗ୍ରୀବ ଓ ହନୁମାନଙ୍କ ନିକଟକୁ ଯାଇ କୌତୁହଳର ସହିତ ଦେଖି କହିଲେ—"ଏ ବାନର ଦୁଇଟି ଅତି ସୁନ୍ଦର ! ଚାଲ, ଏ ଦୁଇଟି ମର୍କଟଙ୍କୁ ଆଶ୍ରମକୁ ନେଇ ଯିବା । ଋଷିକୁମାରମାନେ ଦେଖିଲେ ଅତ୍ୟନ୍ତ ଆନନ୍ଦିତ ହେବେ ।" ଏମାନଙ୍କ ଲାଙ୍ଗୁଳକୁ ଟଣାଟଣି କରି ଖୁବ୍ ଖୁସି ହେବେ ।

ତହୁଁ ସେ ଦୁହିଁଙ୍କୁ ଘୋଡ଼ାର ଲାଙ୍ଗୁଳରେ ବାନ୍ଧିଦେଲେ । ଆଶ୍ରମରେ ପହଞ୍ଚି ଦୁହିଁଙ୍କୁ ଆଶ୍ରମ ଦୁଆରେ ରଖାଇ କହିଲେ—"ମାଆ ! ମାଆ ! ଆମେ ସେ ରାଜାଙ୍କୁ ହରାଇ ତାଙ୍କ ଘୋଡ଼ାଟି ଛଡ଼ାଇ ଆଣିଲୁ । ତୁମେ ଦେଖିଲ, ଘୋଡ଼ାଟି କେଡ଼େ ସୁନ୍ଦର ! ଏପରି ଆଉ ଗୋଟିଏ ଘୋଡ଼ା ମିଳିଗଲେ, ଆମେ ଦୁହେଁ ଭାଇ ଚଢ଼ନ୍ତୁ । ମାଆ, ଆମେ ଆହୁରି ଦୁଇଟି ମାଙ୍କଡ଼ଙ୍କୁ ବାନ୍ଧି ଆଣିଛୁ । ଆମେ ଋଷିକୁମାରମାନଙ୍କ ସହିତ ମିଶି ବାନର ଦୁହିଁଙ୍କ ସହିତ ଖେଳିବୁ । ମାଆ, ତୁମେ ଯାଇ ସେ ଘୋଡ଼ାଟିକୁ ଦେଖିଲ ! ଘୋଡ଼ାଟିର ମୁଣ୍ଡରେ ଗୋଟିଏ ସୁନାର ପାତିଆ ବନ୍ଧା ହୋଇଛି । ସେଥିରେ କ'ଣ ଲେଖାଯାଇଛି ଜାଣ—ଅଯୋଧ୍ୟାର ଜଣେ ରାଜା ଅଛନ୍ତି । ତାଙ୍କ ନାମ ରାମଚନ୍ଦ୍ର । ସେ ଗୋଟିଏ ଅଶ୍ୱମେଧ ଯଜ୍ଞ କରୁଛନ୍ତି । ଶତ୍ରୁଘ୍ନ ସେହି ଘୋଡ଼ାଟିକୁ ରକ୍ଷା କରୁଥିଲେ । ସେହି ଶତ୍ରୁଘ୍ନଙ୍କୁ ମୂର୍ଚ୍ଛିତ କରାଇ ତାଙ୍କ ଘୋଡ଼ାଟିକୁ ଆମେ ଛଡ଼ାଇ ଆଣିଛୁ । ମାଆ ! ଆମେ ଠିକ୍ କରିଛୁ ନା ?"

ଏହା ଶୁଣିବା ମାତ୍ରେ ଜାନକୀଙ୍କ ଆଖିରୁ ଧାର ଧାର ହୋଇ ଲୁହ ଝରି ପଡ଼ିଲା । ସେ ପିଲା ଦୁହିଙ୍କୁ ତାଗିଦ୍ କରି କହିଲେ—"ତୁମେ କି ଅନର୍ଥ ଘଟାଇଲ ? ତୁମେ ଯାହାଙ୍କ ନାମ ଧରୁଛ, ସେ ହେଉଛନ୍ତି ତୁମ ବାପା । ଶତ୍ରୁଘ୍ନ ହେଉଛନ୍ତି—ତୁମର ସାନ କକା । ତୁମେ ଆଦୌ ଭଲ କାମ କଲ ନାହିଁ । ତୁମେ ଯେଉଁ ବାନର ଦୁହିଙ୍କୁ ଧରି ଆଣିଛ, ସେମାନଙ୍କୁ ମୋ ପାଖକୁ ଶୀଘ୍ର ଆଣ ।

ଏହା ଶୁଣି ପିଲା ଦୁହେଁ ନିତାନ୍ତ ଡରିଯାଇ ମାଆଙ୍କୁ ନେଇ ବାନର ଦୁହିଁଙ୍କୁ ଦେଖାଇଲେ । ସେ ଦୁଇଜଣ ହେଉଛନ୍ତି—ବୀର ହନୁମାନ ଓ ବାନର ରାଜ—ସୁଗ୍ରୀବ । ସେ ଦୁହେଁ ଘୋଡ଼ାର ଲାଞ୍ଜରେ ବନ୍ଧା ହୋଇଥିଲେ । ଚାଲେ ଘୋଷାରି ହୋଇ ଦୁହିଙ୍କର ଦେହ ଛିଣ୍ଡି ଯାଇଥିଲା । ଜାନକୀ ଦୁହିଙ୍କୁ ଦେଖି ଅତ୍ୟନ୍ତ ବ୍ୟସ୍ତ ହୋଇ ପଡ଼ି

କହିଲେ—"ଆରେ ପାଗଳ, ତୁମେ ଜାଣିଛ କି, ଏ ଦୁହେଁ ହେଉଛନ୍ତି—ବିଶ୍ୱବିଜୟୀ ବୀର—ବାନର ରାଜା ସୁଗ୍ରୀବ ଓ ପବନ ପୁତ୍ର ହନୁମାନ। ସେହିମାନଙ୍କ ଯଶୋଗାଥା ତୁମେ ଦୁହେଁ ପ୍ରତିଦିନ ରାମାୟଣରେ ଗାନ କରୁଛ। ଏ ଦୁହେଁ ମୋର ଅନେକ ଉପକାର କରିଛନ୍ତି। ମୁଁ କିପରି ସେ ଦୁହିଙ୍କ ଆଗରେ ମୁହଁ ଦେଖାଇବି ? ଛିଃ···ଛି··· ତୁମେ ଏ କି କାମ କରିଛ ? ଶୀଘ୍ର ସେ ଦୁହିଙ୍କୁ ମୁକ୍ତ କରିଦିଅ !"

ତା'ପରେ ସୀତାଦେବୀ ସୂର୍ଯ୍ୟନାରାୟଣଙ୍କ ଆଡ଼କୁ ଚାହିଁ କହିଲେ—"ହେ ଚରାଚର ନାଥ ସୂର୍ଯ୍ୟଦେବ ! ମୁଁ ଯଦି ପ୍ରକୃତରେ କାୟମନୋବାକ୍ୟରେ ଶ୍ରୀରାମଚନ୍ଦ୍ରଙ୍କର ଅନୁଗାମିନୀ ହୋଇଥାଏ, ତେବେ ଶତ୍ରୁଘ୍ନ ଓ ତାଙ୍କର ସୈନ୍ୟମାନେ ଶୀଘ୍ର ଜୀବିତ ହୋଇ ଯାଆନ୍ତୁ।"

ସୀତାଦେବୀ ଏତିକି କହିବା ମାତ୍ରେ ଶତ୍ରୁଘ୍ନ ଓ ତାଙ୍କ ସୈନ୍ୟମାନେ ନିଦରୁ ଉଠିବା ପରି ଉଠି ପଡ଼ିଲେ। ଯେଉଁମାନଙ୍କ ଅଙ୍ଗହାନି ହୋଇଥିଲା, ସେମାନେ ମଧ୍ୟ ସୁସ୍ଥ ହୋଇ ଉଠି ବସିଲେ। ହନୁମାନ ଓ ସୁଗ୍ରୀବ ମଧ୍ୟ ନିଦରୁ ଉଠିଲା ପରି ଉଠିପଡ଼ି, ଆଗରେ ଛିଡ଼ା ହୋଇଥିବା ସୀତାଦେବୀଙ୍କୁ ପ୍ରଣାମ କଲେ।

ସୀତା ତାଙ୍କ ଆଗରେ ଅତି କାନ୍ଦୁଣିଆ ସ୍ୱରରେ କହିଲେ—"ବୀର ପୁଙ୍ଗବ ! ତୁମେମାନେ ମୋ' ପୁଅ ଦୁହିଙ୍କୁ କ୍ଷମା କରିଦେବ। ଏ ଦୁହେଁ ନିତାନ୍ତ ଦୁଷ୍ଟ ହୋଇ-ଯାଇଛନ୍ତି। ମୁଁ ସ୍ୱାମୀଙ୍କ ଦ୍ୱାରା ପରିତ୍ୟକ୍ତା ହୋଇ ମଧ୍ୟ ପିଲା ଦୁହିଙ୍କୁ ଭଲରେ ରଖିଛି। ବୀର ହନୁମାନ ! ତୁମେ ଏ ହତଭାଗିନୀକୁ କାହିଁକି ଲଙ୍କାରୁ ଉଦ୍ଧାର କରି ଆଣିଲ ? ସେଠାରେ ରାକ୍ଷସୀଙ୍କ ଅତ୍ୟାଚାରରେ ମୁଁ ମରି ଯାଇଥିଲେ ହୁଏତ ଭଲ ହୋଇ-ଥାଆନ୍ତା ! ଏବେ ମହାତ୍ମା ବାଲ୍ମୀକିଙ୍କ ଆଶୀର୍ବାଦ ଲାଭ କରି ଆଶ୍ରମରେ ଦିନ କାଟୁଛି। କେବଳ ଏ ଦୁହିଙ୍କ ମୁହଁକୁ ଚାହିଁ ପିନା ବଞ୍ଚିରହିଛି। ମୁଁ କେବଳ ଭାବୁଛି—ଏ ଦୁହେଁ ମୋ' ବିନା କଷ୍ଟ ପାଇବେ ! ସେଇଥିପାଇଁ ମୁଁ ଆଜଯାଏ ଜୀବନ ଧରି ରହିଛି।"

ସୀତାଦେବୀଙ୍କର କରୁଣ ବିଳାପ ଶୁଣି ହନୁମାନ ଓ ସୁଗ୍ରୀବ କାନ୍ଦି କାନ୍ଦି କହିଲେ—"ଦେବି ! ଏହା ପ୍ରକୃତରେ ଭାଗ୍ୟର ବିଡ଼ମ୍ବନା। ଆପଣ ଶ୍ରୀରାମଚନ୍ଦ୍ରଙ୍କର ହୃଦୟ ସିଂହାସନରେ ସଦା ବସିଛନ୍ତି ଏବଂ ସେ ମଧ୍ୟ ଆପଣଙ୍କ ନୟନ ଯୁଗଳର ତାରା ହୋଇ ରହିଛନ୍ତି। ଆପଣ ଦୁହିଙ୍କର ବିଯୋଗ ଆଦୌ ସମ୍ଭବ ନୁହେଁ। କେବଳ ଲୋକ ଦେଖାଣିଆକୁ ଏ ପ୍ରକାର ବିଯୋଗ ଅବସ୍ଥା ସୃଷ୍ଟି ହୋଇଛି। ଆପଣ ଦୁଇଗୋଟି ବୀରପୁତ୍ରଙ୍କୁ ଜନ୍ମ ଦେଇ ବୀରପ୍ରସବିନୀ ନାମ ସାର୍ଥକ କରିଛନ୍ତି। ଆମେ ଲବକୁଶଙ୍କଠାରୁ ପରାସ୍ତ ହୋଇ ପରମ ଆନନ୍ଦିତ ହୋଇଛୁ। ଶୀଘ୍ର ଏ ଦୁହେଁ ଅଯୋଧ୍ୟା ରାଜସିଂହାସନରେ ବସି ଆମର ପ୍ରଭୁ ହେବେ। ଆମେ ଶୀଘ୍ର ଆପଣଙ୍କୁ ଶ୍ରୀରାମଙ୍କ ସହିତ ଦେଖିବୁ। ସେଦିନ ଆଉ ବେଶୀ ବିଳମ୍ବ ହେବ ନାହିଁ।"

ସେ ଦୁହେଁ ସୀତାଙ୍କୁ ପ୍ରଣାମ ଜଣାଇ ଯଜ୍ଞୀୟ ଅଶ୍ୱକୁ ନେଇ ଶତ୍ରୁଘ୍ନଙ୍କ ନିକଟକୁ ଚାଲିଗଲେ ।

ଶତ୍ରୁଘ୍ନ ବାନର ବୀରଦ୍ୱୟଙ୍କୁ ଦେଖି କହିଲେ—"ବାନରରାଜ ! ସେ ପିଲା ଦୁହେଁ ପ୍ରକୃତରେ ବୀର ବାଳକ । ସେ ଦୁହେଁ ଆମକୁ ଅସହାୟ ଭାବରେ ପରାସ୍ତ କରି ଘୋଡ଼ାଟିକୁ ନେଇ ଯାଇଥିଲେ, ପୁଣି ଏ ଘୋଡ଼ା ତୁମକୁ ମିଳିଲା କିପରି ? ପ୍ରକୃତରେ ଏହା ଅତ୍ୟନ୍ତ ଲଜ୍ଜାର ବିଷୟ !"

ସୁଗ୍ରୀବ ସମସ୍ତ ଘଟଣା ବର୍ଣ୍ଣନା କରି କହିଲେ—"ରାଜନ୍ ! ଏଥିରେ ଲଜ୍ଜା କରିବାର କିଛି ନାହିଁ । ସେ ଦୁହେଁ ସାଧାରଣ ବାଳକ ନୁହନ୍ତି । ସ୍ୱୟଂ ମହାରାଜ ଶ୍ରୀରାମଚନ୍ଦ୍ରଙ୍କ ବୀର୍ଯ୍ୟ ତଥା ସୀତାଦେବୀଙ୍କ ଗର୍ଭରୁ ଜାତ ସନ୍ତାନ ଏହି ଧରଣର ବୀର ନ ହେବେ ତ, ଆଉ ହେବ କିଏ ଯେ ? ସ୍ୱାମୀଙ୍କଠାରୁ ସେବକ ସଦାସର୍ବଦା ପରାଜିତ ହୋଇଥାଏ ।"

ଏହାଶୁଣି ଶତ୍ରୁଘ୍ନ ମନେ ମନେ ଅତ୍ୟନ୍ତ ପ୍ରସନ୍ନ ହେଲେ । ସେ ଆଉ ଆଶ୍ରମକୁ ନ ଯାଇ, ଯଜ୍ଞ ଅଶ୍ୱଟିକୁ ନେଇ ଅଯୋଧ୍ୟାକୁ ଲେଉଟି ଗଲେ । ଘୋଡ଼ାଟି କୁଶଳରେ ଫେରି ଆସିଥିବାରୁ ଶ୍ରୀରାମଚନ୍ଦ୍ର ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ ଏବଂ ବିଧିବିଧାନ ପୂର୍ବକ ଯଜ୍ଞ ଶେଷ କରିଥିଲେ । ଯଜ୍ଞ ଶେଷ ହେବା ପରେ ମୁନି, ଋଷି ତଥା ବ୍ରାହ୍ମଣମାନେ ମନୋବାଂଛିତ ଦକ୍ଷିଣା ପାଇ ଘରକୁ ବାହୁଡ଼ି ଗଲେ ।

ଶ୍ରୀରାମଚନ୍ଦ୍ରଙ୍କର କେହି ଶତ୍ରୁ ନ ଥିଲେ । ସମସ୍ତ ରାଜା ତାଙ୍କର ଅଧୀନତା ସ୍ୱୀକାର କରିଥିଲେ । ତେଣୁ ଯୁଦ୍ଧର ଅବସର ଆଦୌ ନ ଥିଲା । କିନ୍ତୁ ସୀତାଙ୍କ ବିରହରେ ତାଙ୍କ ଦିନ ଆଦୌ କଟୁ ନ ଥିଲା । ସେ ଯେତେ ଚେଷ୍ଟା କଲେ ମଧ୍ୟ ସୀତାଙ୍କ ସ୍ନେହ ଓ ପ୍ରେମକୁ ଆଦୌ ଭୁଲିପାରୁ ନ ଥିଲେ । ସେ ସୀତାଙ୍କୁ ଭୁଲିଯାଇ ରାଜକାର୍ଯ୍ୟରେ ମନ ଲଗାଇବା ପାଇଁ ଯେତିକି ଚେଷ୍ଟା କରୁଥିଲେ, ସେତିକି ଅଧିକ ସମୟ ସେ ସୀତାଦେବୀଙ୍କ ରୂପ ଓ ଗୁଣ ସ୍ମରଣରେ କଟାଉଥିଲେ । ବିଶେଷତଃ ପ୍ରାରମ୍ଭିକ ଜୀବନର ସ୍ମୃତିଗୁଡ଼ିକ ତାଙ୍କୁ ବ୍ୟଥିତ କରୁଥିଲା । ସେ ଅତ୍ୟନ୍ତ ବ୍ୟାକୁଳ ହୋଇ କିଛି ଦିନ ଅଯୋଧ୍ୟା ବାହାରକୁ ଚାଲିଯିବା ପାଇଁ ମନେ ମନେ ସ୍ଥିର କଲେ ।

ସେ ଭାବିଲେ—"ନୈମିଷାରଣ୍ୟ ଗୋଟିଏ ପୁଣ୍ୟସ୍ଥଳ । ସେଠାରେ ଅଠାଅଶୀ ହଜାର ମୁନିଋଷି ତପସ୍ୟା କରୁଛନ୍ତି । ଯଜ୍ଞ ନିମିତ୍ତ ତାହା ଏକ ପ୍ରଶସ୍ତ ସ୍ଥାନ । ସେହିଠାରେ ଗୋଟିଏ ଅଶ୍ୱମେଧ ଯଜ୍ଞ କଲେ ଭଲ ହେବ !" ଏହା ଚିନ୍ତା କରି ନୈମିଷାରଣ୍ୟରେ ଗୋଟିଏ ଅଶ୍ୱମେଧ ଯଜ୍ଞର ଆୟୋଜନ ଲାଗି ସେ ଆଦେଶ ଦେଇ-ଦେଲେ । ଗୋମତୀ ନଦୀ ତଟରେ ଯଜ୍ଞ ଲାଗି ବିପୁଳ ଆୟୋଜନ ଚାଲିଲା । ପ୍ରଥମେ

ଦଶ ହଜାର ଯୋଜନ ଲମ୍ବ ଭୂମିକୁ ସମତଳ କରାଯାଇ ସେଠାରେ ଆବଶ୍ୟକୀୟ ଆଶ୍ରମ ଓ କୁଟୀରମାନ ନିର୍ମିତ ହେଲା । ସ୍ଥାନଟିକୁ ସୁନ୍ଦର ଭାବରେ ସଜାଇବାପାଇଁ ତୋରଣ, ଦ୍ୱାର, ମଣ୍ଡପ ଆଦି ସୁସଜ୍ଜିତ କରାଗଲା । ଦେଶ ବିଦେଶର ରାଜା ଓ ମହାରାଜାମାନଙ୍କୁ ନିମନ୍ତ୍ରଣ କରାଗଲା । ଅଯୋଧ୍ୟାରୁ ଧାନ୍ୟ, ଗୋଧୂମ ଯବ, ତିଳ, ଶର୍କରାଆଦି ହୋମ ଦ୍ରବ୍ୟ ତଥା ଖାଦ୍ୟପେୟ ସାମଗ୍ରୀ ଶକଟ ତଥା ଅନ୍ୟାନ୍ୟ ଯାନବାହନରେ ସେଠାକୁ ନିଆଗଲା । ଚତୁଃପାର୍ଶ୍ୱରେ ଗଣ୍ଡଗୋଳର ନିରାକରଣ ଲାଗି ସୈନିକମାନଙ୍କୁ ସୁସଜ୍ଜିତ କରି ରଖାଗଲା । ପାନୀୟ ଜଳର ସୁଲଭତା ନିମିତ୍ତ କୂପ, ତଡ଼ାଗ ଓ ବାପୀ ଆଦିର ସଂସ୍କାର କରାଗଲା । ଶତ ଶତ ଭୋଜନାଳୟ ପ୍ରସ୍ତୁତ କରାଯାଇ, ସେଠାରେ ପାଚକ ତଥା ସେବକମାନଙ୍କୁ ନିଯୁକ୍ତ କରାଗଲା । ଯଜ୍ଞ କରିବା ଲାଗି ମୁନିଋଷି ଓ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରାଗଲା । ଯେଉଁ ଯାଜ୍ଞିକମାନେ ଜୀବିକା ଉଦ୍ଦେଶ୍ୟରେ ଅନ୍ୟତ୍ର ଚାଲି ଯାଇଥିଲେ, ସେମାନଙ୍କୁ ଡକାଯାଇ ସେଠାକୁ ଅଣାଗଲା । ନୃତ୍ୟ, ନାଟକ, ବାଦ୍ୟ ତଥା ଅନ୍ୟାନ୍ୟ ଆମୋଦ ପ୍ରମୋଦର ବ୍ୟବସ୍ଥା ଲାଗି ତଦ୍‌ବିଦ ଲୋକମାନଙ୍କୁ ନିମନ୍ତ୍ରଣ ପତ୍ର ପଠାଯାଇ ଡକାଗଲା । ଅନ୍ୟମାନେ ଶ୍ରୀରାମଙ୍କ ଯଜ୍ଞର ସମ୍ବାଦ ପାଇ ବିନା ନିମନ୍ତ୍ରଣରେ ମଧ୍ୟ ସେଠାରେ ଆସି ଉପସ୍ଥିତ ହୋଇଗଲେ ।

ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ତଥା ସେମାନଙ୍କ ପତ୍ନୀ ଏବଂ ସୁବର୍ଣ୍ଣରେ ନିର୍ମିତା ସୀତାଙ୍କ ମୂର୍ତ୍ତି ଯଜ୍ଞ ସ୍ଥଳକୁ ଯାନବାହନରେ ବିଜେ କଲେ । ଫୁଲ, ତୁଳସୀ, ବେଲପତ୍ର ଆଦି ସାମଗ୍ରୀମାନ ସଂଗ୍ରହ କରିବା ଲାଗି ବହୁ ଲୋକ ନିଯୁକ୍ତ ହୋଇଗଲେ । ମୋଟ ଉପରେ ଯଜ୍ଞର ସମସ୍ତ ସାମଗ୍ରୀ ତଥା ସେଠାରେ ଯୋଗ ଦେବାକୁ ନିର୍ଦ୍ଦିଷ୍ଟ ଥିବା ସମସ୍ତ ଲୋକ ଗୋମତୀ ତୀରରେ ଯଥା ସମୟରେ ଉପସ୍ଥିତ ହୋଇଗଲେ । ଏହିପରି ଭାବରେ ଅତ୍ୟନ୍ତ ଆଡ଼ମ୍ବର ତଥା ବେଦୋକ୍ତ ବିଧାନରେ ଯଜ୍ଞ ଆରମ୍ଭ ହେବାକୁ ଲାଗିଲା ।

ସୁଗ୍ରୀବ, ହନୁମାନ, ବିଭୀଷଣ, ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ସମାଗତ ଅତିଥି ଓ ରାଜା ମହାରାଜାଙ୍କ ସମୁଚିତ ସତ୍କାର କରିବାକୁ ଲାଗିଲେ । ଶ୍ରୀରାମଚନ୍ଦ୍ର ସ୍ୱୟଂ ଶ୍ରୀମୁଖରେ ଆଜ୍ଞା ଦେଇ କହିଲେ—"ଯେ ଯେଉଁ ଦ୍ରବ୍ୟ ଯାଚନା କରିବ, ତାହାକୁ ବିନା ସଙ୍କୋଚ ଓ ଦ୍ୱିଧାରେ ସେହି ଦ୍ରବ୍ୟ ପ୍ରଦାନ କରିବ । ଏଠାରୁ କେହି ଜଣେ ହେଲେ ନିରାଶରେ ଫେରିଯିବେ ନାହିଁ ।"

ତାହାଫଳରେ ଆଦର, ସତ୍କାରର ବ୍ୟବସ୍ଥା ସୁଚାରୁରୂପେ ପରିଚାଳିତ ହେଲା । ଯେଉଁମାନେ ଯାହା ମାଗିଲେ, ତତ୍‌କ୍ଷଣାତ୍ ସେମାନଙ୍କୁ ସେହି ଦ୍ରବ୍ୟ ଯୋଗାଇ ଦିଆଗଲା ।

ଯଜ୍ଞ ସମ୍ବନ୍ଧରେ ସମ୍ବାଦ ପାଇ ତଥା ନିମନ୍ତ୍ରିତ ହୋଇ ମହାମୁନି ବାଲ୍ମୀକି ନିଜର ଶିଷ୍ୟ, ପ୍ରଶିଷ୍ୟ, ସଖା ତଥା ସମଭାବାପନ୍ନ ମୁନିମାନଙ୍କ ସହିତ ସେଠାରେ ଉପସ୍ଥିତ ହେଲେ । ସେମାନଙ୍କ ଗହଣରେ ମହର୍ଷିଙ୍କର ପ୍ରିୟ ଶିଷ୍ୟ—କୁଶ ଓ ଲବ ମଧ୍ୟ ଯଜ୍ଞ ସ୍ଥଳକୁ ଆସିଥିଲେ । ସେ ଦୁଇଭାଇ ମହର୍ଷି ବାଲ୍ମୀକିଙ୍କ ଦ୍ୱାରା ରଚିତ ସମ୍ପୂର୍ଣ୍ଣ 'ରାମାୟଣ' ଗ୍ରନ୍ଥଟିକୁ କଣ୍ଠସ୍ଥ କରିଥିଲେ । ସେ ଦୁହେଁ ତାଳ ଓ ଲୟର ସହିତ ରାମାୟଣ ଗାନ କରିବାରେ ଅତ୍ୟନ୍ତ ଧୁରନ୍ଧର ହୋଇ ଯାଇଥିଲେ । ମହର୍ଷି ବାଲ୍ମୀକି ଗୋଟିଏ ଏକାନ୍ତ କୁଟୀରରେ ଆସି ଅବସ୍ଥାନ କଲେ । ଶ୍ରୀରାମଙ୍କ ସେବକମାନେ ମହର୍ଷି ଓ ତାଙ୍କ ଶିଷ୍ୟମାନଙ୍କ ପାଇଁ ସମୁଚିତ ବ୍ୟବସ୍ଥା କରିଦେଲେ । ମହର୍ଷି ସୁଖପୂର୍ବକ ରାତ୍ରି-ଯାପନ କଲେ ।

ପରଦିନ ପ୍ରାତଃକାଳରୁ ମହର୍ଷି ଓ ତାଙ୍କ ଶିଷ୍ୟମାନେ ନିତ୍ୟକର୍ମ ତଥା ସ୍ନାନପୂଜାଦି ଆହ୍ନିକ କ୍ରିୟା ଶେଷ କଲେ । ମହର୍ଷି ବାଲ୍ମୀକି କୁଶଲବଙ୍କୁ ଡକାଇ ଆଣି କହିଲେ—"ବତ୍ସ ! ତୁମେ ଦୁହେଁ ରାମାୟଣ ଗାନ କରିବାରେ ଅତ୍ୟନ୍ତ ଦକ୍ଷ । ତୁମେ ଦୁହେଁ ପ୍ରତିଦିନ ଏଠାରେ ଉପସ୍ଥିତ ହୋଇ ଅତିଥିମାନଙ୍କୁ ରାମାୟଣ ଶୁଣାଇବ । କେବଳ ଗୋଟିଏ ସ୍ଥାନରେ ରାମାୟଣ ଗାନ କଲେ ଚଳିବ ନାହିଁ । ତୁମେ ଦୁହେଁ ବିଭିନ୍ନ ସ୍ଥାନକୁ ଯାଇ, ଯେଉଁଠାରେ ବ୍ରାହ୍ମଣ ତଥା ଯାଜ୍ଞିକମାନେ ଅଛନ୍ତି, ଯେଉଁଠାରେ ରାଜା ମହାରାଜାମାନେ ଅବସ୍ଥାନ କରୁଛନ୍ତି ତଥା ଯେଉଁଠାରେ ସାଧାରଣ ଜନତା ସମବେତ ହୋଇଛନ୍ତି; ସେହିପରି ଜନଗହଳିପୂର୍ଣ୍ଣ ସ୍ଥାନରେ ରାମାୟଣ ଗୀତଗୁଡ଼ିକୁ ସୁନ୍ଦରରେ ତଥା ବିଶୁଦ୍ଧ ଭାବରେ ଗାନ କରିବ । ଗାନ କରି କ୍ଲାନ୍ତ ହୋଇ ପଡ଼ିଲେ, ସାମାନ୍ୟ ବିଶ୍ରାମ ଗ୍ରହଣ କରି ପୁଣି ରାମାୟଣ ଗାନରେ ଲାଗିଯିବ । ଭୋକ ଲାଗିଲେ, ତୁମେ ସୁମିଷ୍ଟ ଫଳ ଭୋଜନ କରିବ । ଯଦି ରାଜା ରାମଚନ୍ଦ୍ର ତୁମକୁ ରାମାୟଣ ଗାନ କରିବାପାଇଁ ଡାକନ୍ତି, ତେବେ ସେଠାକୁ ଯାଇ ଶିଷ୍ଟତାର ସହିତ ତାଙ୍କ ଆଜ୍ଞାନୁସାରେ ରାମାୟଣ ପାଠ କରିବ । ତୁମେ କେବେହେଲେ ମୁହଁ ଖୋଲି କହିବ ନାହିଁ ଯେ, ଆମେ ଆପଣଙ୍କ ପୁତ୍ର । ତୁମକୁ ସେ ପରିଚୟ ପଚାରିଲେ ତୁମେ କହିବ—"ଆମେ ମହର୍ଷି ବାଲ୍ମୀକିଙ୍କ ଶିଷ୍ୟ । ମହାରାଜା ଶ୍ରୀରାମଚନ୍ଦ୍ର ତୁମକୁ କିଛି ଧନ ଦାନ ଦେଲେ, ତୁମେ କେବେହେଲେ ତାହା ଗ୍ରହଣ କରିବ ନାହିଁ । ନମ୍ରତାର ସହିତ କହିବ—ଆମେ ବନବାସୀ । ଆମର ଧନର ପ୍ରୟୋଜନ କଅଣ ? ପ୍ରତିଦିନ କୋଡ଼ିଏ ସର୍ଗ ଗାନ କରିବ । ଏହି ବୀଣା ଦୁଇଟି ମୁଁ ତୁମକୁ ପ୍ରଦାନ କରୁଛି । ରାମାୟଣ ଗାନ କରିବାବେଳେ ସେହି ବୀଣା ବାଦନ କରିବ ।"

ଏହିପରି ଭାବରେ ମହର୍ଷି ବାଲ୍ମୀକି କୁଶ ଲବଙ୍କୁ ସମୁଚିତ ଉପଦେଶ ଦେଇ ବିଦାୟ କଲେ । ଶିଷ୍ୟ ଦୁହେଁ ଗୁରୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ରାମାୟଣ ଗାନ

କରି କରି ଆଗେଇ ଚଲେ । ଦୁହିଙ୍କର ସୁମଧୁର କଣ୍ଠସ୍ୱରେ, ସୁନ୍ଦର ରୂପ ତଥା ରାମାୟଣ ଗାନ କରିବାର ଶୈଳୀ ଲକ୍ଷ୍ୟ କରି ସମସ୍ତେ ଆନନ୍ଦିତ ହେଲେ । ଦୁହେଁ ଗୈରିକ ବସ୍ତ୍ର ଧାରଣ କରିଥିଲେ । ଦୁହିଙ୍କ ହାତରେ ଦୁଇଗୋଟି ବୀଣା ରହିଥିଲା । ଦୁହେଁ ବୀଣାର ସ୍ୱର ଲହରୀରେ ତାଳ ମିଶାଇ ଗାନ କରୁଥିବା ବେଳେ ମନେ ହେଉଥିଲା— ସତେ ଅବା କେବଳ ବୀଣାର ତାରରୁ ସ୍ୱରଲହରୀ ଝଙ୍କୃତ ହେଉଛି । ସହସ୍ର ସହସ୍ର ନରନାରୀ କୁଶ ଲବଙ୍କ ରାମାୟଣ ଗାନ ଶୁଣି ବିମୁଗ୍ଧ ହୋଇଗଲେ । ଯେ ଦୁହେଁ ଗୋଟିଏ ସ୍ଥାନରୁ ଗାନ ଶେଷ କରି ଅନ୍ୟ ସ୍ଥାନକୁ ଯାଉଥିବାବେଳେ ତାଙ୍କ ପଛେ ପଛେ ଜନଗହଳି ମାଡ଼ି ଚାଲୁଥିଲା । ସମଗ୍ର ଜନସମାଜରେ ତାଙ୍କର ପ୍ରଶଂସା ମୁଖରିତ ହୋଇ ଉଠିଲା ।

ଶ୍ରୀରାମଚନ୍ଦ୍ର ବାଳକ ଦୁହିଙ୍କୁ ଦେଖି ବିସ୍ମିତ ହୋଇଗଲେ । ସେ ତାଙ୍କ ଗାୟନ ଶୁଣି ଆତ୍ମବିସ୍ମୃତ ହୋଇ ଉଠିଲେ । ସେ ବାଳକ ଦୁହିଙ୍କୁ ସମାଦରର ସହିତ ଡାକି ନେଇ କହିଲେ—"ତୁମେ ମୋତେ ତୁମର ସୁଲଳିତ କଣ୍ଠରୁ ଗୀତ ଶୁଣାଇବ ?"

କୁଶ ବିନୀତଭାବରେ କହିଲା—"ମହାରାଜ, ଆପଣଙ୍କର ଆଜ୍ଞା ହେଲେ ନିଶ୍ଚୟ ଶୁଣାଇବୁ ।"

ଏହା ଶୁଣି ମହାରାଜ ଶ୍ରୀରାମଚନ୍ଦ୍ର ରାଜସଭାକୁ ସମସ୍ତଙ୍କୁ ଡକାଇଲେ । ବିବିଧ ବିଷୟର ବିଦ୍ୱାନ୍‌ମାନେ ମହାରାଜାଙ୍କ ଆଦେଶରେ ଆସି ସଭାସ୍ଥଳରେ ଉପସ୍ଥିତ ହେଲେ । ସଭାସ୍ଥଳ ପରିପୂର୍ଣ୍ଣ ହୋଇଯିବା ପରେ କୁଶ ଓ ଲବ ଦୁଇଭାଇ ଶ୍ରୀଗୁରୁଙ୍କ ନାମ ସ୍ମରଣ ପୂର୍ବକ ଅତ୍ୟନ୍ତ ସୁଲଳିତ କଣ୍ଠରେ ରାମାୟଣ ଗାନ ଆରମ୍ଭ କରିଦେଲେ । ଗାନ କରୁଥିବା ସମୟରେ ପିଲା ଦିଓଟି ବେଳେ ବେଳେ ତନ୍ମୟ ହୋଇ ଉଠୁଥିଲେ । ପିଲା ଦୁହିଙ୍କର ଭାବ ବେଶର ସହିତ ଗାନ ଶୁଣି ସମଗ୍ର ସଭାସଦ୍ ଆତ୍ମବିଭୋର ହୋଇ ଉଠିଲେ । ସେମାନେ ନିଜ ନିଜର ଉପସ୍ଥିତି ଭୁଲି ଯାଇ ଚିତ୍ର ପ୍ରତିମା ପରି ପିଲା ଦୁହିଙ୍କର ମୁଖରୁ ନିଃସୃତ ଅମୃତ ନିସ୍ୟନ୍ଦିନୀ ବାଣୀ ବିମୁଗ୍ଧ ଚିତ୍ତରେ ପାନ କରିବାକୁ ଲାଗିଲେ । କରୁଣ ରସର ବର୍ଣ୍ଣନା ସମୟରେ ପ୍ରତ୍ୟେକ ଶ୍ରୋତାର ଚକ୍ଷୁରୁ ଅବାରିତ ଗତିରେ ଲୋତକର ବନ୍ୟା ଛୁଟିବାକୁ ଲାଗିଲା । ଅସଂଖ୍ୟ ଜନତା ପ୍ରଶାନ୍ତ ଚିତ୍ତରେ ନୀରବ ତଥା ନିସ୍ତବ୍ଧତାର ସହିତ ରାମାୟଣ ଶୁଣୁଥିଲେ । କେହି ଜଣେ ଦୀର୍ଘ ନିଃଶ୍ୱାସ ପକାଇଲେ ମଧ୍ୟ ତାହା ବେଶ୍ ସମସ୍ତଙ୍କୁ ସୁସ୍ପଷ୍ଟ ରୂପେ ଶୁଣା ଯାଉଥିଲା । ଗୁରୁଙ୍କ ଆଦେଶ ଅନୁସାରେ ବାଳକ ଦୁହେଁ କୋଡ଼ିଏ ସର୍ଗ ରାମାୟଣ ଗାନ କରିବା ପରେ ନୀରବ ହୋଇଗଲେ । ସେ ଦୁହିଙ୍କ ରାମାୟଣ ଗାନରେ ଶ୍ରୀରାମଚନ୍ଦ୍ର ଅତ୍ୟନ୍ତ ପ୍ରଭାବିତ ହୋଇଉଠିଲେ । ଉପସ୍ଥିତ ଦର୍ଶକମାନେ କହିବାକୁ ଲାଗିଲେ—"ଆରେ ପିଲା ଦିଓଟି

ଅବିକଳ ଶ୍ରୀରାମଙ୍କ ପ୍ରତିବିମ୍ବ ପରି ମନେ ହେଉଛନ୍ତି । ଏ ଦୁହେଁ କେବଳ ମୁନିବସ୍ତ୍ର ପିନ୍ଧି ନଥିଲେ, ଶ୍ରୀରାମ ଓ ଏ ଦୁହିଙ୍କ ମଧ୍ୟରେ ପାର୍ଥକ୍ୟ ଜାଣିବା ଅତ୍ୟନ୍ତ କଷ୍ଟସାଧ୍ୟ ହୋଇ ଥାଆନ୍ତା । ଶ୍ରୀରାମ ମଧ୍ୟ ପିଲା ଦିଓଟିଙ୍କୁ ପ୍ରକୃତରେ କେତେ ସ୍ନେହ କରୁଛନ୍ତି !"

ବାଳକ ଦୁହେଁ ରାମାୟଣ ଗାନ ଶେଷ କରିବା ମାତ୍ରେ ଶ୍ରୀରାମଚନ୍ଦ୍ର କହିଲେ—"ଭରତ ! ତୁମେ ଏହି ଋଷିକୁମାର ଦୁହିଙ୍କୁ ନଅ ହଜାର ଲେଖାଏଁ ସ୍ୱର୍ଣ୍ଣମୁଦ୍ରା ପ୍ରଦାନ କର । ତା'ଛଡ଼ା ଏ ଦୁହେଁ ଯାହା ମାଗିବେ, ତୁମେ ତାହା ସେ ଦୁହିଙ୍କୁ ପ୍ରଦାନ କରିବ ।"

ଭରତ ରାଜାଜ୍ଞା ପାଳନ କରିବା ମାତ୍ରେ ଲବକୁଶ କହିଲେ—"ମହାରାଜ ! ଆମେ ବନବାସୀ ତପସ୍ୱୀ । ଏହି ସୁବର୍ଣ୍ଣ ମୁଦ୍ରା ନେଇ ଆମେ କ'ଣ କରିବୁ ? ଆମର କିଛି ହେଲେ ଲୋଡ଼ା ନାହିଁ !"

ଶ୍ରେଷ୍ଠ ପିଲା ଦୁଇଟିଙ୍କର ତ୍ୟାଗ ଲକ୍ଷ୍ୟ କରି ଶ୍ରୀରାମଚନ୍ଦ୍ର ପରମ ପ୍ରୀତ ହୋଇ ପଚାରିଲେ—"ବାଳକ ! ଏହି ଚମତ୍କାର ମହାକାବ୍ୟ ତୁମେ କାହାଠାରୁ ଶିକ୍ଷା କଲ ? କିଏ ଏହାର କବି ? ତୁମେ କାହାର ଶିଷ୍ୟ ? ତୁମେ ଯେଉଁ ଅଂଶତକ ପାଠ କଲ, ତା ବ୍ୟତୀତ ଆଉ କେତେ ବିଷୟ ତଥା ଅଧ୍ୟାୟ ସେ କାବ୍ୟରେ ରହିଛି । ତୁମ ଗୁରୁଦେବ ବର୍ତ୍ତମାନ କେଉଁଠାରେ ଅବସ୍ଥାନ କରୁଛନ୍ତି ?"

ଉତ୍ତର ଦେଇ କୁଶ କହିଲେ—"ପ୍ରଭୋ ! ଏ ମହାକାବ୍ୟର ରଚୟିତା ହେଉଛନ୍ତି—ଭଗବାନ ବାଲ୍ମୀକି । ଏହା ହେଉଛି—ସର୍ବପ୍ରଥମ ଲୌକିକ ଛନ୍ଦର କାବ୍ୟ । ତେଣୁ ଏହାର ନାମ ଆଦିକାବ୍ୟ । ଏଥିରେ ଆପଣଙ୍କ ଚରିତ ଲିପିବଦ୍ଧ ହୋଇଥିବାରୁ ଏହାର ନାମ 'ରାମାୟଣ' । ମୁନିବର କାବ୍ୟଟିକୁ ଛଅକାଣ୍ଡ (ସପ୍ତକାଣ୍ଡ ରାମାୟଣର ଉତ୍ତରାକାଣ୍ଡ ପରେ ଲେଖା ଯାଇଛି ବୋଲି ଆଲୋଚକମାନେ ମତ ଦିଅନ୍ତି) ରହିଛି । ଏଥିରେ ଚବିଶ ହଜାର ଶ୍ଳୋକ ରହିଛି । ଏହି ଗ୍ରନ୍ଥଟିକୁ ପାଠ କଲେ ଚତୁର୍ବର୍ଗ ଲାଭ ହୁଏ । ମହାକାବ୍ୟର ପ୍ରଣେତା ମହର୍ଷି ବାଲ୍ମୀକି ଏହି ଯଜ୍ଞକୁ ଆସିଛନ୍ତି । ସେ ମୁନିମାନଙ୍କ କୁଟୀର ଶେଷରେ ଗୋଟିଏ ଏକାନ୍ତ ଆଶ୍ରମରେ ରହୁଛନ୍ତି ।"

ଲବ କୁଶଙ୍କ ସହିତ ଆଲୋଚନା କରି ଶ୍ରୀରାମଚନ୍ଦ୍ର ଅତ୍ୟନ୍ତ ପ୍ରସନ୍ନ ହେଲେ ଏବଂ ବାଳକ ଦୁହିଙ୍କ ସହିତ ମହର୍ଷି ବାଲ୍ମୀକିଙ୍କ ନିକଟକୁ ଯାଇଥିଲେ । ସେଠାରେ ଶ୍ରୀରାମଚନ୍ଦ୍ର ମହର୍ଷିଙ୍କ ପାଦପୂଜା କରି କୁଶଳ ପ୍ରଶ୍ନ ପଚାରିଲେ । ତା'ପରେ ଶ୍ରୀରାମଚନ୍ଦ୍ର ହାତଯୋଡ଼ି କହିଲେ—"ମହର୍ଷି ! ଆପଣଙ୍କ ଆଗମନ ମୋର ଅହୋଭାଗ୍ୟ ବୋଲି

ମନେହୁଏ । ଆପଣଙ୍କ ପଦଧୂଳି ପଡ଼ି ମୋର ଯଜ୍ଞସ୍ଥଳୀ ପବିତ୍ର ହୋଇଛି । ଆପଣ ଯେଉଁ କାବ୍ୟ ରଚନା କରିଛନ୍ତି, ତା'ର ପଟାନ୍ତର ନାହିଁ । ଭାଷା, ଭାବ ଓ ଶୈଳୀର ବିନ୍ୟାସରେ ଆପଣ ଅଦ୍ୱିତୀୟ କାବ୍ୟ ରଚନା କରି ଅଛନ୍ତି । ତାହା ପୁଣି ଏ ପିଲା ଦୁହିଙ୍କ ମୁଖରେ ଆହୁରି ସୁନ୍ଦର ହୋଇଛି । କାଲିଠାରୁ ଆପଣ ଓ ସକଳ ମୁନିସମାଜ ସହିତ ମୁଁ ଏ ମହାକାବ୍ୟ ଶୁଣିବାକୁ ଇଚ୍ଛା କରୁଛି । ଆପଣ କାଲିଠାରୁ ଏହିପରି କରିବା-ପାଇଁ ଆଦେଶ ଦେଲେ ମୁଁ ଅନୁଗୃହୀତ ହେବି ।"

ଏହା ଶୁଣି ଭଗବାନ ବାଲ୍ମୀକି ଅତ୍ୟନ୍ତ ପ୍ରୀତ ହୋଇ କହିଲେ—"ହେ ରଘୁନନ୍ଦନ ! ମୋର ପରିଶ୍ରମ ଆଜି ସଫଳ ହୋଇଛି । ଯେଉଁ ରଚନା ଶ୍ରୀରାମଚନ୍ଦ୍ରଙ୍କ ପକ୍ଷରେ ମନୋଜ୍ଞ ବୋଲି ମନେ ହେବ, ତାହା ହିଁ ହେଉଛି—ଶାଶ୍ୱତ ରଚନା । ରଚନାର ପ୍ରଶଂସା ରସଗ୍ରାହୀ ପାଠକମାନେ ହିଁ କରିଥାନ୍ତି । କାଲିଠାରୁ ଏ ମହାକାବ୍ୟ ଶେଷ ହେବାଯାଏ ମୁଁ ଆପଣଙ୍କ ସଭାକୁ ଆସିବି । ଏ ପିଲା ଦୁହେଁ ପ୍ରତିଦିନ ସେଥିରୁ କୋଡ଼ିଏ ସର୍ଗ କରି ଗାଇ ଶୁଣାଇବେ ।"

ଏହା ଶୁଣି ଶ୍ରୀରାମ ଅତ୍ୟନ୍ତ ଖୁସି ହୋଇ, ମୁନିଙ୍କୁ ପ୍ରଣାମ ନିବେଦନ କରି, ନିଜ ବିଶ୍ରାମ ସ୍ଥଳକୁ ଚାଲିଗଲେ । ପରଦିନ ସଭା ଆରମ୍ଭ ହେଲା । ଏହା ମଧ୍ୟରେ କୁଶ-ଲବଙ୍କ ଗାନର ପ୍ରଶଂସା ସର୍ବତ୍ର ବ୍ୟାପି ଯାଇଥିଲା । ତେଣୁ ଯଜ୍ଞସ୍ଥଳରେ ଅନ୍ୟାନ୍ୟ ସମସ୍ତ ମନୋରଞ୍ଜନ କାର୍ଯ୍ୟକ୍ରମ ବନ୍ଦ ହୋଇଗଲା । ସମସ୍ତେ କୁଶଲବଙ୍କ ଗାନ ଶୁଣିବାକୁ ବ୍ୟାକୁଳ ହୋଇ ଉଠିଲେ । ସଭା ସ୍ଥଳରେ ଉଚ୍ଚ ମଣ୍ଡପ ପ୍ରସ୍ତୁତ ହୋଇଗଲା । ସେହି ମଣ୍ଡପ ଉପରେ ବସି ଲବକୁଶ ପ୍ରତିଦିନ ରାମାୟଣ ଗାନ କରିବାକୁ ଲାଗିଲେ ।

ଏହିପରି ଭାବରେ ପ୍ରତିଦିନ ରାମାୟଣ ପାରାୟଣ ହେବାକୁ ଲାଗିଲା । ରାମାୟଣର ଭାଷା ଏତେ ସାବଲୀଳ ତଥା ଶ୍ରୁତିମଧୁର ହୋଇଥିଲା ଯେ ଉପସ୍ଥିତ ଜନତା ସେଥିରୁ ନବରସ ଆସ୍ୱାଦନରେ ସଫଳ ହେଲେ । ଅଳ୍ପ ମଧ୍ୟ ରାମାୟଣ ଶୁଣି-ସାରିବା ପରେ ଶ୍ରୋତାମାନେ ବେଶ୍ ଜାଣିପାରିଲେ ଯେ, ଲବକୁଶ ଦୁହିଁଭାଇ ସୀତାଦେବୀଙ୍କ ଉଦରରୁ ସମ୍ଭବ ହୋଇଛନ୍ତି । ବାଲ୍ମୀକି ଶ୍ରୀରାମଙ୍କ ଅଶ୍ୱମେଧ ଯଜ୍ଞ ପର୍ଯ୍ୟନ୍ତ ସମସ୍ତ ଗାଥା ଯା' ମଧ୍ୟରେ ରଚନା ଶେଷ କରିଦେଲେ ଏବଂ ଲବକୁଶ ସେହି ଆଖ୍ୟାନ ପର୍ଯ୍ୟନ୍ତ ସବୁ ସମକ୍ଷରେ ଗାନ କରି ଶୁଣାଇଦେଲେ । ଶେଷ ଦିନ ସଭାକୁ ମୁନି ବାଲ୍ମୀକି ଆସି ନଥିଲେ । ରାମଚନ୍ଦ୍ର ଲକ୍ଷ୍ମଣଙ୍କୁ କହିଲେ—"ସୌମିତ୍ରେ ! ତୁମେ ରାମାୟଣ ନିଶ୍ଚୟ ମନଦେଇ ଶ୍ରବଣ କରିଛ । ଏ ଦୁଇଭାଇ ସୀତାଙ୍କ ଗର୍ଭରୁ ଉତ୍ପନ୍ନ ହୋଇଛନ୍ତି । ରାମାୟଣ ପାଠରୁ ମୋର ଦୃଢ଼ ଧାରଣା ହୋଇଛି ସୀତା ଅପବିତ୍ର ନୁହନ୍ତି !"

ଏହା ଶୁଣିବା ମାତ୍ରେ ଉପସ୍ଥିତ ଜନତା ଆନନ୍ଦରେ ଉଦ୍‌ବେଳିତ ହୋଇ ଉଠିଲେ । ସେମାନେ ସମସ୍ୱରରେ ଦାବୀ ଜଣାଇଲେ—"ଏ ଦୁହେଁ ଆମର ସ୍ୱାମୀ । ଏ ଦୁଇ ବାଳକ ରଘୁବଂଶର କୀର୍ତ୍ତି ବୃଦ୍ଧି କରିବେ । ଏ ଦୁହେଁ ମହାସତୀ ଭଗବତୀ ସୀତାଙ୍କର ପୁତ୍ର । ସତୀଙ୍କ ପ୍ରତି ଘୋର ଅନ୍ୟାୟ କରାଯାଇଛି । ଆମେମାନେ ଏହି ଯଜ୍ଞସଭାରେ ଜଗଜ୍ଜନନୀ ସୀତାଙ୍କୁ ଦର୍ଶନ କରିବାକୁ ଚାହୁଁ ।"

ଏହା ଶୁଣି ଶତ୍ରୁଘ୍ନ ହାତ ଯୋଡ଼ି ଛିଡ଼ା ହୋଇ କହିଲେ—"ମୁଁ ଲବଣାସୁର ବଧ ଲାଗି ମଧୁବନ ଯିବା ସମୟରେ ଗୋଟିଏ ରାତି ମୁନି ବାଲ୍ମୀକିଙ୍କ ଆଶ୍ରମରେ ବିଶ୍ରାମ ନେଇଥିଲି । ସେହିଦିନ ସୀତାଦେବୀ ଏହି ଯାଆଁଳା ଶିଶୁଙ୍କୁ ଜନ୍ମ ଦେଇଥିଲେ । ଏ ଦୁହେଁ ସେହି କୁମାର ।

ଆପଣମାନେ କୁମାର ଦୁହିଙ୍କ ରୂପ, ଗଠନ ଆଦି ଲକ୍ଷ୍ୟ କରି ପ୍ରକୃତ ସତ୍ୟ ଅବଗତ ହୋଇଛନ୍ତି । ମୋତେ ସେଦିନ ମହର୍ଷି ବାଲ୍ମୀକି ଶପଥପୂର୍ବକ ଏ ଘଟଣା ପ୍ରକାଶ ନ କରିବା ଲାଗି ଆଦେଶ ଦେଇଥିଲେ ।

ତହୁଁ ଲକ୍ଷ୍ମଣ ଅଶ୍ରୁପୂର୍ଣ୍ଣ ନେତ୍ରରେ ହାତ ଯୋଡ଼ି ସଭାରେ ଛିଡ଼ା ହୋଇ କହିଲେ—"ମହାରାଜ ! ମୁଁ ଆପଣଙ୍କ ଆଜ୍ଞାରେ ସୀତାଦେବୀଙ୍କୁ ଛାଡ଼ିବା ଲାଗି ବନକୁ ଯାଇଥିଲି । ସେଦିନ ଦେବୀ ମୋତେ କାନ୍ଦି କାନ୍ଦି କହିଥିଲେ—ଲକ୍ଷ୍ମଣ ! ତୁମେ ମୋର ଗର୍ଭୋଦୟ ଲକ୍ଷଣ ପ୍ରତ୍ୟକ୍ଷ ଦେଖିକରି ଯାଉଛ । ମୁଁ ବର୍ତ୍ତମାନ ଗର୍ଭବତୀ । ପରମ ପୁରୁଷ ଶ୍ରୀରାମଚନ୍ଦ୍ରଙ୍କ ଦାୟାଦକୁ ମୁଁ ଗର୍ଭରେ ଧାରଣ କରିଛି । ପରେ ହୁଏତ ମୋତେ କେହି କଳଙ୍କିନୀ ବୋଲି କହିପାରେ ।"

ଏହା ଶୁଣିବା ମାତ୍ରେ ସଭାସଦ୍‌ଗଣ କର୍ଣ୍ଣ କର୍ଣ୍ଣ ହୋଇ କାନ୍ଦି ଉଠିଲେ । ସମସ୍ତେ ଏକ ସ୍ୱରରେ କହିଲେ—"ମାତା ସୀତା ଗଙ୍ଗାଜଳ ପରି ବିଶୁଦ୍ଧ । ଯେଉଁ ବ୍ୟକ୍ତି ତାଙ୍କ ଚରିତ୍ର ଉପରେ କଳଙ୍କ ଲଗାଇବାକୁ ଚେଷ୍ଟା କରିବ, ତା ଜିହ୍ୱା ଛିଡ଼ି ପଡ଼ିବ ।"

ଏହାପରେ ମହାବୀର ହନୁମାନ ସଭା ମଧ୍ୟରେ ହାତଯୋଡ଼ି ଜଣାଇଲେ—"ରଘୁନନ୍ଦନ ! ଏ ଦୁହେଁ ନିଶ୍ଚିତ ଭାବରେ ଆପଣଙ୍କ ଔରସରୁ ଜାତ ହୋଇଛନ୍ତି । ସଂସାର ମଧ୍ୟରେ ଆଜି ସୁଦ୍ଧା କେହି ମୋତେ ପରାସ୍ତ କରି ନଥିଲି । କିନ୍ତୁ ସେଦିନ ଏହି କୁମାର ଦୁହେଁ ଆମର ସମସ୍ତ ସେନାଙ୍କୁ ପରାସ୍ତ କରି ମୋତେ ଗୋଟିଏ ସାମାନ୍ୟ ବାନର ପରି ଘୋଡ଼ା ଲଞ୍ଜରେ ବାନ୍ଧି ଆଶ୍ରମକୁ ନେଇ ଯାଇଥିଲେ । ସେଠାରେ ମାତା ସୀତା ଦେବୀ ଆମକୁ ମୁକ୍ତ କରାଇ ଦେଇ, କାନ୍ଦି କାନ୍ଦି କହିଥିଲେ—ମୋ, ସ୍ୱାମୀ ନିଜର କୀର୍ତ୍ତି ରକ୍ଷା କରିବାପାଇଁ ବିନା ଅପରାଧରେ ମୋତେ ତ୍ୟାଗ କରିଛନ୍ତି । ମୁଁ

ତାଙ୍କର ପଦ ସେବିକା । ତାଙ୍କ ଅମଳ କୀର୍ତ୍ତିର ସୁରକ୍ଷା ଲାଗି ସେ ମୋତେ ବନବାସ କରିଛନ୍ତି । ଏହାଠାରୁ ବଳି ଆନନ୍ଦର କଥା ମୋ' ପକ୍ଷରେ କ'ଣ ହୋଇ ପାରେ ? ନିଜ ସ୍ୱାମୀଙ୍କ ସୁଖ୍ୟାତି ଲାଗି ମୁଁ ସମସ୍ତ ପ୍ରକାର ଲାଞ୍ଛନା ସହ୍ୟକରି ପାରିବି !" ବାନରରାଜ ସୁଗ୍ରୀବ ମଧ୍ୟ ବୀରହନୁମାନଙ୍କ ଉକ୍ତିକୁ ସମର୍ଥନ କଲେ ।

ଏହା ଶୁଣି ରୁଦ୍ଧ କଣ୍ଠରେ ମହାରାଜ ଶ୍ରୀରାମ କହିଲେ—"ଲକ୍ଷ୍ମଣ ! ତୁମେ ଏହିକ୍ଷଣି ମହର୍ଷି ବାଲ୍ମୀକିଙ୍କ ନିକଟକୁ ଯାଅ ! ଅଯୋଧ୍ୟାର ଜନତା ସମସ୍ତେ ସୀତାଦେବୀଙ୍କୁ ଆଦରର ସହିତ ଗ୍ରହଣ କରିବା ଲାଗି ପ୍ରତିଶ୍ରୁତି ଦେଉଛନ୍ତି । ସେ ଆଦେଶ ଦେଲେ ସୀତାଦେବୀ ଏଠାକୁ ଆସି ନିଜ ସତୀତ୍ୱ ସମ୍ବନ୍ଧରେ ପୁଣି ଥରେ ଶପଥ ପୂର୍ବକ ପ୍ରମାଣ ଦେବେ ।"

ଏହା ଶୁଣିବା ମାତ୍ରେ ଉପସ୍ଥିତ ଜନତା ସ୍ତବ୍ଧ ହୋଇଗଲେ । ସେମାନେ ଭାବିଲେ—"କୋମଳ ହୃଦୟ ଶ୍ରୀରାମ ସୀତାଙ୍କପାଇଁ ଏତେ କଠୋର ହେଲେ କିପରି ? ଗଙ୍ଗା ଜଳପରି ପବିତ୍ରା ଜାନକୀ ପୁଣି ଆସି ସମସ୍ତଙ୍କ ଆଗରେ ନିଜ ପବିତ୍ରତାପାଇଁ ଶପଥ ପୂର୍ବକ ପ୍ରତିଜ୍ଞା କରିବେ ! ହା ଦୈବ !!"

ସମସ୍ତେ ମୁକ୍ତ କଣ୍ଠରେ ସୀତାଦେବୀଙ୍କୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ଲବକୁଶଙ୍କୁ ସମ୍ମାନ ପ୍ରଦର୍ଶନ କଲେ ।

ଲକ୍ଷ୍ମଣ ଶ୍ରୀରାମଙ୍କ ଆଜ୍ଞାନୁସାରେ ବାଲ୍ମୀକିଙ୍କ ଆଶ୍ରମକୁ ଯାଇ, ମୁନିଙ୍କୁ ପ୍ରଣିପାତ ପୂର୍ବକ କହିଲେ—"ମହର୍ଷେ ! ଅଯୋଧ୍ୟାର ସମସ୍ତ ପ୍ରଜାଙ୍କ ଇଚ୍ଛାନୁସାରେ ଶ୍ରୀରାମଚନ୍ଦ୍ର ଯଜ୍ଞ ସଭାରେ ଶ୍ରୀମତୀ ସୀତାଦେବୀଙ୍କୁ ଦେଖିବା ଲାଗି ଇଚ୍ଛା କରିଛନ୍ତି । ଆପଣ ଆଜ୍ଞା ଦେଲେ ମହାସତୀ ମୋ' ସହିତ ଏଠାକୁ ଆସିବେ । ଆପଣଙ୍କ ଆଦେଶ ନେଇ ଜଣେ ଶିଷ୍ୟ ମୋ ସହିତ ଚାଲୁ । ତା' ଫଳରେ ଦେବୀ ଆପଣଙ୍କ ଆଶ୍ରମରୁ ଆସିବେ !"

ଭଗବାନ୍ ବାଲ୍ମୀକି ଗୋଟିଏ ଦୀର୍ଘ ନିଃଶ୍ୱାସ ପକାଇ କହିଲେ—"ସୀତା ଚିର ଦୁଃଖୀ ! ଚିର ଅବହେଳା !! ଶ୍ରୀରାମ ପୁଣି କାହିଁକି ଆଉ ଗୋଟିଏ ଖେଳ ଲଗାଇବାକୁ ଯାଉଛନ୍ତି ? ଯାହା ତାଙ୍କ ଇଚ୍ଛା !!! କିନ୍ତୁ ଲକ୍ଷ୍ମଣ ! ଏହା ସୀତାଙ୍କ ପକ୍ଷରେ ଘୋର ଅପମାନ ! ତଥାପି ପତିବ୍ରତା ନାରୀ ସ୍ୱାମୀଙ୍କ ପ୍ରସନ୍ନତା ଲାଗି ସବୁକିଛି ସହ୍ୟ କରି ନେବେ ! ହଁ, କୌଣସି ଶିଷ୍ୟକୁ ପଠାଇବା ଦରକାର ନାହିଁ । ତୁମେ ମୋ' ଆଶ୍ରମ ନିକଟରେ ସେଦିନ ଦେବୀଙ୍କୁ ଶ୍ରୀରାମଙ୍କ ଆଦେଶରେ ନିର୍ବାସିତା କରି ଆସିଥିଲ; ଆଜି ରଥ ନେଇ ତୁମେ ଯାଅ ଏବଂ ମହାରାଜ ଶ୍ରୀରାମଙ୍କ ଆଦେଶ ନିଜ ମୁଖରେ ଶୁଣାଇ ଦିଅ । ମୋର ବିଶ୍ୱାସ, ସୀତା ତୁମ ସହିତ ରଥରେ ବସି ଯଜ୍ଞସ୍ଥଳକୁ ଆସିବାରେ କିଛି ଆପତ୍ତି କରିବେ ନାହିଁ ।"

ମୁନିଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଲକ୍ଷ୍ମଣ ରଥ ନେଇ ବାଲ୍ମୀକିଙ୍କ ଆଶ୍ରମରେ ଉପସ୍ଥିତ ହେଲେ । ସୀତାଦେବୀ ମୁନି ପତ୍ନୀଙ୍କ ପରି ବଲକଲ ଧାରଣ କରି ଅନ୍ୟାନ୍ୟ ଋଷିକୁମାରୀମାନଙ୍କ ସହିତ ବନଚର୍ଯ୍ୟାରେ ଲାଗିଥିଲେ । ଶ୍ରୀରାମଙ୍କ ବିରହରେ ତାଙ୍କ ଦେହ ଶୁଖି କଳାକାଠ ପଡ଼ିଯାଇଥିଲା । ତାଙ୍କୁ ଦୂରରୁ ଦେଖି ଡକାଇ ଲକ୍ଷ୍ମଣ ରଥରୁ ଓହ୍ଲାଇ ଭୂମିରେ ସାଷ୍ଟାଙ୍ଗ ଦଣ୍ଡବତ କଲେ ।

ଲକ୍ଷ୍ମଣଙ୍କୁ ସମ୍ବୋଧନ କରି ସୀତାଦେବୀ କହିଲେ—"ରାମାନୁଜ ! କୁହ, କୁଶଳରେ ଅଛ ତ ? ତୁମ ମହାରାଜ ମଙ୍ଗଳରେ ଅଛନ୍ତି ତ ? ତୁମ ମାଆଙ୍କର ସର୍ବବିଧ କୁଶଳ ତ ? କୁଳପତି ବାଲ୍ମୀକି ନିଜ ଶିଷ୍ୟମାନଙ୍କ ସହିତ ସେଠାକୁ ଯାଇଛନ୍ତି, ସେମାନେ କୁଶଳରେ ଅଛନ୍ତି ତ ? ତୁମେ ରଥରେ ବସି ପୁଣି କୁଆଡ଼େ ବାହାରିଛ ? ସତରେ କ'ଣ ଏ ଅଭାଗିନୀ କଥା ତୁମ ମନରେ ପଡ଼ିଗଲା ନା, ତୁମେ ବାଟବଣା ହୋଇ ଏ'ଆଡ଼େ ଆସିଗଲ !"

ଦେବୀଙ୍କ ପ୍ରଶ୍ନରେ ଲକ୍ଷ୍ମଣଙ୍କ ଚକ୍ଷୁଯୁଗଳ ଅଶ୍ରୁପୂର୍ଣ୍ଣ ହୋଇଗଲା । ସେ ସନ୍ତର୍ପଣରେ ଆଖିରୁ ଲୁହଧାର ପୋଛିଦେଇ କହିଲେ—"ମା' ! ତୁମେ ମୋତେ ଲଜ୍ଜିତ କର ନାହିଁ । ସେବକର ଧର୍ମ ଅତ୍ୟନ୍ତ କଠୋର ମାଆ ! ମୁଁ ମହାରାଜଙ୍କ କଠୋର ଶାସନର ଜଣେ ତୁଚ୍ଛ ସେବକ ହୋଇଥିବାରୁ, ଆପଣଙ୍କ ଦର୍ଶନପାଇଁ କେବେ ହେଲେ ଆସିପାରି ନାହିଁ । ମଙ୍ଗଳ ସମ୍ବାଦ ମହାରାଜ ଶ୍ରୀରାମଚନ୍ଦ୍ର ଆପଣଙ୍କୁ ନିରପରାଧା, ଚରିତ୍ରଶୁଦ୍ଧା ବୋଲି ସର୍ବଜନ ସମକ୍ଷରେ ଘୋଷଣା କରିବାକୁ ଇଚ୍ଛା କରିଛନ୍ତି ।"

ଏହା ଶୁଣିବା ମାତ୍ରେ ସୀତାଙ୍କ ଆଖିରୁ ଝର ଝର ହୋଇ ଲୋତକର ଧାର ଝରି ପଡ଼ିଲା । ସେ ବାଷ୍ପରୁଦ୍ଧ କଣ୍ଠରେ କହିଲେ—"ସୌମିତ୍ରେ ! ଏବେ ଆଉ ତୁମ ମହାରାଜ ମୋତେ କାହିଁକି ମନେ ପକାଇଲେ ? ମୁଁ ଧର୍ମ, ଅର୍ଥ ଓ କାମରୁ ବିମୁଖ ହୋଇ ଭିକ୍ଷୁଣୀ ହୋଇ ନିଜ ମୋକ୍ଷର ମାର୍ଗ ଅନ୍ୱେଷଣ କରିବାକୁ ଯାଉଛି । ମୋ'ଦ୍ୱାରା ପ୍ରଭୁଙ୍କର ଆଉ କି କାର୍ଯ୍ୟ ସାଧିତ ହେବ ? ସ୍ୱର୍ଣ୍ଣସୀତାଙ୍କୁ ବସାଇ ସେ ଯଜ୍ଞ ପୂର୍ଣ୍ଣ କରି ନିଅନ୍ତୁ । ମୁଁ ବର୍ତ୍ତମାନ ଯାଇ କେଉଁ ମୁହଁରେ ତାଙ୍କ ପାଖରେ ବସି ପାରିବ ? ଦେଶ ବିଦେଶରୁ ବହୁ ରାଜା, ମହାରାଜା ତଥା ମୁନିଋଷି ଆସିଥିବେ । ସେମାନଙ୍କ ଆଗରେ କଳଙ୍କିନୀ ସୀତା ଯାଇ କିପରି ମୁହଁ ଦେଖାଇ ପାରିବ ? ମୋ' ବାପା ଜନକ ମଧ୍ୟ ସେ ଯଜ୍ଞ ସ୍ଥଳରେ ଉପସ୍ଥିତ ଥିବେ । ମୁଁ କିପରି ତାଙ୍କ ଆଡ଼କୁ ମୁହଁ ଟେକି ଚାହିଁ ପାରିବ ? ଲକ୍ଷ୍ମଣ ! ମୋ' ପ୍ରାଣର ଭାଇ ! ମୋତେ ଅଧିକ ଲଜ୍ଜା ଦେବାପାଇଁ ତୁମେ କାହିଁକି ଚେଷ୍ଟା କରୁଛ ? ବିବାହ ସମୟରେ ଶ୍ରୀରାମଙ୍କର ଯେଉଁ ମଧୁର-ମୋହନ ମୂର୍ତ୍ତି ମୋ' ହୃଦୟରେ ଅଙ୍କିତ ହୋଇ ରହିଛି, ତାହାକୁ ଚିରଧନ କରି ମୁଁ ମୋ' ମନ-ମନ୍ଦିରରେ ଅହର୍ନିଶି ପୂଜୁଛି । ସେହି ମଧୁମୟ ମୂର୍ତ୍ତିର ଦର୍ଶନ ଓ ଶ୍ରୀରାମଙ୍କ ନାମ ଭଜନ

କରି ଜୀବନର ଅବଶିଷ୍ଟ ସମୟ ମୁଁ ବିତାଇ ଦେବି । ମୋତେ ପୁଣି କାହିଁକି ଖେଳଣା ପରି ବ୍ୟବହାର କରିବା ଲାଗି ମହାରାଜା ଏ ଆଜ୍ଞା ବିଧାନ କରିଛନ୍ତି ?"

ବିମାତଭାବରେ ଲକ୍ଷ୍ମଣ କହିଲେ—"ଦେବି ! ଏହା ମହାରାଜ ଶ୍ରୀରାମଚନ୍ଦ୍ରଙ୍କର ଆଜ୍ଞା ନୁହେଁ । ସେ ମହର୍ଷିଙ୍କ ନିକଟକୁ ବାର୍ତ୍ତା ପଠାଇ କହିଥିଲେ—ମୁନି ମହୋଦୟ ଉଚିତ ମନେ କଲେ ଦେବୀଙ୍କୁ ଯଜ୍ଞ ସ୍ଥଳକୁ ଡକାଇ ଆଣିବେ । ଭଗବାନ୍ ବାଲ୍ମୀକି ମୋତେ ଆଦେଶ ଦେଇ କହିଲେ—ତୁମେ ଯାଅ, ସୀତା ଯଦି ଆସିବାକୁ ଇଚ୍ଛା କରିବେ, ସେ ତୁମ ସହିତ ଆସିବେ । ମୁଁ ମହର୍ଷିଙ୍କ ଆଜ୍ଞାନୁସାରେ ଏଠାରେ ଉପସ୍ଥିତ ହୋଇଛି । ଏଥର ଆପଣ ଯାହା ଆଜ୍ଞା ଦେବେ, ତାହା ପାଳନ କରିବି । ଦେବି ! ଆମ ଭାଇମାନଙ୍କ ମଧ୍ୟରେ ମୁଁ ଏପରି ଜଣେ ଅଭାଗା ଯେ, ସବୁବେଳେ ମୋତେ କଠୋର କାର୍ଯ୍ୟ କରିବାକୁ ପଡ଼ୁଛି ।"

ଏହା ଶୁଣି ଦେବୀ ସୀତା ଅତ୍ୟନ୍ତ ଦୀନ ସ୍ୱରରେ କହିଲେ—"ମୋର ପ୍ରିୟ ଦେବର ! ପ୍ରକୃତରେ ଯଜ୍ଞସ୍ଥଳକୁ ଯିବାଲାଗି ମୋର ଆଦୌ ଇଚ୍ଛା ହେଉନାହିଁ ! ମହାରାଜଙ୍କର ଆଜ୍ଞା ଛୋଡ଼ିଦେଲେ ଉପାୟ ନଥା'ନ୍ତା ! ପୁତ୍ରପାଇଁ ସ୍ତ୍ରୀ ସହିତ ସମ୍ପର୍କ ରକ୍ଷା କରାଯାଏ । ସେ ପ୍ରୟୋଜନ ପ୍ରଭୁଙ୍କର ସିଦ୍ଧ ହୋଇଛି । ତାଙ୍କର ଓଜ ଓ ତେଜର ପ୍ରତୀକ ସନ୍ତାନ ଦୁଇଜଣ ମହର୍ଷିଙ୍କ ସହିତ ଯଜ୍ଞସ୍ଥଳକୁ ଯାଇଛନ୍ତି । ଯଦି ମହାରାଜ ସେହି ପୁତ୍ର ଦୁହିଁଙ୍କୁ ବିଶୁଦ୍ଧ ବଂଶର ପ୍ରତୀକ ବୋଲି ମନେ କରିବେ, ତେବେ ସେହିଠାରେ ତାଙ୍କୁ ଅଟକାଇ ନିଅନ୍ତୁ । ମୁଁ ତାଙ୍କର ଧାଇମାଆ । ସେ ଦୁହିଁଙ୍କୁ ଲାଳନ ପାଳନ କରିବାର ଦାୟିତ୍ୱ ମୁଁ ସୁଚାରୁରୂପେ ସମ୍ପନ୍ନ କରିଛି । ସେ ରାଜକାର୍ଯ୍ୟ ଲାଗି ସମ୍ପୂର୍ଣ୍ଣ ଯୋଗ୍ୟ । ମହାରାଜଙ୍କ ପାଖରେ ରହି ସେ ଦୁହେଁ ତାଙ୍କୁ ଯଥେଷ୍ଟ ସାହାଯ୍ୟ କରି ପାରିବେ । ମୋତେ ଏଇ ନିର୍ଜନ ଋଷି ଆଶ୍ରମରେ ପଡ଼ି ରହିବାକୁ ଦିଅ ! ହୁଏତ କେଉଁ ଦିନ ଶୁଣିବ, ଏ ଅଭାଗିନୀ ମୃତ୍ୟୁ ବରଣ କରିଛି; ସେଦିନ ମୋ'ପାଇଁ ଦୁଇ ଟୋପା ଲୁହ ଝରାଇ ଦେଲେ ତାହା ହେବ ମୋ' ଲାଗି ଶ୍ରେଷ୍ଠ ତର୍ପଣ । ତୁମ ସହିତ ଏହା ହେଉ ମୋର ଶେଷ ଦେଖା ! ମୁଁ ତୁମକୁ କିମ୍ବା ବିଶ୍ୱବ୍ରହ୍ମାଣ୍ଡରେ କାହାରିକୁ ଦୋଷ ଦେଉନାହିଁ । ଏହା ମୋର କର୍ମଫଳ ! ମୁଁ ଯେପରି ମହାରାଜ ଶ୍ରୀରାମଙ୍କ ଆଜ୍ଞାର ଅଧୀନା, ତୁମେ ମଧ୍ୟ ଠିକ୍ ସେହିପରି ତାଙ୍କର ଚିର ସେବକ । ତୁମେ ଯାଇ ପ୍ରଭୁଙ୍କ ଶ୍ରୀଚରଣରେ ମୋର ପ୍ରଣାମ ଜଣାଇଦେବ ଏବଂ ପୂଜ୍ୟ ଗୁରୁଜନ ସମାଗତ ଋଷି, ମୁନି ତଥା ରାଜନ୍ୟବର୍ଗଙ୍କୁ ମୋର ପ୍ରଣାମ ଜଣାଇବ । ମୋ ଭଉଣୀମାନଙ୍କୁ ସ୍ନେହାଶୀଷ ଏବଂ କୁଶ ଲବଙ୍କୁ କହିବ, ସେ ଦୁହେଁ ପିତାଙ୍କ ଆଜ୍ଞା ପାଳନ କରି ସେହିଠାରେ ରହିବେ । ସେ ଦୁହେଁ ମୋତେ କେବେହେଲେ ମନେ ପକେଇବେ ନାହିଁ । ମୁଁ ଥିଲି ସେ ଦୁହିଁଙ୍କର ଧାଇମାଆ…!"

ଏହା ଶୁଣିବା ମାତ୍ରେ ଲକ୍ଷ୍ମଣ ଭେଁ ଭେଁ ହୋଇ କାନ୍ଦି ଉଠିଲେ । ଯେତେ ଚେଷ୍ଟା କଲେ ମଧ୍ୟ ତାଙ୍କ ଚକ୍ଷୁରୁ ଲୁହ ଧାର ବନ୍ଦ ହେଲ ନାହିଁ । ତହୁଁ ସୀତାଦେବୀ ତାଙ୍କୁ ସାନ୍ତ୍ୱନା ଦେଇ କହିଲେ—"ଲକ୍ଷ୍ମଣ ! ତୁମେ ପୁରୁଷ ହୋଇ ଏତେ ଅଧୀର କାହିଁକି ହେଉଛ ? ମୁଁ ଅବଳା ନାରୀ; ତଥାପି ଛାତିରେ ପଥର ଥୋଇ ମୁଁ ଦୀର୍ଘକାଳ ହେଲ ସ୍ୱାମୀଙ୍କ ବିରହ ଦୁଃଖ ସହ୍ୟ କରି ଚାଲିଛି । ଯାଅ, ଫେରିଯାଅ ! ଈଶ୍ୱର ତୁମର ମଙ୍ଗଳ କରନ୍ତୁ ! ତୁମେ ସମସ୍ତଙ୍କୁ ମୋ ସନ୍ଦେଶ ଶୁଣାଇଦେବ ।"

ଏହା ଶୁଣି ଲକ୍ଷ୍ମଣ ଦେବୀଙ୍କୁ ପ୍ରଣାମ ଜଣାଇ ଅତ୍ୟନ୍ତ ଦୁଃଖରେ ରଥରେ ବସି ବାହୁଡ଼ି ଆସିଲେ । ଶ୍ରୀରାମଙ୍କ ଶ୍ରୀମୁଖରେ ସବୁ ବିଷୟ ଜଣାଇ ସାରନ୍ତେ, ପ୍ରଭୁ ରାମଚନ୍ଦ୍ର ପୁଣି ଆଦେଶ ଦେଇ କହିଲେ—"ଲକ୍ଷ୍ମଣ ! ତୁମେ ପୁଣି ଥରେ ବାଲ୍ମୀକିଙ୍କ ଆଶ୍ରମକୁ ଯାଇ ଦେବୀଙ୍କୁ ମୋ ଅଙ୍କବାର୍ତ୍ତା ଶୁଣାଇଦିଅ ।" ତାଙ୍କୁ କହିବ—"ଦେବି ! ତୁମେ ବନରେ ରହି ତପସ୍ୟା ପୂର୍ବକ ମୋତେ (ସ୍ୱାମୀଙ୍କୁ) ପାଇବାକୁ ଚାହୁଁଛ । ମୁଁ ଜାଣେ, ମୋ' ବ୍ୟତୀତ ତୁମ ଧ୍ୟାନ, ଧାରଣା, ଜପ, ତପ ଓ ସାଧନାରେ ଅନ୍ୟ କାହାରି ସ୍ୱରୂପର ସ୍ଥାନ ନାହିଁ । ଗର୍ଭାବସ୍ଥାରେ ତୁମେ ବନକୁ ଯାଇ ମୁନିଋଷିଙ୍କ ସେବା କରିବାଲାଗି ଇଚ୍ଛା କରିଥିଲ । ମୁଁ ତୁମ ଇଚ୍ଛା ପୂରଣ କରିବାପାଇଁ ତୁମକୁ ବନବାସିନୀ କରାଇଛି । ଅନେକଦିନ ହେଲ ତୁମେ ବନବାସିନୀ ହୋଇ ମୁନିଋଷିଙ୍କ ସେବା ଓ ପୂଜା କରି ସାରିଲଣି । ବନର ସୁଖ ଓ ଆନନ୍ଦ ତୁମେ ମନତୃପ୍ତିର ସହିତ ଭୋଗକରି ସାରିଲଣି । ଏଥର ମୁଁ ଡକାଉଛି, ତୁମେ ଆସ ! ମୁଁ ମଧ୍ୟ ମନ ମଧ୍ୟରେ ତୁମ ବ୍ୟତୀତ ଅନ୍ୟ କାହାରିକୁ କେବେହେଲେ ସ୍ଥାନ ଦେଇନାହିଁ । ତୁମ ପ୍ରତି ମୋ' ମନର ଅତୁଟ ସ୍ନେହ ପୂର୍ବପରି ରହିଛି । ତା'ପରେ ଏହା ମଧ୍ୟରେ ତୁମେ ଯେଉଁ ତପୋମୟ ଜୀବନ-ଯାପନ କରିଛ, ତା' ଫଳରେ ମୋ' ମନରେ ତୁମ ପ୍ରତି ଅଧିକ ଶ୍ରଦ୍ଧା ଜାତ ହୋଇଛି । ପତିବ୍ରତା ନାରୀମାନଙ୍କର ଗତି ହେଉଛନ୍ତି—ସ୍ୱାମୀ । ସେ ଘରେ ରହନ୍ତୁ; ଅଥବା ବନରେ, ସ୍ୱାମୀ ହିଁ ତାଙ୍କର ଆଶ୍ରୟ ! ବର୍ତ୍ତମାନ ମୁଁ ତୁମକୁ ଡକାଉଛି । ତୁମେ ମହର୍ଷି ବାଲ୍ମୀକିଙ୍କ ସହିତ ବିନାସଙ୍କୋଚରେ ମୋ ପାଖକୁ ଆସ ।"

ଲକ୍ଷ୍ମଣ ଶ୍ରୀରାମଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ବାଲ୍ମୀକିଙ୍କ ଆଶ୍ରମକୁ ରଥନେଇ ଗମନ କଲେ । ପୁଣି ଲକ୍ଷ୍ମଣଙ୍କୁ ଆସିବାର ଦେଖି ସୀତା ଦେବୀ ମନେ ମନେ ଭାବିଲେ—ଆଉ ଉପାୟ ନାହିଁ । ଏଥର ଯିବାକୁ ହିଁ ପଡ଼ିବ । ଲକ୍ଷ୍ମଣ ଦେବୀଙ୍କୁ ପ୍ରଣାମ ଜଣାଇ ଶ୍ରୀରାମଙ୍କ ସନ୍ଦେଶ ଶୁଣାଇଦେଲେ । ଲକ୍ଷ୍ମଣ ସୀତାଙ୍କୁ ଶ୍ରୀରାମଙ୍କ ବାଣୀ ଶୁଣାଉଥିବାବେଳେ, ତାଙ୍କ ଶରୀର କମ୍ପୁଥିଲା ଏବଂ ଦୁଇ ଚକ୍ଷୁରୁ ଧାର ଧାର ହୋଇ ଲୋତକ ଝରି ପଡ଼ୁଥିଲା । ସୀତାଦେବୀ ଲକ୍ଷ୍ମଣଙ୍କ ଅବସ୍ଥା ତଥା ଆତ୍ମଗ୍ଲାନି ବେଶ୍ ଅନୁଭବ କଲେ । ସେ ଆଉ କୌଣସି ପ୍ରକାର ଆପତ୍ତି ନକରି କହିଲେ—"ଠିକ୍ ଅଛି ! ମୁଁ ବର୍ତ୍ତମାନ ବାହାରି ପଡୁଛି ।"

ସେ କୁଟୀର ମଧ୍ୟକୁ ପ୍ରବେଶ କରି ବୃଦ୍ଧା ମୁନି ପତ୍ନୀମାନଙ୍କ ଚରଣ ବନ୍ଦନା କଲେ ଏବଂ ସାଙ୍ଗସାଥୀମାନଙ୍କୁ ସ୍ନେହରେ ଆଲିଙ୍ଗନ କରି ବାହାରିଲେ । ଦୀର୍ଘ ଦିନର ରହଣି ଫଳରେ ଆଶ୍ରମର ବୃକ୍ଷଲତାମାନଙ୍କ ପ୍ରତି ତାଙ୍କ ମନରେ ଗଭୀର ସ୍ନେହ ଓ ସଦ୍‌ଭାବ ଜାତ ହୋଇଥିଲା । ସେ ଆଶ୍ରମରୁ ବାହାରିବାବେଳେ ତାଙ୍କ ଅନ୍ତର କରୁଣରସରେ ଦ୍ରବୀଭୂତ ହୋଇଗଲା । ମୁନିପତ୍ନୀ ଓ କୁମାରୀମାନେ ତାଙ୍କୁ ବିଦାୟ ଦେବାପାଇଁ ଆଶ୍ରମର ମୁଖ୍ୟଦ୍ୱାର ପର୍ଯ୍ୟନ୍ତ ଆସିଲେ । ସେମାନେ ସୀତାଙ୍କୁ ପୁଣି ଆଶ୍ରମକୁ ଆସିବା ଲାଗି ଅନୁରୋଧ କଲେ । ସୀତାଦେବୀଙ୍କର କଣ୍ଠରୋଧ ହୋଇଗଲା । ସେ କେବଳ ଅଶ୍ରୁଧାରାରେ ସମସ୍ତଙ୍କ ଅନ୍ତରକୁ ଧୋଇଦେଇ ରଥରେ ବସିଲେ ।

ରଥ ଆସି ବାଲ୍ମୀକିଙ୍କ କୁଟୀର ସମ୍ମୁଖରେ ଛିଡ଼ା ହୋଇଗଲା । ଲବକୁଶ ଦୁହେଁ ମାଆଙ୍କୁ ରଥରେ ବସିଥିବାର ଦେଖି ଧାଇଁଆସି କୁଣ୍ଢାଇ ପକାଇଲେ ।

ସୀତାଦେବୀ ମୁନି ବାଲ୍ମୀକିଙ୍କ ଚରଣ ବନ୍ଦନା କରିବାପରେ ଅନ୍ୟାନ୍ୟ ମୁନିମାନଙ୍କୁ ପ୍ରଣାମ କରି କୁଟୀରର ଗୋଟିଏ କୋଣରେ ବସିପଡ଼ିଲେ । ଲକ୍ଷ୍ମଣ ସୀତାଙ୍କୁ ରଥରୁ ଓହ୍ଲାଇ ଦେଇ ଶ୍ରୀରାମଙ୍କ ଆଗରେ ସମସ୍ତ ଘଟଣା ଜଣାଇଲେ । ଶ୍ରୀରାମ ସେବକ ହସ୍ତରେ ମହର୍ଷିଙ୍କ ନିକଟକୁ ସନ୍ଦେଶ ପଠାଇଲେ । ପରଦିନ ଯଜ୍ଞସଭାରେ ସୀତାଦେବୀ ମହର୍ଷିଙ୍କ ସହିତ ଉପସ୍ଥିତ ହୋଇ ଶପଥ ପୂର୍ବକ ନିଜ ସତୀତ୍ୱକଥା ଘୋଷଣା କରିବାଲାଗି ଶ୍ରୀରାମ ମୁନିଙ୍କ ନିକଟକୁ ସନ୍ଦେଶ ପଠାଇଥିଲେ । ମହର୍ଷି ବାଲ୍ମୀକି ଶ୍ରୀରାମଙ୍କ ସନ୍ଦେଶର ପ୍ରତ୍ୟୁତ୍ତର ଦେଇ ପରଦିନ ନିର୍ଦ୍ଦିଷ୍ଟ ସମୟରେ ଯଜ୍ଞସଭାରେ ଉପସ୍ଥିତ ହେବାଲାଗି ସ୍ୱୀକୃତି ଜଣାଇଲେ । ଲବକୁଶ ସେଦିନ ଅତି ଆନନ୍ଦରେ ମାତାଙ୍କ ଆଗରେ ଯଜ୍ଞସଭାର ବୃତ୍ତାନ୍ତ ଶୁଣାଇ କହିଲେ—"ମାଆ ! ବାପା ଆମକୁ ଖୁବ୍ ସ୍ନେହ କଲେ । ସେ ଆମ ମୁହଁରୁ ରାମାୟଣ ଶୁଣି ଭାବବିହ୍ୱଳ ହୋଇ ଉଠୁଥିଲେ । ଆମେ ଅନେକଥର ଲକ୍ଷ୍ୟକରି ଦେଖିଛୁ—ତାଙ୍କ ଚକ୍ଷୁରୁ ଅବିରତ ଅଶ୍ରୁ ଝରୁଥିଲା ଏବଂ ତାଙ୍କ ଓଠ ଦୁଇଟି ପ୍ରକମ୍ପିତ ହେଉଥିଲା ।"

ପରଦିନ ଯଜ୍ଞସଭାର ଆୟୋଜନ ବିଶେଷ ଧରଣର ହୋଇଥିଲା । ଶ୍ରୀରାମଚନ୍ଦ୍ର ସମସ୍ତ ମୁନି, ଋଷି, ରାଜା, ମହାରାଜା ଓ ପୁରଜନମାନଙ୍କୁ ବିଶେଷ ଭାବରେ ଡକାଇଥିଲେ । ସମସ୍ତଙ୍କପାଇଁ ସ୍ୱତନ୍ତ୍ର ଆସନର ବ୍ୟବସ୍ଥା ହୋଇଥିଲା । ସମସ୍ତେ ନିର୍ଦ୍ଦିଷ୍ଟ ସମୟର ବହୁପୂର୍ବରୁ ଆସି ଆସନ ଗ୍ରହଣ ପୂର୍ବକ ଉତ୍କଣ୍ଠାର ସହିତ ସୀତାଦେବୀଙ୍କ ଆଗମନକୁ ଚାହିଁ ରହିଲେ ।

ଏହି ସମୟରେ ଜନସମୂହ ମଧ୍ୟରେ କୋଳାହଳ ବୃଦ୍ଧି ପାଇଲା । ସମସ୍ତେ ଉଦ୍‌ଗ୍ରୀବ ହୋଇ ସେହି ଆଡ଼କୁ ଚାହିଁ ରହିଲେ । ରାଜସଭାର ସମ୍ମୁଖ ଭାଗରେ ବଶିଷ୍ଠ

ବାମଦେବ, ଜାବାଳି, କାଶ୍ୟପ, ବିଶ୍ୱାମିତ୍ର, ବାମନ, ମାର୍କଣ୍ଡେୟ, ସତାନନ୍ଦ ଓ ଭରଦ୍ୱାଜ ପ୍ରମୁଖ ମୁନିମାନେ ନିଜନିଜର ଶିଷ୍ୟ-ପ୍ରଶିଷ୍ୟମାନଙ୍କ ଗହଣରେ ଆସନ ଗ୍ରହଣ କରିଥିଲେ । ସେମାନେ ଲକ୍ଷ୍ୟକଲେ—ଭଗବାନ ପ୍ରଚେତାଙ୍କର ପରମ ତେଜସ୍ୱୀ ପୁତ୍ର ମହର୍ଷି ବାଲ୍ମୀକି ଗମ୍ଭୀରତାର ସହିତ ରାଜସଭା ଆଡ଼କୁ ଅଗ୍ରସର ହେଉଛନ୍ତି । ତାଙ୍କ ଆଗେ ଆଗେ ଲବକୁଶ ବୀଣାର ମୂର୍ଚ୍ଛନାରେ ତାଳ ମିଶାଇ 'ରାମାୟଣ'-ଉତ୍ତରକାଣ୍ଡର ଶେଷ ଅଂଶ ଗାନ କରି କରି ଚାଲିଛନ୍ତି । ଲକ୍ଷ୍ମଣ ସୀତାଙ୍କୁ ବାଲ୍ମୀକି ଆଶ୍ରମର ଅଦୂରସ୍ଥିତ ଅରଣ୍ୟରେ ଛାଡ଼ିବା ଏବଂ ସୀତାଦେବୀ ସ୍ୱାମୀଙ୍କ ପ୍ରତି ତାଙ୍କର ଦୁଃଖର ସହିତ ତତ୍ତ୍ୱ ପ୍ରକାଶ କରିବାଠାରୁ ଆରମ୍ଭ କରି ସମସ୍ତ ବିଷୟ ଲବକୁଶ ସୁସ୍ୱରରେ ଗାଇ ଚାଲିଥିଲେ । ମହର୍ଷି ବାଲ୍ମୀକିଙ୍କ ମୁଖମଣ୍ଡଳରୁ ଅପୂର୍ବ ଜ୍ୟୋତି ଝଲସି ଉଠୁଥିଲା । ସେ ସମୟରେ ତାଙ୍କ ଶରୀରର ତେଜ ସୂର୍ଯ୍ୟଙ୍କ ପରି ଦେଦୀପ୍ୟମାନ ହୋଇଉଠୁଥିଲା । ଲବକୁଶ ମଧ୍ୟ ନିର୍ଭୟରେ ମୁନିଙ୍କ ପ୍ରଣୀତ 'ରାମାୟଣ'ର ଯେଉଁ ହୃଦୟସ୍ପର୍ଶୀ ଅଂଶତକ ଗାନ କରି କରି ଚାଲିଥିଲେ । ମୁନିଙ୍କ ପଛେ ପଛେ ଲଜ୍ଜାରେ ମସ୍ତକ ଅବନତ କରି, ଦୁଇହାତ ଯୋଡ଼ି ଚାଲିଥିଲେ—ରଘୁବଂଶର କୁଳବଧୂ ବନବାସିନୀ ସୀତାଦେବୀ । ସେ କାହାର ଆଡ଼କୁ ଚାହୁଁ ନଥିଲେ । ହୃଦୟ ସିଂହାସନରେ ପ୍ରତିଷ୍ଠିତ ଶ୍ରୀରାମଙ୍କ ମଧୁରମୂର୍ତ୍ତିକୁ ଧ୍ୟାନ କରିବା ସଙ୍ଗେ ସଙ୍ଗେ ମୁଖରେ ରାମନାମ ଘୋଷୁଥିଲେ । ତାଙ୍କର କମଳ ନେତ୍ରରୁ ଅଶ୍ରୁର ବନ୍ୟା କୂଳ ଲଙ୍ଘନ କରି ବହି ଚାଲିଥିଲା । ସେ କେବଳ ମହର୍ଷିଙ୍କ ପାଦ ଦୁଇଟିକୁ ଚାହିଁ ତା'ରି ଅନୁଗମନ କରୁଥିଲେ । ତାଙ୍କୁ ଦେଖିଲେ ମନେ ହେଉଥିଲା—ସତେ ଅବା, ବ୍ରହ୍ମାଙ୍କ ପଛେ ପଛେ 'ଶ୍ରୁତି' ଅନୁଗମନ କରୁଛି ଅଥବା ବୃହସ୍ପତିଙ୍କ ପଛେ ପଛେ ପତି ବିୟୋଗିନୀ ଶଚୀ ଦେବୀ ଚାଲିଛନ୍ତି କିମ୍ବା ସ୍ୱୟଂ 'ଶାନ୍ତରସ' ମୂର୍ତ୍ତିମାନ୍ ହୋଇ ଆଗେ ଆଗେ ଗମନ କରୁଥିବାରୁ, 'କରୁଣା' ତାଙ୍କର ଅନୁଗାମିନୀ ହୋଇଛି ।

ସେ ସମୟରେ ସଭାସ୍ଥଳର ଦୃଶ୍ୟ ଅତ୍ୟନ୍ତ କରୁଣ ହୋଇ ଉଠିଥିଲା । ସମସ୍ତେ ସୀତାଦେବୀଙ୍କ ବେଶ ଓ ସ୍ୱରୂପ ଦେଖି ହାହାକାର କରି ଉଠିଲେ । ଅନ୍ତଃପୁର ନାରୀମାନେ, ବିଶେଷତଃ ସୀତାଙ୍କର ଅନ୍ୟ ତିନି ଭଉଣୀ ଉଚ୍ଚସ୍ୱରରେ ରୋଦନ କରିବାକୁ ଲାଗିଲେ । କିନ୍ତୁ କେବଳ ଶ୍ରୀରାମ ଅବିଚଳିତଭାବରେ ସିଂହାସନ ଉପରେ ଆସୀନ ଥିଲେ । ତାଙ୍କ ହୃଦୟର ପ୍ରତିଚ୍ଛବି ମୁଖମଣ୍ଡଳରେ ପ୍ରକଟିତ ହେଉ ନ ଥିଲା । ସେ ନିର୍ବିକାର ପୁରୁଷଙ୍କ ପରି ସିଂହାସନରୁ ଉଠିପଡ଼ି ମହର୍ଷି ବାଲ୍ମୀକିଙ୍କୁ ସ୍ୱାଗତ ଜଣାଇଲେ । ମୁନିବର ଆସନ ଗ୍ରହଣ କରିବା ପରେ ଲବକୁଶ ରାମାୟଣ ଗାନ ଶେଷ କରି, ମୁନିଙ୍କ ପାଦତଳେ ଆସନରେ ବସି ପଡ଼ିଲେ । ଅବଗୁଣ୍ଠନବତୀ ସୀତାଦେବୀ ମୁନିଙ୍କ ପାଖରେ ଜଡ଼ ପ୍ରତିମା ପରି ଛିଡ଼ାହୋଇ ରହିଲେ ।

କିଛି ସମୟ ନୀରବତାରେ ବିତିଗଲା । ମହର୍ଷି ବାଲ୍ମୀକିଙ୍କ ଆଦେଶ ପାଇ ସୀତାଦେବୀ ଲବକୁଶଙ୍କ ପାଖରେ ବସି ପଡ଼ିଲେ । ଏହି ସମୟରେ ମହର୍ଷି ବାଲ୍ମୀକି

ଛୁଡ଼ା ହୋଇ ପଡ଼ିଲେ । ହଠାତ୍ ମୁନିବରଙ୍କୁ ଛୁଡ଼ା ହୋଇଥିବାର ଲକ୍ଷ୍ୟ କରି ସଭାସ୍ଥଳରେ ମୃଦୁଗୁଞ୍ଜରଣ ଖେଳିଗଲା ଏବଂ ମୁନିବର ବାଲ୍ମୀକି କିଛି କହିବା ଲାଗି ଉଦ୍ୟତ-ହେବା ମାତ୍ରେ ସଭାସ୍ଥଳ ନୀରବ ହୋଇଗଲା । ସମସ୍ତେ ଅତ୍ୟନ୍ତ ଉତ୍ସୁକତାର ସହିତ ମୁନିଙ୍କ ମୁଖ ନିଃସୃତ ବାଣୀ ଶୁଣିବାକୁ ବ୍ୟାକୁଳ ହୋଇ ଉଠିଲେ । ମହର୍ଷି ବାଲ୍ମୀକି ଗୁରୁଗମ୍ଭୀର ସ୍ୱରରେ ଶ୍ରୀରାମଚନ୍ଦ୍ରଙ୍କୁ ସମ୍ବୋଧନ କରି କହିଲେ—"ରାଘବ ! ଏ' ହେଉଛି—ତୁମର ଧର୍ମପତ୍ନୀ ସୀତା । ଏହାର ବିଶୁଦ୍ଧତା ଓ ପବିତ୍ରତା ବିଷୟରେ ସାକ୍ଷୀ ହେଉଛନ୍ତି—ଆପଣ ଏବଂ ପ୍ରଚେତାଙ୍କ ଦଶମ ସନ୍ତାନ, ମହାତପସ୍ୱୀ, ବହୁଯଜ୍ଞର ଫଳ ଭୋକ୍ତା ମୁଁ—ବାଲ୍ମୀକି ! ଏହି ସତୀ ସାଧ୍ୱୀ ଜୀବନରେ ଅନେକ ବ୍ରତ ତଥା କଠୋର ତପସ୍ୟାରେ ନିଜ ଅଙ୍ଗ ତଥା ଆତ୍ମାକୁ ବିଶୁଦ୍ଧ କରିଛି । କିନ୍ତୁ ଆପଣ ତାକୁ ଲୋକାପବାଦ ଭୟରେ ତ୍ୟାଗ କରିଛନ୍ତି । ଯଦ୍ୟପି ଆପଣଙ୍କ ମନରେ ସୀତାଙ୍କ ପବିତ୍ରତା ସମ୍ବନ୍ଧରେ କୌଣସି ସନ୍ଦେହ ନାହିଁ, ତଥାପି ଲୋକସମାଜର ଆଦର୍ଶ ଦୃଷ୍ଟିରୁ ଆପଣ ତାଙ୍କୁ ପରିତ୍ୟାଗ କରିଛନ୍ତି । ସେ ଗର୍ଭବତୀ ଥିବା ଅବସ୍ଥାରେ ଲକ୍ଷ୍ମଣ ତାଙ୍କୁ ନେଇ ଗଙ୍ଗାତଟରେ ଥିବା ମୋ' ଆଶ୍ରମର ଅନତି ଦୂରରେ ଛାଡ଼ିଦେଇ ଆସିଥିଲେ । ତା'ପରେ ସୀତା ଆଶ୍ରମରେ ରହି, କଠୋର ବ୍ରତମାନ ପାଳନ କରିବା ସଙ୍ଗେ ସଙ୍ଗେ ଧର୍ମପୂର୍ବକ ବିଶୁଦ୍ଧ ଜୀବନଯାପନରେ ବ୍ରତୀ ହୋଇଛି ।

ସୀତା ଗଙ୍ଗାଜଳଠାରୁ ଆହୁରି ପବିତ୍ରା ! ଆହୁରି ବିଶୁଦ୍ଧା !! ମୁଁ ଆହୁରି ମଧ୍ୟ କହି ଦେବାକୁ ଚାହେଁ—ହେ ରଘୁନନ୍ଦନ ! ମୁଁ ସାଧାରଣ ତପସ୍ୱୀ ନୁହେଁ । ଜୀବନର ଅଧିକାଂଶ ସମୟ ତପସ୍ୟାରେ ବିତାଇଛି । ଶତସହସ୍ର ଯଜ୍ଞ କରି ତା'ର ଫଳଭାଗୀ ହୋଇଛି । ଜୀବନରେ କେବେହେଲେ ପରିହାସରେ ମଧ୍ୟ ମିଥ୍ୟା କହିନାହିଁ । ସୀତା ଯଦି କାୟମନୋବାକ୍ୟରେ ପାପିନୀ ହୋଇଥିବେ, ତେବେ ମୋର ସମସ୍ତ ପୁଣ୍ୟ କ୍ଷୟ ହୋଇଯିବ । ମୁଁ ଭୂତ, ଭବିଷ୍ୟତ ଓ ବର୍ତ୍ତମାନ—ତ୍ରିକାଳଦର୍ଶୀ । ମୁଁ ପ୍ରଥମେ ମୋ' ଆଶ୍ରମ ନିକଟରେ କ୍ରନ୍ଦନରତା ସୀତାଙ୍କୁ ଦେଖିବା ମାତ୍ରେ ଯୋଗବଳରେ ତାଙ୍କ ଅନ୍ତରର ଭାବ ଜାଣିପାରି, ସେହିଦିନଠାରୁ ମୁଁ ତାଙ୍କୁ ଆଶ୍ରମରେ ସ୍ଥାନ ଦେଇଛି । ସୀତା ଧର୍ମଚାରିଣୀ, ପତିବ୍ରତା ଓ ପବିତ୍ରା ଅଟନ୍ତି । ଶ୍ରୀରାମ, ଆପଣଙ୍କ ପିତା ଦଶରଥ ମୋର ପରମ ମିତ୍ର ଥିଲେ । ମୁଁ ତାଙ୍କର ପବିତ୍ର ଆତ୍ମାର ଶପଥ ନେଇ କହୁଛି—ସୀତାଙ୍କ ପବିତ୍ରତାରେ କୌଣସି ସନ୍ଦେହ ନାହିଁ । ସେ ଆପଣଙ୍କୁ ତା'ର ଧ୍ୟାନ, ଧାରଣା ଜପ, ତପ ଓ ଚିନ୍ତନରେ ପ୍ରଭୁ ଓ ଇଷ୍ଟଦେବ ବୋଲି ମନେ କରି ଆଜୀବନ ପାତିବ୍ରତ୍ୟ ଧର୍ମ ପାଳନ କରିଆସିଛି । ସେ ନିଜେ ମଧ୍ୟ ଏହାର ପ୍ରମାଣ ଦେଇ ଶପଥ ଗ୍ରହଣ କରିବେ ବୋଲି ମୋର ବିଶ୍ୱାସ ।"

ଏତିକ କହି ମହର୍ଷି ବାଲ୍ମୀକି ବସି ପଡ଼ିଲେ । ଏହାପରେ ଦୁଇହାତ ଯୋଡ଼ି ଶ୍ରୀରାମଚନ୍ଦ୍ର ଠିଆ ହୋଇ କହିଲେ—"ପ୍ରଭୋ ! ଆପଣ ଯାହା କହିଲେ, ତାହା ସର୍ବଦା

ସତ୍ୟ ! ଆପଣଙ୍କ ବଚନରେ ମୋର ସମ୍ପୂର୍ଣ୍ଣ ବିଶ୍ୱାସ ରହିଛି । ହୁଏତ, ସୂର୍ଯ୍ୟ ପଶ୍ଚିମ ଦିଗରୁ ଉଦୟ ହୋଇ ପାରନ୍ତି, ଚନ୍ଦ୍ର ଅଗ୍ନି ବୃଷ୍ଟି କରିପାରନ୍ତି, ଜଳ ନିଜର ଶୀତଳ ଗୁଣ ତ୍ୟାଗ କରିପାରେ, କିନ୍ତୁ ଆପଣ ମିଥ୍ୟା ଭାଷଣ କରିପାରିବେ ନାହିଁ । ମୁନିବର ! ମୁଁ ନିତାନ୍ତ ଅଜ୍ଞ, ନୋହିଲେ ସୀତାଙ୍କ ପବିତ୍ରତା ସମ୍ପର୍କରେ ଆପଣ ମୋ' ବିଶ୍ୱାସ ଜନ୍ମାଇବାପାଇଁ କୌଣସି ଶପଥ ଗ୍ରହଣପୂର୍ବକ ପ୍ରତିଜ୍ଞା କରି ନଥାନ୍ତେ ! ମୁଁ ଭଲ ଭାବରେ ଜାଣେ, ମୋ' ପତ୍ନୀ ପତିବ୍ରତା ତଥା ସାଧ୍ୱୀ ଅଟନ୍ତି । ତାଙ୍କଠାରେ କୌଣସି ଦୋଷନାହିଁ, ଏହା ମୋର ଦୃଢ଼ବିଶ୍ୱାସ । ଲଙ୍କାଗଡ଼ରେ ସୀତାଦେବୀ ଦେବଗଣଙ୍କ ସମ୍ମୁଖରେ ଅଗ୍ନିରେ ପ୍ରବେଶ କରି ପରୀକ୍ଷାର ସମ୍ମୁଖୀନ ହୋଇଛନ୍ତି । ଦେବଗଣଙ୍କ ଉପଦେଶ ଅନୁସାରେ, ମୁଁ ମୋର ଦୋଷ ରହିତ ତଥା ପବିତ୍ର ପତ୍ନୀଙ୍କୁ ସଙ୍ଗରେ ଆଣି ଅଯୋଧ୍ୟାର ପାଟରାଣୀ କରିଥିଲି । କିନ୍ତୁ ମୋ' ଦୁର୍ବଳତାର ସୁଯୋଗ ନେଇ ତାଙ୍କ-ନାମରେ ଲୋକାପବାଦ ରଟିଲା । ସେହି ଭୟରେ ମୁଁ ମୋର ପ୍ରିୟତମା ପତ୍ନୀଙ୍କୁ ପରିତ୍ୟାଗ କରିଥିଲି । ଆପଣ ଇଚ୍ଛାକରିଥିଲେ ମୋର ଏ ପ୍ରକାର ଧୃଷ୍ଟତାପାଇଁ ମୋତେ ଅଭିଶାପ ଦେଇ ଧ୍ୱଂସ କରିଦେଇ ଥାଆନ୍ତେ ! କିନ୍ତୁ ଆପଣ ନିଜ ମହତ୍ତ୍ୱ ଗୁଣରେ ମୋ' ଅପରାଧ ପ୍ରତି ଆଖି ବୁଜିଦେଲେ । ଆପଣ ମୋତେ କ୍ଷମା କରିଦେଇ ମୋର ଧର୍ମଚାରିଣୀ ପତ୍ନୀଙ୍କୁ ନିଜ ଆଶ୍ରମରେ ଆଶ୍ରୟ ଦେଇଛନ୍ତି । ସେ ଆପଣଙ୍କ ଚରଣଶୁଶ୍ରୂଷାରେ ବହୁ ସମସ୍ତପ୍ରକାର କଠୋର ବ୍ରତ ପାଳନ କରିଛନ୍ତି । ଆପଣ ସୀତାଙ୍କର ପିତା ଏବଂ ମୋର ପିତୃତୁଲ୍ୟ ଆରାଧ୍ୟ ଅଟନ୍ତି । ଆପଣ ମୋତେ ଅସୀମ ସ୍ନେହ କରିଛନ୍ତି । ଆପଣ କେବଳ ମୋର ପୂଜ୍ୟ ନୁହନ୍ତି, ଆପଣ ମୋ' ପିତାଙ୍କର ମଧ୍ୟ ପରମ ପୂଜନୀୟ ! ମୁଁ ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରୁଛି । କେବଳ ଲୋକାପ-ବାଦ ଭୟରେ ମୁଁ ଅଯୋନିସମ୍ଭୂତା, ପତିପ୍ରାଣା ଜାନକୀଙ୍କୁ ପରିତ୍ୟାଗ କରିଛି । ଏ ଦୁହେଁ ମୋର ପୁତ୍ର; ଏହା ମୁଁ ଭଲଭାବରେ ଜାଣେ ! ମୁଁ ସୀତାଙ୍କୁ କେବେହେଲେ ପତିତା ବୋଲି ଭାବନାହିଁ କିମ୍ବା ଏବେ ମଧ୍ୟ ଭାବୁନାହିଁ । ତଥାପି ସମସ୍ତ ପ୍ରଜାଜନଙ୍କ ଅଙ୍ଗୀକାର ବିନା ମୁଁ ସୀତାଙ୍କୁ ଗ୍ରହଣ କରି ପାରିବି ନାହିଁ । ତେଣୁ ସୀତା ସମସ୍ତଙ୍କ ଆଗରେ ନିଜ ଶୁଦ୍ଧତା ସମ୍ବନ୍ଧରେ ଶପଥ ପୂର୍ବକ ପ୍ରତିଜ୍ଞା କରନ୍ତୁ । ସମସ୍ତେ ତାଙ୍କୁ ବିଶୁଦ୍ଧ ବୋଲି ଗ୍ରହଣ କଲେ, ମୁଁ ତାଙ୍କୁ ଧର୍ମପତ୍ନୀରୂପେ ଗ୍ରହଣ କରିବି ।''

ଶ୍ରୀରାମଙ୍କର ଏପରି କଠୋର ବାଣୀ ଶୁଣି ସମସ୍ତେ ହାୟ ହାୟ କରି ଦୁଃଖରେ ରୋଦନ କରିବାକୁ ଲାଗିଲେ । ବାଲ୍ମୀକିଙ୍କ ପଦତଳେ ଲଜ୍ଜାରେ ଅବନତମୁଖୀ-ହୋଇ ବସିଥିବା ସୀତାଙ୍କୁ ସମ୍ବୋଧନ କରି ମୁନିବର କହିଲେ—''ମାଆ ! ତୁମେ ସମସ୍ତଙ୍କ ଆଗରେ ନିଜର ପବିତ୍ରତା ସମ୍ବନ୍ଧରେ ଶପଥ ଗ୍ରହଣ କର ! ସମଗ୍ର ବିଶ୍ୱ ଜାଣୁ—ତୁମେ ପବିତ୍ର !''

ଲଜ୍ଜା, ଆତ୍ମଗ୍ଲାନି, ସଙ୍କୋଚ ତଥା ବିବଶତା କାରଣରୁ ସୀତା କାହାରିକୁ ମୁଖ ଦେଖାଇବାଲାଗି ଚାହୁଁ ନଥିଲେ । ତଥାପି ଭୂମି ନନ୍ଦିନୀ, କଷାୟବସ୍ତ୍ରଧାରିଣୀ ସୀତା ଅତି କଷ୍ଟରେ ତଳୁ ଉଠିପଡ଼ି ପ୍ରଥମେ ମହର୍ଷିଙ୍କ ପାଦବନ୍ଦନା କଲେ । ତା'ପରେ ସେ ଶ୍ରୀରାମଙ୍କ ସିଂହାସନ ଆଡ଼କୁ ଯନ୍ତ୍ରଚାଳିତ ପ୍ରତିମା ପରି ଆଗେଇ ଗଲେ । ଦର୍ଶକ-ମଣ୍ଡଳୀ ଅପଲକ ନେତ୍ରରେ ତାଙ୍କ ଆଡ଼କୁ ଚାହିଁ ରହିଥିଲେ । ସୀତାଦେବୀ ସିଂହାସନ ପାଖରେ ପହଞ୍ଚି ଶ୍ରୀରାମଙ୍କ ଉଦ୍ଦେଶ୍ୟରେ ଭୂମିରେ ଶିର ରଖି ପ୍ରଣାମ କଲେ । ତା'ପରେ ସେ ଉତ୍ତରକୁ ମୁଖ କରି ଛିଡ଼ାହୋଇ ରହିଲେ । ଶ୍ରୀରାମ ପୂର୍ବକୁ ମୁଖ କରି ବସିଥିଲେ ଏବଂ ମହର୍ଷି ବାଲ୍ମୀକି ପଶ୍ଚିମକୁ ମୁଖ କରି ଆସନ ଗ୍ରହଣ କରିଥିଲେ । ସେତେବେଳେ ସୀତାଙ୍କର ପାଦ ଦୁଇଟି ଥରୁଥିଲା । ସେ କାହାରିକୁ ସମ୍ବୋଧନ ନକରି କହିବାକୁ ଆରମ୍ଭ କଲେ—"ହେ ମାତା ପୃଥ୍ୱୀ ! ମୁଁ ଯଦି ପ୍ରକୃତରେ ସତୀ, ସାଧ୍ୱୀ ଓ ପତିବ୍ରତା ହୋଇଥାଏ, ତେବେ ତୁମେ ମୋତେ ନିଜ କୋଡ଼ରେ ଆଶ୍ରୟ ଦିଅ ! ଏହି ସଂସାରରେ ସମସ୍ତେ କେବଳ ଦୋଷଦ୍ରଷ୍ଟା ଅଟନ୍ତି । ମୁଁ ଏହି ନିନ୍ଦୁକ ସମାଜରେ ରହିବାକୁ ଚଳେ-ହେଲେ ଚାହୁଁନାହିଁ । ଯଦି ମୁଁ ସର୍ବଦା, ମନ, ବଚନ ଓ କର୍ମରେ ଶ୍ରୀରାମଙ୍କ ପବିତ୍ର ସ୍ୱରୂପ ଚିନ୍ତାରେ କାଟିଥାଏ; ତେବେ ମାଆ ! ତୁମେ ମୋତେ ନିଜ କୋଳରେ ଆଶ୍ରୟ ଦିଅ । ହେ ଧରଣୀ ! ତୁମେ ସମସ୍ତଙ୍କୁ ନିଜର ପବିତ୍ର କୋଳରେ ଆଶ୍ରୟ ଦେଇଛ । ଶେଷରେ ତୁମେ ହିଁ ସମସ୍ତଙ୍କର ଗତି-ମୁକ୍ତି ଦାତ୍ରୀ ଅଟ । ଯଦି ମୁଁ ଶ୍ରୀରାମଚନ୍ଦ୍ରଙ୍କୁ ମୋର ଜୀବନର ସର୍ବସ୍ୱ ବୋଲି ମନରେ ଭାବିଥାଏ, ତେବେ ତୁମେ ମୋତେ ତୁମର ପବିତ୍ର କୋଳରେ ଆଶ୍ରୟ ପ୍ରଦାନ କର ।"

ସୀତାଦେବୀ ଭୂମିକୁ ଚାହିଁ ଏପରି କହିସାରିବା ମାତ୍ରେ ସମସ୍ତଙ୍କ ଆଖି ଝଲସି ଉଠିଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଗୋଟିଏ ଅଲୌକିକ ଦୃଶ୍ୟ ଅବଲୋକନ କରି ତଟସ୍ଥ ହୋଇଗଲେ । ସଙ୍ଗେ ସଙ୍ଗେ ଧରିତ୍ରୀ ଦୁଇଫାଳ ହୋଇ ଫାଟିଗଲା । ପୃଥ୍ୱୀର ଗର୍ଭରୁ ଗୋଟିଏ ସୁବର୍ଣ୍ଣମୟ ଦିବ୍ୟରଥ ବାହାରି ଆସିଲା । ସେହି ରତ୍ନଜଡ଼ିତ ସ୍ୱର୍ଣ୍ଣ ସିଂହାସନକୁ ଦେଖି ସମସ୍ତେ ବିସ୍ମିତ ହୋଇଗଲେ । ସେହି ମଣିମୟ ସିଂହାସନରେ ବିଶିଷ୍ଟ ଫଣିଧର ନାଗମାନେ ଘେରି ରହିଥିଲେ । ସେମାନଙ୍କ ଫଣାରେ ଥିବା ମଣିର ଦେଦୀପ୍ୟମାନ ଆଲୋକରେ ସମସ୍ତଙ୍କ ଚକ୍ଷୁ ଝଲସି ଉଠିଲା । ହଠାତ୍ ପୃଥ୍ୱୀର ଗହ୍ୱରରୁ ଦୁଇଟି ଦିବ୍ୟହସ୍ତ ଉପରକୁ ଉଠି ଆସିଲା । ସୀତାଦେବୀଙ୍କୁ ସେହି ହାତ ଦୁଇଟି ତଳୁ ଉଠାଇ ନେଇ ଦିବ୍ୟ ସିଂହାସନରେ ବସାଇଦେଲା । ସେ ସମୟର ଶୋଭା ଦେଖିଲେ ମନେ ହେଉଥିଲା—ସତେ ଯେପରି, ସୀତା ପୃଥ୍ୱୀର ଅଧିଷ୍ଠାତ୍ରୀ ଦେବୀ । ଧୀରେ ଧୀରେ ସେହି ଦିବ୍ୟ ସିଂହାସନଟି ଧରିତ୍ରୀର ନିମ୍ନଭାଗକୁ ଖସିବାକୁ ଲାଗିଲା । ଏହା ଦେଖି ଲବକୁଶ ମାଆଙ୍କ ଆଡ଼କୁ ଦୌଡ଼ିଗଲେ । ସୀତାଦେବୀ

ମୁନି ବାଲ୍ମୀକିଙ୍କ ଆଡ଼କୁ ଚାହିଁ କହିଲେ—"ପିତା ! ଆପଣ ଏ ଦୁହିଁଙ୍କୁ ଅଟକାଇ ନାଅନ୍ତୁ ।"

ମୁନିବର ବାଲ୍ମୀକି ଅଶ୍ରୁଳ ନୟନରେ ଲବକୁଶଙ୍କୁ ଧରି ପକାଇଲେ । ଏହି ସମୟରେ ଆକାଶରୁ ପୁଷ୍ପବୃଷ୍ଟି ହେବାକୁ ଲାଗିଲା । ଭଗବତୀ ସୀତା ସେହି ପୁଷ୍ପଗୁଚ୍ଛରେ ପୋତହୋଇ ପଡ଼ିଲେ । ସମସ୍ତେ "ସାଧୁ ! ସାଧୁ !!" "ଧନ୍ୟ ! ଧନ୍ୟ !!" କହିବାକୁ ଲାଗିଲେ । ଆକାଶରେ ଦେବଗଣ ଦୁନ୍ଦୁଭି ବଜାଇ କହୁଥିଲେ—"ଦେବି ! ତୁମେ ଧନ୍ୟ ! ତୁମର ଆଚ୍ଚରି, ସତ୍ୟ, ନିଷ୍ଠା ଓ ପାତିବ୍ରତ୍ୟ ଅନୁକରଣୀୟ" !!

ସମସ୍ତଙ୍କ ଆଖି ଆଗରେ ସିଂହାସନ ସୀତାଦେବୀଙ୍କୁ ନେଇ ପୃଥିବୀର ଗହ୍ୱର ମଧ୍ୟରେ ବିଲୀନ ହୋଇଗଲା । ସମସ୍ତଙ୍କ ଧୈର୍ଯ୍ୟର ବନ୍ଧ ଭାଙ୍ଗିଗଲା । ଆଶ୍ଚର୍ଯ୍ୟ, ଚକିତ ତଥା ବିସ୍ମିତ ଜନସମୁଦାୟ 'ହାହାକାର' କରି ଉଠିଲା । ଶ୍ରୀରାମ ଧାଇଁ ଯାଇ ସୀତାଦେବୀଙ୍କୁ ଧରି ପକାଇବାକୁ ଚେଷ୍ଟା କଲେ । ସେତେବେଳକୁ ସୀତାଦେବୀ ସ୍ୱର୍ଣ୍ଣସିଂହାସନ ସମେତ ପୃଥିବୀ ମଧ୍ୟରେ ବିଲୀନ ହୋଇ ସାରିଥିଲେ । କେବଳ ତାଙ୍କ ମସ୍ତକର କେଶ କେଇ କେରା ଶ୍ରୀରାମଙ୍କ ହାତରେ ଲାଗିଲା ।

ଭଗବାନ୍ ଶ୍ରୀରାମଚନ୍ଦ୍ର ସେହି କେଶ ଗୁଚ୍ଛକୁ ଭୂମିରେ ପକାଇଦେଲେ । ସେଥିରୁ 'ଅଳସୀ' ନାମକ ଗୋଟିଏ ପ୍ରକାର ବୃକ୍ଷ ଉତ୍ପନ୍ନ ହୋଇଗଲା । ତାହା ହିଁ ହେଉଛି—ସୀତାଦେବୀଙ୍କର ଭୂପ୍ରବେଶର ପ୍ରତୀକ । ଆଜି ଆମ ଆଗରେ ସୀତାଦେବୀ ନାହାନ୍ତି; କିନ୍ତୁ ରହିଛି—ତାଙ୍କର ପ୍ରତୀକ 'ଅଳସୀ' ବୃକ୍ଷ । ସେହି ବୃକ୍ଷକୁ ଦେଖି ଆମ ମନରେ ଆଜି ମଧ୍ୟ ଜାଗି ଉଠୁଛି—ସୀତାଦେବୀଙ୍କ ନିଷ୍ଠା, ତ୍ୟାଗ, ପାତିବ୍ରତ୍ୟ ଓ ସତୀତ୍ୱ !

## ଛପ୍‌ପୟ

"ରାମ ସକଳହିଁ ଶପଥ ପ୍ରଚେତା ସୁତ ନେ ଚୀନ୍ହୀ ।
ସୁର ନର ଋଷିମୁନି ସକଳ ବିଶୁଦ୍ଧା ସୀତା ଚୀନ୍ହୀ ॥
ପାଇ ରାମ ରୁଖ ସିୟ ଧରି ଚିତ ବୋଲୀ ବାନୀ ।
ପତିପରାୟଣା ମୋଇ ଜନନୀ ! ଯଦି ତୁମନେ ଜାନୀ ॥
ତୋ ଅପନେ ଇ ଉଦର ମହଁ କରହୁ ଲୀନ ଅପନାଉ ଅବ ।
ସୁନତ ଭୂମି ଫାଟୀ ତୁରତ, ଧଁସନ ଲଗୀ ସିୟ ହୁଲିତ ପାବ"।



# ଶ୍ରୀରାମଙ୍କ ଶୋକ

"ତଚ୍ଛୁତ୍ୱା ଭଗବାନ୍ ରାମୋ ରୁନ୍ଧନ୍ନପି ଧିୟା ଶୁଚଃ ।
ସ୍ମରଂସ୍ତସ୍ୟା ଗୁଣାଂସ୍ତାଂସ୍ତାନ୍ନାଶକ୍ନୋଦ୍ ରୋଦ୍ଧୁମୀଶ୍ୱରଃ ।
ସ୍ତ୍ରୀପୁଂ ପ୍ରସଙ୍ଗ ଏତାଦୃକ୍ ସର୍ବତ୍ର ତ୍ରାସମାବହଃ ।
ଅପୀଶ୍ୱରାଣାଂ କମୁତ ଗ୍ରାମ୍ୟସ୍ୟ ଗୃହଚେତସଃ" ॥

(ଶ୍ରୀଭା. ୯ମ-୧୧ଅ-୧୬, ୧୭ଶ୍ଳୋ)

**ଛପ୍‌ପୟ**

ନିରଖି ବିକଲ ରଘୁନାଥ ଭୟେ ସାହସ ସବ ଛୁଟ୍‌ୟୋ ।
ପୁରୁଷାରଥ ଅବ ଘଟ୍‌ୟୋ ଧୈର୍ଯ୍ୟ କୀ ଦୃଢ଼ ପୁଲ ଟୂଟ୍‌ୟୋ ॥
ପ୍ରେମ ସହିତ ଢିଁଗ ବୈଠି ମାରୁ ସମ କୌନ ଖୱାବୈ ।
ହାୟ ? ପ୍ରିୟେ ! କହଁ ଗଈ କୌନ ଅବ ସୀଖ ସିଖାବୈ ॥
କୋ ରମ୍ୟା କେ ସରସ ସୁଖ, ଦେହି ବାତ କେହି ସଁଗ କରୂଁ ।
କୀଉଁ କାକୋ ମୁଖ ନିରଖି, କ୍ରୀଡ଼ ବଦନ କାକୋ ଧରୂଁ" ॥

ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜନ୍ ! ସୀତାଦେବୀ ଧରିତ୍ରୀର ଗହ୍ୱରରେ ପ୍ରବେଶ କରିଯିବା ମାତ୍ରେ ଭଗବାନ୍ ରାମଚନ୍ଦ୍ର ଅତ୍ୟନ୍ତ ଦୁଃଖିତ ହେଲେ । ସେ ନିଜର ଜ୍ଞାନ ଓ ବୁଦ୍ଧିଦ୍ୱାରା ମନର କୋହ ଶାନ୍ତ କରିବାକୁ ଚେଷ୍ଟା କଲେ । କିନ୍ତୁ ଈଶ୍ୱର ହୋଇଥିଲେ ହେଁ ସେ ତାହା କରି ପାରିଲେ ନାହିଁ । ସୀତାଦେବୀଙ୍କର ଅନେକ ସୁଗୁଣ ଥିଲା । ତାହା ସ୍ମରଣ କରି ଶ୍ରୀରାମ ଅଧୀର ହୋଇ ପଡ଼ୁଥିଲେ । ସ୍ତ୍ରୀ ପୁରୁଷଙ୍କ ସମ୍ବନ୍ଧ ଏହିପରି ଅତ୍ୟନ୍ତ ଦୁଃଖଦାୟକ ଅଟେ । ସେହି ମୋହମାୟାର ଆବର୍ତ୍ତ ମଧ୍ୟରେ ପଡ଼ି ଏଡ଼େ ବଡ଼ ଲୋକ ଯେତେବେଳେ ବିକଳ ହୋଇ ଯାଉଛନ୍ତି, ସେତେବେଳେ ସାଧାରଣ ବିଷୟୀ ଲୋକଙ୍କ କଥା କ'ଣ ଅବା କହିବା ?

ଆମ ସ୍ନେହର ମଣିଷ ଯେ ପର୍ଯ୍ୟନ୍ତ ଆମ ପାଖରେ ରହୁଛି, ସେ ପର୍ଯ୍ୟନ୍ତ ଆମେ ତା'ର ମହତ୍ତ୍ୱ ଉପଲବ୍‌ଧି କରିପାରୁ ନଥାଉଁ । ସେ ଆମ ଆଗରେ ଜଣେ ସାଧାରଣ ମଣିଷ ଭାବରେ ପ୍ରତୀତ ହୋଇଥାଏ । ସେ ଆମଠାରୁ ଅଲଗା ହୋଇଗଲେ, ଆମେ ତା'ର ମହତ୍ତ୍ୱ ଉପଲବ୍‌ଧି କରିଥାଉଁ । ତା'ର ସ୍ମୃତିରେ ଆମ ଅନ୍ତର କାନ୍ଦଉଠେ ଏବଂ ସ୍ନେହର ସ୍ରୋତ କୂଳ ଲଙ୍ଘି ଯାଏ ।

ମିଳନର ଉତ୍କଟ ଇଚ୍ଛା ଜାତ ହେଉଥିବା ସମୟରେ ଆମ ମନରେ ନାନା-ପ୍ରକାର ଆଶା ଓ ଆକାଙ୍‌କ୍ଷା ଉଙ୍କିମାରେ । ହୃଦୟରେ ଘନୀଭୂତ ହୋଇଥିବା ବିରହର ପୀଡ଼ା ତରଳିଯାଇ କ୍ରନ୍ଦନ ମାଧ୍ୟମରେ ବାହାରକୁ ବାହାରି ଆସେ । ଯାହାକୁ ଆମେ ଚିରଦିନ ଲାଗି ହରାଇ ବସୁ, ତା'ର ସ୍ମୃତି ଆମ ହୃଦୟକୁ ମନ୍ଥନ କରି ପକାଏ । ଏହି ସଂସାରରେ ବିରହ ଓ ମିଳନର କଠୋର ଶୃଙ୍ଖଳା ଚକ୍ରପରି ଘୂରି ଚାଲିଛି ।

ସୂତ ମହର୍ଷି କହୁଛନ୍ତି—"ହେ ମୁନିଗଣ ! ସୀତାଦେବୀ ଅକସ୍ମାତ୍ ଭୂବିବରରେ ଲୀନ ହୋଇଗଲେ । ଶ୍ରୀରାମଚନ୍ଦ୍ର ମୁନିବର ବାଲ୍ମୀକିଙ୍କ ଆସନର କାଷ୍ଠଦଣ୍ଡକୁ ଧରି ଜଡ଼ ପ୍ରତିମା ପରି ନିଶ୍ଚଳ ହୋଇଗଲେ । ସୀତାଙ୍କ ବିୟୋଗରେ ସେ ତାଙ୍କର ସମସ୍ତ ଚିନ୍ତାଶକ୍ତିକୁ ହରାଇ ବସିଲେ । ସେ ପର ମୁହୂର୍ତ୍ତରେ କ୍ରୋଧ ଓ ଅନ୍ତର୍ବେଦନାରେ କମ୍ପିବାକୁ ଲାଗିଲେ । ପ୍ରିୟତମାଙ୍କ ବିୟୋଗ ଦୁଃଖରେ ତାଙ୍କ ଅନ୍ତରାତ୍ମା କାନ୍ଦି ଉଠିଲା । ସେ ନିଜର ବିବେକ ବୁଦ୍ଧି ବଳରେ ମନର ଅସ୍ଥିରତାକୁ ନିରୋଧ କରିବାଲାଗି ସମସ୍ତ ପ୍ରକାର ଚେଷ୍ଟା କଲେ ସତ; କିନ୍ତୁ ତାଙ୍କର ଅମାନିଆ ମନଟା ଆଦୌ ବୁଝିଲା ନାହିଁ । ଈଶ୍ୱର ହୋଇ ମଧ୍ୟ ସେ ନିଜ ମନକୁ ଆୟତ୍ତ କରି-ପାରିଲେ ନାହିଁ । ସେ କ୍ରୋଧରେ ଉନ୍ମତ୍ତ ହୋଇ ଉଠି, ବାଣ ଶରାସନ ଉଠାଇ ପୃଥିବୀକୁ ସମ୍ବୋଧନ କରି କହିଲେ—"ଧରଣୀ ! ତୁମେ ସମସ୍ତଙ୍କୁ ଧାରଣ କରିଛ ବୋଲି ମନେ ମନେ ଖୁବ୍ ଗର୍ବ କରୁଛ ! ମେଦିନୀ ! ତମର ଗଠନ ଅସୁରର ମେଦରେ ସମ୍ପନ୍ନ ହୋଇଛି । ବସୁନ୍ଧରେ ! ତୁମେ ନିଜ ଗର୍ଭରେ ଅତୁଳ ସମ୍ପତ୍ତି ଧାରଣ କରିଛ ! କିନ୍ତୁ ମନେରଖ ନିଶ୍ଚିତରେ, ମୋ' ଜୀବନର ଏକମାତ୍ର ଧନ ହେଉଛି—ମୋ' ପ୍ରାଣପ୍ରିୟା ସୀତା ! ତୁମେ କ'ଣ ଜାଣନାହିଁ ଯେ, ମୁଁ ମୋ' ପ୍ରିୟା ସୀତାକୁ କେତେ ଭଲପାଏ ? ରାକ୍ଷସରାଜ ରାବଣ ସୀତାକୁ ଅପହରଣ କରି ନେବାରୁ, ମୁଁ ତା'ର ସବଂଶ ବିନାଶ କଲି । ତୁମେ ଜାଣ, ମୁଁ କେଡ଼େ ଦୃଢ଼ତାର ସହିତ ସୀତାକୁ ଲଙ୍କାରୁ ନେଇ ଆସି ପାରିଲି ଏବଂ ମନେରଖ, ମୁଁ ଇଚ୍ଛା କଲେ ଏହିକ୍ଷଣି ତୁମ ହୃଦୟ ବିଦାରଣ କରି ସୀତାକୁ ନେଇ ଆସି ପାରିବି ! ଏହା ମୋ' ପକ୍ଷରେ ଆଦୌ କଠିନ କାର୍ଯ୍ୟ ନୁହେଁ । ମୁଁ ସୀତାଙ୍କ ବିନା କ୍ଷଣେମାତ୍ର ରହି ପାରିବି ନାହିଁ । ତେଣୁ ତୁମେ ମୋ' ସୀତାକୁ ମୋତେ ଫେରାଇ ଦିଅ କିମ୍ବା ମୋତେ ତୁମର ଅତଳ ଗର୍ଭରେ ସ୍ଥାନ ଦିଅ ! ଯଦି

ତୁମେ ଏହା ନକର "ତୁମକୁ କୌଣସିମତେ କ୍ଷମା କରିବ ନାହିଁ। ତୁମେ ଯଦି ମୋ' ଆଦେଶ ନ ମାନ, ତେବେ ବନ, ପର୍ବତ, ନଦ, ନଦୀ, ସାଗର ଜନପଦ ସମେତ ମୁଁ ତୁମକୁ ଓଲଟାଇ ଦେବି ! ତୁମକୁ ଖଣ୍ଡ ଖଣ୍ଡ କରି ଚାରିଆଡ଼େ ବାଣ୍ଟି ଦେବି ! ମୁଁ ମାନୁଛି—ସୀତା ତୁମର ପୁତ୍ରୀ; କିନ୍ତୁ ତା'ର ପାଳନକର୍ତ୍ତା ମହାରାଜ ଜନକ ମୋ' ହାତରେ ତାକୁ ଧର୍ମପୂର୍ବକ ସମର୍ପଣ କରିଥିଲେ । ତେଣୁ ତା' ଉପରେ ତୁମର କୌଣସି ଅଧିକାର ନାହିଁ ! ସେ ମୋର ପ୍ରାଣରୁ ବଳି ପ୍ରିୟା, ପ୍ରିୟତମା ! ସେହି ସମ୍ପର୍କରୁ ତୁମେ ମୋର ମାତା । ମୁଁ ତୁମକୁ ଶାଶୁ ବୋଲି ମନେ କରି ସମ୍ମାନ କରୁଛି ! ସେଇଥିପାଇଁ 'ଏ ପର୍ଯ୍ୟନ୍ତ ମୁଁ ତୁମ ଉପରେ ବାଣ ବର୍ଷା କରିନାହିଁ । ଯଦି ତୁମେ ମୋ' କଥା ନମାନ, ତେବେ ମୁଁ ସମସ୍ତ ଉପ୍ରୋଧ ତ୍ୟାଗକରି, ତୁମକୁ ରସାତଳ ଗାମିନୀ କରାଇ-ଦେବି । ମନେରଖ, ପ୍ରଳୟକାଳ ସଦୃଶ ମୁଁ ସଂସାରକୁ ଜଳମଗ୍ନ କରାଇ ଦେବି ! ମୁଁ ମୋର କ୍ରୋଧକୁ ଆଦୌ ଆୟତ୍ତ କରିପାରୁ ନାହିଁ । ମୁଁ ମୋର ମନୋଭାବକୁ କୌଣସିମତେ ସମ୍ବରଣ କରି ପାରିବନାହିଁ । ସୀତାକୁ ପାଇବା ପାଇଁ ମୁଁ ସବୁକିଛି କରିପାରେ ! ତେଣୁ ତୁମେ ମୋ' ଆଦେଶକୁ ଅମାନ୍ୟ କରିବାର ଧୃଷ୍ଟତା କରନାହିଁ । ତୁମେ ଭଲ ଭାବରେ ଜାଣିଛ—ମୋ' ବାଣ ଅବ୍ୟର୍ଥ ଓ ଅମୋଘ । ସୀତା ଯେଉଁଠି ଥିଲେ ମଧ୍ୟ ମୁଁ ଅକ୍ଳେଶରେ ତଥା ଅନାୟାସରେ ତାକୁ ଫେରାଇ ଆଣି ପାରିବି ! ମୁଁ ସୀତାଙ୍କ ପାଇଁ ପାଗଳ ହୋଇ ଯାଇଛି । ମୁଁ ଥରେ ମାତ୍ର ବାଣ ପ୍ରୟୋଗ କଲେ ତୁମର ଅସ୍ତିତ୍ୱ ରସାତଳଗାମୀ ହେବ । ମୋ' ବାଣ ସମ୍ମୁଖରେ ତୁମକୁ ରକ୍ଷା କରିବାର ଶକ୍ତି କାହାର ନାହିଁ । ବର୍ତ୍ତମାନ ମୁଁ କାହାର ଉପ୍ରୋଧ ରକ୍ଷା କରିବ ନାହିଁ । କେବଳ ସୀତା ପ୍ରାପ୍ତିରେ ହିଁ ମୋ' କ୍ରୋଧ ପ୍ରଶମିତ ହେବ" !

ଶ୍ରୀରାମଚନ୍ଦ୍ର ଧନୁରେ ଶର ଯୋଚି କ୍ରୋଧରେ ପ୍ରକମ୍ପିତ ହେବାକୁ ଲାଗିଲେ ଏବଂ ପୃଥିବୀକୁ ରସାତଳଗାମୀ କରାଇବା ଲାଗି ଉଦ୍ୟତ ହୋଇ ରହିଲେ ।

ଶ୍ରୀରାମଙ୍କ କ୍ରୋଧ ଦେଖି ବ୍ରହ୍ମଲୋକରୁ ପିତାମହ ନୈମିଷାରଣ୍ୟରେ ଆସି ପହଞ୍ଚିଗଲେ । ସେ ହଂସ ବାହନରେ ବସି ଆକାଶମାର୍ଗରୁ ଶ୍ରୀରାମଙ୍କୁ ସମ୍ବୋଧନ କରି କହିଲେ—"ରାମ ! ଶ୍ରୀରାମ !! ମହାବାହୋ !!! ଆପଣ ଏ କ'ଣ କରୁଛନ୍ତି ? ଆପଣ ନିଜ ସତ୍ୱସ୍ୱରୂପର ସ୍ମରଣ କରନ୍ତୁ ! ଆପଣ ବରାହରୂପ ଧାରଣ କରି ରସାତଳଗାମିନୀ ପୃଥିବୀଦେବୀଙ୍କୁ ଉଦ୍ଧାର କରିଥିଲେ । ସେହି ଧରଣୀଙ୍କୁ ଆପଣ ପୁଣି ରସାତଳଗାମୀ କରିବାକୁ ଚେଷ୍ଟା କରୁଛନ୍ତି ? ପ୍ରଭୋ, ଆପଣ ରକ୍ଷକ, ପ୍ରତିପାଳକ ଅଟନ୍ତି । ଆପଣ ସ୍ୱହସ୍ତରେ ଶଙ୍କରଙ୍କୁ ସଂହାର ଲୀଳା ଅର୍ପଣ କରିଛନ୍ତି ଏବଂ ଉତ୍ପତ୍ତିର ଦାୟିତ୍ୱ ମୋତେ ସମର୍ପଣ କରିଛନ୍ତି । ଆପଣ ସନାତନ ତଥା ସଚ୍ଚିଦାନନ୍ଦ ଅଟନ୍ତି । ସୀତାଦେବୀ ସଦାସର୍ବଦା ଆପଣଙ୍କ ମଧ୍ୟରେ ଅନ୍ତର୍ଲୀନା ହୋଇ ରହିଛନ୍ତି । ତାଙ୍କଠାରୁ କ୍ଷଣକାଳ

ପାଇଁ ଆପଣ ପୃଥକ୍ ହୋଇ ନ ପାରନ୍ତି । ଏବେ ମଧ୍ୟ ପ୍ରଳୟର ସମୟ ଉପସ୍ଥିତ ହୋଇନାହିଁ । ତେଣୁ ଆପଣ କ୍ରୋଧ ପରିତ୍ୟାଗ କରନ୍ତୁ । ଜାନକୀଦେବୀ ନାଗଲୋକରେ ସୁରକ୍ଷିତା ହୋଇ ରହିଛନ୍ତି । ସେ ପରମଧାମରେ ପୁଣି ଆପଣଙ୍କ ସହିତ ମିଳିତା ହେବେ । ଆପଣ କୁଶ-ଲବଙ୍କୁ ସୁଖରେ ଲାଳନ ପାଳନ କରନ୍ତୁ । ଏହାପରେ ଆପଣ ଏ ଲୀଳା ଶୀଘ୍ର ସମ୍ବରଣ କରିବେ ।"

ଏତିକ ସୂଚନା ଦେଇ ବ୍ରହ୍ମା ସତ୍ୟଲୋକକୁ ଚାଲିଗଲେ । ଶ୍ରୀରାମଚନ୍ଦ୍ର ଅତ୍ୟନ୍ତ ଦୁଃଖପୂର୍ଣ୍ଣ ଅନ୍ତରରେ କ୍ରୋଧକୁ ଦମନ କଲେ । ତାଙ୍କ ଚକ୍ଷୁରୁ ଅଶ୍ରୁଧାର ନିରନ୍ତର ବହି ଚାଲିଲା । ସେ ଯଜ୍ଞ ଶେଷ କରି ଅଯୋଧ୍ୟାକୁ ଫେରି ଆସିଲେ । ସୀତାଙ୍କ ବିନା ସେ ସର୍ବଦା ଉଦାସ ହୋଇ ରହିଲେ ।

ଏହା ଶୁଣି ଆଖିରୁ ଲୁହ ପୋଛି ଶୌନକ ମୁନି କହିଲେ—"ସୂତ ମହର୍ଷେ, ଭଗବାନ୍ ଏପରି ଗୋଟିଏ କରୁଣରସ ପୂର୍ଣ୍ଣ ଲୀଳା କାହିଁକି କଲେ ? ସେ ଭଗବାନ୍ ହୋଇ ମଧ୍ୟ ଏପରି ବିୟୋଗ ଦୁଃଖ ସହ୍ୟ କଲେ କାହିଁକି ? ଭଗବାନ୍‌ଙ୍କୁ କର୍ମବନ୍ଧନ ବାଧେ ନାହିଁ । ଜଣେ ସାଧାରଣ ଧୋବା ପାଇଁ ସେ ନିଜ ସୁଖ ତଥା ଆନନ୍ଦକୁ ଏପରି ଜଳାଞ୍ଜଳି ଦେଲେ କାହିଁକି ? ଏହା ଫଳରେ ସେ ନିଜେ ଦୁଃଖୀ ହେବା ସଙ୍ଗେ ସଙ୍ଗେ ଶ୍ରୋତା, ବକ୍ତା ଓ ପାଠକମାନଙ୍କୁ ଚିରକାଳ ଲାଗି ଦୁଃଖିତ କରାଇଲେ" ।

ଏହା ଶୁଣି ଦୁଃଖିତ ମନରେ ସୂତ କହିଲେ—"ମହାଭାଗ ! ଭଗବାନ୍‌ଙ୍କୁ କର୍ମବନ୍ଧନ ଲାଗିବ କିପରି ? ସୀତା ତାଙ୍କର ନିତ୍ୟ ଶକ୍ତି । ସେ ତାଙ୍କଠାରୁ କେବେ-ହେଲେ ପୃଥକ୍ ହୋଇ ପାରିବେ ନାହିଁ । ସେ କେବଳ ସାଧାରଣ ମାନବଙ୍କ ଅନ୍ତରରୁ ଦୁଃଖକୁ କରୁଣରସ ମାଧ୍ୟମରେ ଧୋଇ ପରିଷ୍କାର କରିଦେଲେ" ।

"ଆଚ୍ଛା, ତା' ହେଲେ ।......" ଶୌନକ କହିଲେ—"ଏହା ଫଳରେ କେଉଁ ଲୋକଶିକ୍ଷା ମିଳିଲା ଯେ ?"

ସୂତ କହିଲେ—"ମହାରାଜ, ମନୁଷ୍ୟମାନେ ବିବାହ କରିବା ଲାଗି କେତେ ବ୍ୟଗ୍ର ହୋଇଥା'ନ୍ତି କହିଲ ? ପତ୍ନୀର ନାମ ଶୁଣି ସେମାନଙ୍କ ହୃଦୟରେ କେତେ ଲାଳସା ଜାତ ହୋଇଥାଏ । ଆଜି ସୁଦ୍ଧା ସଂସାରରେ କୋଟି କୋଟି ବିବାହ ସମ୍ପନ୍ନ ହୋଇଛି । କିନ୍ତୁ କେହି କେବେହେଲେ ବିବାହ କରି ସୁଖ ପାଇଛି ବୋଲି କହି ପାରିବ କି ? ବିବାହ କରି ସ୍ତ୍ରୀ ବା ପୁରୁଷ କେବେହେଲେ ସୁଖ ପାଇ ପାରି ନାହାନ୍ତି । ଆପଣମାନେ ବିବାହ ଧନ୍ଦାରେ ନ ପଡ଼ି ସୁଖୀ ହୋଇ ପାରିଛନ୍ତି । ଆପଣମାନେ ବିବାହ କରିଥିଲେ, ଏପରି ଭାବରେ ଶହ ଶହ ବର୍ଷ ଧରି ଶ୍ରୀହରି-ଲୀଳାମୃତ ପାନରେ କେବେ-ହେଲେ କଟାଇ ପାରି ନଥା'ନ୍ତେ ! ଆପଣମାନେ ସାଧାରଣ ଲୋକମାନଙ୍କ ପରି

ବିଷୟ ଧନ୍ଦାରେ ଏତେ ଧନ୍ଦି ହୋଇ ଆଅନ୍ତେ ! ହରିକଥା ଶୁଣିବା ଲାଗି ଟିକିଏ ହେଲେ ଅବକାଶ ମିଳୁ ନଥା'ନ୍ତା । ପୁରାଣ ପାଠ ଲାଗି ଆସନ ପକାଇ ବସିବା ମାତ୍ରେ ଦୁଃଖ, ଜଞ୍ଜାଳ ତଥା ପରିବାରର ସୁଖ ସୁବିଧା ଲାଗି ଚିନ୍ତା ଆପଣଙ୍କୁ ବିବ୍ରତ କରିଦିଅନ୍ତା ! ସାଂସାରିକ ଲୋକମାନେ ଗୃହ ଜଞ୍ଜାଳରେ ପଡ଼ି କିପରି ହନ୍ତସନ୍ତ ହେଉଛନ୍ତି, ସେ ଧାରଣା ଆପଣଙ୍କର ନାହିଁ । ପରିବାରର ସୁଖ ସୁବିଧା ପାଇଁ ଲୋକମାନେ ନାନାପ୍ରକାର ଚିନ୍ତା କରନ୍ତି, ଦୁଃଖ ସହନ୍ତି, ଅପମାନ ଭୋଗନ୍ତି; କିନ୍ତୁ ତଥାପି ସେମାନେ କାହାରଠାରୁ ଦିନେ ହେଲେ ପଦେ ପ୍ରଶଂସାତ୍ମକ ବାଣୀ ଶୁଣିବାକୁ ପାଆନ୍ତି ନାହିଁ ।

ମାତା ପିତା କେତେ କଷ୍ଟ ସହ୍ୟକରି ସନ୍ତାନମାନଙ୍କୁ ପାଳି ପୋଷି ବଡ଼ କରନ୍ତି, ବିବାହ କରାନ୍ତି ଏବଂ ସୁଖରେ ରଖିବା ପାଇଁ ନିଜ ଜୀବନକୁ ବିପନ୍ନ କରାନ୍ତି । ତଥାପି କେହି ତାଙ୍କ ଅସୁବିଧା ବୁଝନ୍ତି ନାହିଁ । ସେମାନେ ବଡ଼ ହୋଇଯିବା ମାତ୍ରେ ବାପ ମାଆଙ୍କୁ ଭୁଲି ନିଜ ଧନ୍ଦାରେ ଧନ୍ଦି ହୋଇପଡ଼ନ୍ତି । ମୋଟ ଉପରେ କହିବାକୁ ଗଲେ— ସାଂସାରିକ ବିଷୟ ବାସନା ମଧ୍ୟରେ ଅନାଦି କାଳରୁ କେହି ସୁଖ ପାଇ ନାହାନ୍ତି କିମ୍ବା ସୁଖ ପାଇ ପାରିବେ ନାହିଁ । ଏହି ମାର୍ଗ ସର୍ବଦା ଦୁଃଖ ପୂର୍ଣ୍ଣ ତଥା ଅସନ୍ତୋଷର ମୂଳବୀଜ !

ଏ' ସମ୍ବନ୍ଧରେ ମୁଁ ତୁମକୁ ଶିବଙ୍କର ଗୋଟିଏ ଲୀଳା ସମ୍ପର୍କରେ ସୂଚନା ଦେଉଛି—ଶୁଣ ?

ମହାଦେବ ଭାବିଲେ—ସତୀଙ୍କ ସହିତ ମିଳିତ ହେଲେ ମୋତେ ଶାନ୍ତି ମିଳିବ । ତେଣୁ ସେ ଦକ୍ଷପୁତ୍ରୀ ସତୀଙ୍କୁ ବିବାହ କଲେ । ବିବାହ ପରେ ପରେ ତାଙ୍କର ସ୍ୱତନ୍ତ୍ରତା ଲୋପ ପାଇଗଲା । ତାଙ୍କ ଜପ, ତପ, ଧ୍ୟାନ ଓ ଧାରଣାରେ ପଦ ପଦକେ ବାଧା ଉପୁଜିଲା । ଶେଷରେ ଦିନେ ସତୀ ବାପଘରକୁ ଯିବାପାଇଁ ଜିଦ୍ ଧରି ବସିଲେ, ଯେତେ ବାରଣ କଲେ ମଧ୍ୟ ସେ ଆଦୌ ଶୁଣିଲେ ନାହିଁ । ଶିବ ବାରମ୍ବାର ବାରଣ କଲେ । ଶେଷକୁ ସତୀ କ୍ରୋଧିତ ହୋଇ ଏକାକିନୀ ବାପ ଘରକୁ ପଳାଇଗଲେ । ସେଠାରେ ସତୀଙ୍କୁ ତାଙ୍କ ବାପା ଅପମାନ ଦେଲେ । ସେହି ଦୁଃଖରେ ସତୀ ଯଜ୍ଞକୁଣ୍ଡ ପାଖରେ ବସି ଯୋଗବଳରେ ଆତ୍ମ ବିସର୍ଜନ କଲେ । ଭଗବାନ୍ ଶିବ ସେହି ଦୁଃଖରେ ମୁହ୍ୟମାନ ହୋଇ ପଡ଼ିଲେ । ଶେଷରେ କ୍ରୁଦ୍ଧ ହୋଇ ଦକ୍ଷଙ୍କ ଯଜ୍ଞ ନଷ୍ଟ କରିଦେଲେ । ଯାଜ୍ଞିକମାନଙ୍କୁ ବଧ କଲେ, ଋଷି, ମୁନି ଓ ଦେବଗଣଙ୍କୁ ଆଘାତ ଦେଲେ । ଶେଷରେ ସତୀଙ୍କ ମୃତ ଶବକୁ ଧରି ସଂସାର ପରିଭ୍ରମଣ କଲେ । ବିଷ୍ଣୁ ଭଗବାନ୍ ତାଙ୍କୁ ଅନେକ ବୁଝାଇ ସତୀଙ୍କ ଶବକୁ ଖଣ୍ଡ ଖଣ୍ଡ କରି ପକାଇ ଦେଲେ ଏବଂ ତାଙ୍କ ଶରୀରର କିଛି ଅଂଶ ଜଳାଇ ଦେଲେ । ଶିବ ସତୀଙ୍କ ଚିତାଭସ୍ମକୁ ନିଜ ଶରୀରରେ ବୋଳି ହୋଇ ବହୁଦିନ ପର୍ଯ୍ୟନ୍ତ ଶୋକ ପାଳନ କଲେ । ଶେଷରେ ଦିଗମ୍ବର ସାଜି ମହାକଷ୍ଟ ପାଇଲେ । ଏହାହିଁ ହେଉଛି—ଶିବଙ୍କର ଅବସ୍ଥା ।

ସ୍ୱୟଂ ଭଗବାନ୍ ବିଷ୍ଣୁ ମଧ୍ୟ ଲକ୍ଷ୍ମୀଙ୍କ ପାଇଁ କମ୍ କଷ୍ଟ ଭୋଗ କରି ନାହାନ୍ତି । ଲକ୍ଷ୍ମୀ ଓ ଜଳନ୍ଧର ଦୁହେଁ ସମୁଦ୍ରରୁ ଉତ୍ପନ୍ନ ହେଲେ । ଜଳନ୍ଧର ନିତାନ୍ତ ଦୁଷ୍ଟ ହୋଇ ସଂସାରରେ ନାନାପ୍ରକାର ଉତ୍ପାତ କଲା । ବିଷ୍ଣୁ ତାକୁ ମାରିବାପାଇଁ ଉଦ୍ୟତ ହେବା ମାତ୍ରେ ଲକ୍ଷ୍ମୀଦେବୀ ନିଜ ଭାଇର ସୁରକ୍ଷା ଲାଗି ବିଷ୍ଣୁଙ୍କ କାର୍ଯ୍ୟରେ ବାଧା ଦେଲେ । ବିଷ୍ଣୁ ଆଉ କରନ୍ତେ କ'ଣ ? ଶେଷକୁ ସେ ଅସୁରକୁ ବର ମାଗିବା ପାଇଁ କହିଲେ । ସେ ଅସୁର କହିଲା—"ତୁମେ ମୋର ଘରେ ରୁହ, ଆଉ କୁଆଡ଼େ ଯାଅ ନାହିଁ" ।

ଭଗବାନ୍ ଆଉ କରନ୍ତେ କ'ଣ ? ସ୍ତ୍ରୀ କଥାରେ ପଡ଼ି ବାଧ୍ୟ ହେଲେ । ସ୍ତ୍ରୀ ଯେପରି ନଚାଇଲେ, ସେହିପରି ନାଚିଲେ ପ୍ରଭୁ । ତା'ପରେ ବୃନ୍ଦାବତୀ ପାଇଁ ଯାହା କିଛି କଷ୍ଟ ଭଗବାନଙ୍କୁ ସହ୍ୟ କରିବାକୁ ପଡ଼ିଲା କିଏ ବା ନ ଜାଣେ ?

ସେହିପରି ଅହଲ୍ୟାଙ୍କ ପାଇଁ ଗୌତମଙ୍କୁ କିପରି କଷ୍ଟ ସହ୍ୟ କରିବାକୁ ପଡ଼ିଲା ତାହା କାହାରିକୁ ଅଜଣା ନାହିଁ । କଶ୍ୟପ, ଚନ୍ଦ୍ରମା ଓ ବ୍ରହ୍ମା ପ୍ରଭୃତି ବଡ଼ ବଡ଼ ଲୋକମାନେ କେତେ କଷ୍ଟ ସହିଛନ୍ତି ସ୍ତ୍ରୀଙ୍କ ପାଇଁ, ସବୁ ବିଷୟ ପୁରାଣରେ ବର୍ଣ୍ଣିତ ହୋଇଛି । ତଥାପି ଏ' ପୁରୁଷମାନେ ସ୍ତ୍ରୀଙ୍କୁ କ'ଣ ଛାଡ଼ି ପାରୁଛନ୍ତି ?

ଏହି ଦଶା ସ୍ତ୍ରୀମାନଙ୍କର ମଧ୍ୟ ହୋଇଛି । ପୁରୁଷମାନେ ସ୍ତ୍ରୀମାନଙ୍କ ପ୍ରତି ଯେପରି କିଛି ଭଲ ବ୍ୟବହାର ଦେଖାଇ ନାହାନ୍ତି । ନିଜ ସ୍ୱାର୍ଥ ପାଇଁ ସ୍ତ୍ରୀଙ୍କ ଦ୍ୱାରା ସବୁକାମ କରାଇ ନେଇଛନ୍ତି । ଦରକାର ବେଳେ ସ୍ତ୍ରୀଙ୍କୁ ଦବାଦେଇ ନିଜେ ଗୋଟିପଣେ ଧୁଆ ମୂଳା ସାଜିଛନ୍ତି । ଯେଉଁ ସୀତାଦେବୀ ସ୍ୱାମୀଙ୍କ ପାଇଁ ଏତେ କଷ୍ଟ ସହିଲେ, ତାଙ୍କୁ ଶ୍ରୀରାମ ଗୋଟିଏ ସାମାନ୍ୟ ଧୋବା କଥାରେ ପଡ଼ି ବିଦା କରିଦେଲେ ବଣକୁ । ଅହଲ୍ୟା ବିଚାରୀ ଭ୍ରମରେ ପଡ଼ି ଗୋଟିଏ ଭୁଲ୍ କରିଦେଲେ, ସେଥିପାଇଁ ତାଙ୍କୁ ଅନନ୍ତକାଳ ପର୍ଯ୍ୟନ୍ତ ପଥର ହୋଇ ରହିବାକୁ ପଡ଼ିଲା । ସୂର୍ପଣଖା ବିଚାରୀ ପ୍ରେମ ସମ୍ପର୍କ ସ୍ଥାପନ କରିବା ପାଇଁ ପ୍ରସ୍ତାବଟିଏ ଦେଇ ନିଜର ନାକ କାନ ହରାଇଲା । ଦେଖନ୍ତୁ ଯାହା ଦେଖାଯାଉଛି, ସ୍ତ୍ରୀମାନଙ୍କୁ ପୁରୁଷଙ୍କଠାରୁ କେବେହେଲେ ଭଲ ବ୍ୟବହାର ମିଳିନାହିଁ କିମ୍ବା ପୁରୁଷମାନେ ସ୍ତ୍ରୀମାନଙ୍କ ଦ୍ୱାରା କେବେହେଲେ ସୁଖ ପାଇ ନାହାନ୍ତି । ସୁଖ ମିଳନ୍ତା ବା କିପରି ? ଯେଉଁ ରୂପର ମୋହରେ ପଡ଼ି ସ୍ତ୍ରୀ ପୁରୁଷ ପରସ୍ପରକୁ ଭଲ ପାଇ ବସନ୍ତି, ତାହା ହେଉଛି—ବାହ୍ୟରୂପ । ଯେଉଁମାନେ ଏହି ଶରୀରକୁ ଅନିତ୍ୟ ବୋଲି ଭାବି ଆତ୍ମା ସହିତ ସମ୍ପର୍କ ସ୍ଥାପନ କରିଛନ୍ତି, ସେହିମାନଙ୍କୁ ସୁଖ ମିଳିଛି ।

ଶ୍ରୀରାମଚନ୍ଦ୍ରଙ୍କର ସୀତାଙ୍କ ସହିତ ଆତ୍ମିକ ସମ୍ପର୍କ ଥିଲା । ସେମାନଙ୍କ ମଧ୍ୟରେ ବିୟୋଗର ସମ୍ଭାବନା ନଥିଲା । ଶରୀରର ସମ୍ପର୍କ ହେଉଛି—ଅନିତ୍ୟ, କ୍ଷଣଭଙ୍ଗୁର ଓ ଦୁଃଖଦାୟୀ । ଏହି ବିଷୟକୁ ଶିକ୍ଷା ଦେବାପାଇଁ, ଶ୍ରୀରାମଚନ୍ଦ୍ର

ନରନାଟ୍ୟର ଅଭିନୟ କରିଛନ୍ତି । ନୋହିଲେ, ପ୍ରକୃତ ପକ୍ଷେ ଦେଖିବାକୁ ଗଲେ, ସେ 'ଭୂମା' ପୁରୁଷଙ୍କର ସୁଖ ଓ ଦୁଃଖ ସହିତ ସମ୍ପର୍କ କ'ଣ ? ସେ ସଚ୍ଚିଦାନନ୍ଦ ଘନ, ନିତ୍ୟ, ଶୁଦ୍ଧ, ପ୍ରବୁଦ୍ଧ ଓ ମୁକ୍ତ ଅଟନ୍ତି । ସୀତାଦେବୀ ସୂର୍ଯ୍ୟ ଓ ତ୍ରିଭଙ୍ଗ ସଦୃଶ ସଦା ତାଙ୍କ ଅନ୍ତରରେ ଲୀନ ହୋଇ ରହିଛନ୍ତି ।

ଏହାଶୁଣି ଶୌନକ କହିଲେ—"ହଁ, ସୂତ ମହୋଦୟ, ଏହା ପ୍ରକୃତରେ ଭଗବାନଙ୍କର ଲୀଳା ଅଟେ । ଏହା ତାଙ୍କର ମାନବ କ୍ରୀଡ଼ା । ତା'ପରେ କ'ଣ ହେଲା, ଆପଣ ଦୟାକରି ଶୁଣାଇ ଦିଅନ୍ତୁ" ।

ସୂତ ମହୋଦୟ ଦୀର୍ଘ ନିଶ୍ୱାସଟିଏ ପକାଇ କହିଲେ—"ଆଉ ହେବ କଅଣ ? ସବୁ ଖେଳତ ଶେଷ ହୋଇଗଲା । ତଥାପି ଆପଣମାନେ ଅନ୍ୟ ଟିକିଏ ଶୁଣନ୍ତୁ ।

## ଛପ୍ପୟ

"ସୁନ ବଧି ରଘୁବର ଶୋକ ଜେକ ଅପନେ ତେଂ ଆୟେ ।
କର ବନତୀ ବନ୍ଧୁ ଭାଁତ ସୀୟ ସର୍ବସ୍ୱ ମନାୟେ ॥
ତ୍ୟାଗି ତୁରତ ସବ ଶୋକ ବାତ ବ୍ରହ୍ମାକୀ ମାନୀ ।
ଯଜ୍ଞ ପୂର୍ଣ୍ଣ କର ଗୟେ ଦୁଖିତ ଲୌଟେ ରଜଧାନୀ ॥
ସୀୟ ବିୟୋଗ ହିୟ ଧାରକେ, ରାଜ କାଜ ସବହି କରତ ।
ଭୂଲେ ଭଟକେ ସେ ରହତ, ନୟନ ନୀର ଝର-ଝର ଝରତ" ॥



# ଲୀଳାସମ୍ବରଣର ପ୍ରସ୍ତାବନା

"ତତ ଊର୍ଦ୍ଧ୍ବଂ ବ୍ରହ୍ମଚର୍ଯ୍ୟଂ ଧାରୟନ୍ନଜୁହୋତ୍ ପ୍ରଭୁଃ ।
ତ୍ରୟୋଦଶାବ୍ଦସାହସ୍ରମଗ୍ନିହୋତ୍ରମଖଣ୍ଡିତମ୍" ॥

(ଶ୍ରୀଭା. ୯ସ୍କ-୧୧ଅ-୧୭, ୧୮ଶ୍ଳୋ)

## ଛପ୍ପୟ

"ବରଷ ସହସଦଶ ତୀନରାଜକର ରାମ ବିତାୟେ ।
ଏକ ଦିବସ ମୁନି ବିକଟ ନିକଟ ରଘୁବର କେ ଆୟେ ॥
ଲଖନ ଆଗମନ କହ୍ୟୋ ରାମ ମୁନି ତୁରତ ବୁଲାୟେ ।
ଇତ ଉତ ଶଙ୍କିତ ଚକିତ ନିରଖି ମୁନି ବଚନ ସୁନାୟେ ॥
ଅତି ରହସ୍ୟ ମୟ ବାତ ଇକ, କହହୁ ତାହିଁ ପ୍ରଭୁ ଶତ ଧରହୁଁ ।
ବୀଚ ଆଇ କୋଇ ସୁନହି, ତ.କୋ ନିଶ୍ଚୟ ବଧ କରହୁଁ" ॥

ଶ୍ରୀଶୁକଦେବ କହିଲେ—ରାଜନ୍, ଏହାପରେ ଭଗବାନ୍ ତେର ହଜାର ବର୍ଷ ପର୍ଯ୍ୟନ୍ତ ଅଖଣ୍ଡ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ ପୂର୍ବକ ନିରନ୍ତର ଅଗ୍ନିହୋତ୍ର କରିବାକୁ ଲାଗିଲେ ।

କାଳସ୍ୱରୂପ ଭଗବାନଙ୍କର ବିଧାନ ବରାବର ଲାଗି ରହିଥାଏ ଯେ ପର୍ଯ୍ୟନ୍ତ ପ୍ରାଣୀ ଏ' ସଂସାରରେ ରହିଛି, ତାକୁ କେଉଁ ସମୟରେ କିପରି ଭାବରେ ମୃତ୍ୟୁବରଣ କରିବାକୁ ହେବ ସେ ଜାଣେନାହିଁ । ଏହା ହଠାତ୍ ହୁଏନାହିଁ ସତ, ତାହା ପ୍ରାରବ୍ଧ ଅନୁସାରେ ଘଟିଥାଏ । ପ୍ରଭୁ ଅବତାର ଗ୍ରହଣ ପୂର୍ବରୁ, କେଉଁଠି ଜନ୍ମ ହେବେ, କି କି ଲୀଳା ପ୍ରକଟ କରିବେ, ତାହା ନିଶ୍ଚିତ କରିଥାଆନ୍ତି । ସବୁକିଛି ତାଙ୍କର ସୁନିଶ୍ଚିତ

ଯୋଜନା ଅନୁସାରେ ଚାଲିଥାଏ । ବଡ଼ ବଡ଼ ଲୋକମାନେ ନିଜର ଖିଆପିଆ, ବସାଉଠା, ସାକ୍ଷାତ୍ ଦେବା, ଭଜନ ପୂଜନ ଆଦି କରିବାପାଇଁ ନିର୍ଦ୍ଧିଷ୍ଟ ସମୟ ନିର୍ଦ୍ଧାରଣ କରିଥାଆନ୍ତି । ସେମାନେ ଏହି ସମୟକୁ ମନେରଖି ଥାଆନ୍ତି ଏବଂ ତାଙ୍କ ସେବକମାନେ ମଧ୍ୟ ସ୍ୱାମୀଙ୍କୁ ସମୟ ସମ୍ବନ୍ଧରେ ସଚେତନ କରାଇ ଦିଅନ୍ତି । କାରଣ ସେମାନେ ସ୍ୱାମୀଙ୍କ ସେବାପାଇଁ ନିଯୁକ୍ତ ହୋଇଥାଆନ୍ତି । ସେବକ ଆଜ୍ଞା ଦିଏନାହିଁ, ଶିକ୍ଷା ଦିଏନାହିଁ, କିମ୍ବା ଉପଦେଶ ଦିଏନାହିଁ । ସେ ନମ୍ରଭାବରେ ପ୍ରଭୁଙ୍କୁ ସବୁ ବିଷୟ ଜଣାଇ ଦିଏ । ତା'ର ଫଳରେ ପ୍ରଭୁ ତା' ଉପରେ ଖୁସି ହୁଅନ୍ତି । ଭଗବାନଙ୍କୁ ଯାହା କିଛି କରିବାକୁ ହୁଏ, ସେ ତା' ପୂର୍ବରୁ ସେହି ଅନୁସାରେ ରୂପରେଖ ପ୍ରସ୍ତୁତ କରିଥାଆନ୍ତି । ଏହି କାର୍ଯ୍ୟକୁ ପ୍ରସ୍ତାବନା କୁହାଯାଏ ।

ସୂତ କହିଲେ—ହେ ଋଷିଗଣ, ସୀତାଦେବୀ ଭୂମି ଭିତରେ ଆତ୍ମଗୋପନ କଲେ । ସ୍ୱୟଂ ବ୍ରହ୍ମା ଓ ଭୂ-ଦେବୀ ଆସି ରାମଚନ୍ଦ୍ରଙ୍କୁ ବୁଝାଇ ଦିଅନ୍ତେ, ଶ୍ରୀରାମ ଶାନ୍ତ ହୋଇ ଅଯୋଧ୍ୟାକୁ ଫେରି ରାଜତ୍ୱ କଲେ । ଶତ୍ରୁଘ୍ନ ମଥୁରାରେ ରହିଥିଲେ । ଲକ୍ଷ୍ମଣ ଓ ଭରତ ଅଯୋଧ୍ୟାରେ ରହି ଶ୍ରୀରାମଙ୍କ ସେବାରେ ତତ୍ପର ହେଲେ । ସେ ପ୍ରତିଦିନ ସୁସଜ୍ଜିତ ହୋଇ ଅଗ୍ନିହୋତ୍ର କରୁଥିଲେ । ସେ ପ୍ରଜାମାନଙ୍କ ପାଇଁ ସର୍ବଦା ନ୍ୟାୟ କରୁଥିଲେ ଏବଂ ସେମାନଙ୍କ ମଙ୍ଗଳ କାମନାରେ କାଳ କଟାଉଥିଲେ । ସେ ସମୟରେ ଘୋର ତପସ୍ୟା କରିବା ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର ମୁଖ୍ୟ କାର୍ଯ୍ୟ କର୍ମ ଥିଲା । ସତ୍ୟଯୁଗରେ କେବଳ ବ୍ରାହ୍ମଣମାନେ ତପସ୍ୟା କରୁଥିଲେ । ଅନ୍ୟ ବର୍ଣ୍ଣମାନେ ସ୍ୱସ୍ୱ କର୍ତ୍ତବ୍ୟ ସମ୍ପାଦନରେ ବ୍ରତୀଥିଲେ । ତ୍ରେତୟା ଯୁଗରେ କେବଳ ବ୍ରାହ୍ମଣ ଓ କ୍ଷତ୍ରିୟମାନଙ୍କର ତପସ୍ୟାରେ ଅଧିକାର ରହିଲା । ଦ୍ୱାପରରେ ବୈଶ୍ୟମାନେ ମଧ୍ୟ ତପସ୍ୟାରେ ରତ ରହୁଥିଲେ ଏବଂ କଳିଯୁଗରେ ଚାରିବର୍ଣ୍ଣର ଲୋକମାନେ ତପସ୍ୟାର ଅଧିକାର ପାଇଛନ୍ତି । ଆଉ ମଧ୍ୟ ବର୍ଣ୍ଣାଶ୍ରମ ଧର୍ମରେ ରହି ସମସ୍ତ ଲୋକେ ସବୁ ଯୁଗରେ ଶ୍ରୀହରିଙ୍କ ଭଜନ କରୁଥିଲେ । ଏହିପରି ଆଚରଣରେ ରହି ଲୋକମାନେ ସଶରୀରରେ ସ୍ୱର୍ଗକୁ ଯାଉଥିଲେ । ଯୁଗ ବିରୋଧୀ ଆଚରଣ କରିବା ଅର୍ଥ, ଯୁଗାବତାରଙ୍କ ବିରୁଦ୍ଧାଚରଣ କରିବା । ଅବତାର ମଧ୍ୟରେ ଅନେକ ଭେଦ ରହିଛି । କେହି କଳ୍ପାବତାର, କେହି ମନ୍ୱାବତାର, କେହି ଯୁଗାବତାର, କେହି କେହି ଅଂଶାବତାର, ଆଉ କେହି କଳାବତାର ଓ ଆବେଶାବତାର ତଥା କରୁଣାବତାର ହୋଇଥାଆନ୍ତି । ଚାରିଯୁଗରେ ଭଗବାନ୍ ଏହି ସକଳ ଅବତାର ଧାରଣ କରୁଥିଲେ । ଉଦାହରଣ ସ୍ୱରୂପ—ସତ୍ୟ ଯୁଗରେ କପିଳ ଯୁଗାବତାର ଥିଲେ । ପ୍ରତ୍ୟେକ ସତ୍ୟ ଯୁଗରେ କପିଳ ଅବତାର ଗ୍ରହଣ କରି ଜ୍ଞାନ ପ୍ରଚାର କରିବେ । ଶ୍ରୀରାମଚନ୍ଦ୍ର ତ୍ରେତା ଯୁଗରେ ଯୁଗାବତାର ଅଟନ୍ତି । ପ୍ରତ୍ୟେକ ତ୍ରେତା ଯୁଗରେ ସେ ଅବତାର ଗ୍ରହଣ କରି ବର୍ଣ୍ଣାଶ୍ରମ ଧର୍ମର ଅଭ୍ୟୁଦୟ ଘଟାଇବେ ।

ସତ୍ୟ ଯୁଗରେ ଧର୍ମ ଚାରି ଚରଣରେ ଅବସ୍ଥାପିତ ହୋଇଥାଏ । ତପ, ଶୌଚ, ଦାନ ଓ ଦୟା—ଏହାହିଁ ହେଉଛି ଧର୍ମର ଚାରିଗୋଟି ଚରଣ । ତ୍ରେତାଯୁଗରେ ଧର୍ମର ତିନିଗୋଟି ଚରଣ ଅବଶେଷ ରହେ । ସେ ଯୁଗରେ ତପସ୍ୟା କ୍ଷୀଣ ହୋଇଯାଏ । ଦ୍ୱାପରରେ କେବଳ ଦୟା ଓ ଦାନ ଅବଶେଷ ରହେ । କିନ୍ତୁ କଳିଯୁଗରେ କେବଳ 'ଦାନ' ହି ଧର୍ମର ଏକମାତ୍ର ଚରଣ ଅବଶେଷ ରହେ । ତାହା ମଧ୍ୟ ଯୁଗର ଶେଷ ଆଡ଼କୁ ବିନଷ୍ଟ ହୋଇଯାଏ । ଏହି ଅନୁସାରେ ଅବତାରମାନ ଅଂଶ ଗ୍ରହଣ କରନ୍ତି । ସତ୍ୟରେ ତପସ୍ୟା ପ୍ରଧାନ; ତେଣୁ କପିଳ ଅବତୀର୍ଣ୍ଣ ହୋଇ ତପସ୍ୟାର ପ୍ରସାର କରନ୍ତି । ତ୍ରେତାରେ ବର୍ଣ୍ଣାଶ୍ରମ ଧର୍ମର ପରିପ୍ରସାର ପାଇଁ ରାମଚନ୍ଦ୍ର ଅବତାର ଗ୍ରହଣ କରିଛନ୍ତି । ସେଥିପାଇଁ ସେ ଯୁଗରେ କେହି ମର୍ଯ୍ୟାଦା ଭଙ୍ଗ କରିବା ଲାଗି ସାହସ କରନ୍ତି ନାହିଁ । ସୀତାଙ୍କ ନିର୍ବାସନ ହେଉଛି—ମର୍ଯ୍ୟାଦାର ଏକ ବିଶେଷ ଅଙ୍ଗ । ଶ୍ରୀରାମ ଭଲ ଭାବରେ ଜାଣିଥିଲେ—ସୀତା ଦେବୀ ପରମସତୀ, କେବଳ ଲୋକମର୍ଯ୍ୟାଦା ଦୃଷ୍ଟିରୁ ସେ ସୀତାଙ୍କୁ ତ୍ୟାଗ କରି ଆଦର୍ଶ ସ୍ଥାପନ କରିଥିଲେ ।

ଦ୍ୱାପରରେ ତପ ଓ ଶୌଚ ଦୁର୍ବଳ ହୋଇଗଲା । କେବଳ ଦୟା ଓ ଦାନ ସବଳ ହୋଇ ରହିଲା । ସେ ସମୟରେ ବୈଦିକ ଯାଗଯଜ୍ଞ ମଧ୍ୟ କ୍ଷୀଣ ହୋଇଗଲା ଏବଂ ତାନ୍ତ୍ରିକ ପୂଜା ପଦ୍ଧତିର ପ୍ରସାର ବୃଦ୍ଧି ପାଇବାକୁ ଲାଗିଲା । ଲୋକମାନଙ୍କ ବୁଦ୍ଧି କ୍ଷୀଣ ହୋଇ ଯାଉଥିବାରୁ, ସେମାନେ ଅଧିକ ଜ୍ଞାନ ଧାରଣରେ ଅସମର୍ଥ ହୋଇଥିଲେ । ଏଇଥିପାଇଁ ବ୍ୟାସଦେବ ବେଦକୁ ବିଭାଗ କଲେ ଏବଂ ପୁରାଣମାନଙ୍କୁ ପ୍ରସାର କରିଥିଲେ । କଳିଯୁଗରେ କେବଳ ଦାନ ବା ସତ୍ୟ ଉପରେ ଧର୍ମ ପ୍ରତିଷ୍ଠିତ ହୋଇ ରହିଲା । ଶେଷରେ ତାହା ମଧ୍ୟ ନଷ୍ଟ ହୋଇଯାଏ । ଭଗବାନ୍ କଳ୍କି ଅବତାର ଧାରଣ କରି ଦୁଷ୍ଟଙ୍କୁ ସଂହାର କରନ୍ତି । ତା'ପରେ ପୁଣି ସତ୍ୟଯୁଗ ଆରମ୍ଭ ହୋଇଯାଏ । ଏହି ନିୟମରେ ଅନାଦିକାଳ ପର୍ଯ୍ୟନ୍ତ ଯୁଗଧର୍ମ ଚାଲିଥାଏ । ଏଥିରେ ଟିକେ ହେଲେ ବ୍ୟତିକ୍ରମ ହୁଏ ନାହିଁ । ଏହା ହେଉଛି—ଭଗବାନଙ୍କର ଲୀଳା, କ୍ରୀଡ଼ା, ବିନୋଦ ଓ ମହିମା ।

ଭଗବାନ୍ ମର୍ଯ୍ୟାଦାର ସୁରକ୍ଷା ନିମିତ୍ତ କଠୋର କାର୍ଯ୍ୟ ଗ୍ରହଣ କରନ୍ତି । ସେଥି ମଧ୍ୟରେ ସୀତାଙ୍କ ପରିତ୍ୟାଗ ହେଉଛି—କଠୋରତମ କାର୍ଯ୍ୟ । ଏପରି ଏକ ନିର୍ଦ୍ଦୟ କାର୍ଯ୍ୟ, ଶ୍ରୀରାମ ଶୂଦ୍ର ତପସ୍ୱୀଙ୍କୁ ହତ୍ୟା କରି ଗ୍ରହଣ କରିଥିଲେ ।

ମୁନିମାନଙ୍କ ପ୍ରଶ୍ନର ଉତ୍ତର ସଂକ୍ଷେପରେ ଦେଇ ସୂତ ମହର୍ଷି କହିଲେ—ଦିନେ ଜଣେ ତେଜସ୍ୱୀ ବ୍ରାହ୍ମଣ ତାଙ୍କର ମୃତ ପୁତ୍ରକୁ ଧରି ଶ୍ରୀରାମଙ୍କ ସଭାରେ ଉପସ୍ଥିତ ହେଲା ଏବଂ କାନ୍ଦି କାନ୍ଦି ଜଣାଇଲା—"ରାଘବ, ମୋର ଏହି ଶ୍ରେଷ୍ଠ ପୁଅଟି ଅକାଳରେ କାଳକବଳିତ ହୋଇଛି । ବାପ ଆଗରେ ପୁଅ ମରିଯିବା ଘୋର ପାପର ଫଳ ଅଟେ ।

ମୁଁ ମୋ' ଜ୍ଞାନ ଅନୁସାରେ କୌଣସି ପାପ କରିନାହିଁ । ଏହା ନିଶ୍ଚିତ ଭାବରେ ରାଜାଙ୍କ ପାପର ଫଳ । ଯେଉଁ ରାଜ୍ୟରେ ଅନ୍ୟାୟ ହୁଏ, ତାହାର କୁପରିଣାମରେ ଅକାଳମୃତ୍ୟୁ ଆଦି ଘଟିଥାଏ, ଆପଣ ମୋ' ପୁଅକୁ ବଞ୍ଚାଇ ଦିଅନ୍ତୁ; ନୋହିଲେ ମୁଁ ନିଜ ସ୍ତ୍ରୀ ସହିତ ଆପଣଙ୍କ ଦ୍ୱାରରେ ଅନଶନ କରି ପ୍ରାଣ ହରାଇ ଦେବି । ବ୍ରହ୍ମହତ୍ୟା ଦୋଷରେ ଆପଣ ଦୋଷୀ ହେବେ ।"

ଏହା ଶୁଣି ରାମଚନ୍ଦ୍ର ତତ୍‌ପରତାର ଆଠଜଣ ବିଦ୍ୱାନ୍‌ଙ୍କୁ ଡକାଇ ଗୋଟିଏ ସମିତି ବସାଇଲେ । ମାର୍କଣ୍ଡେୟ, ମୌଦ୍‌ଗଲ୍ୟ, ବାମଦେବ, କଶ୍ୟପ, କାତ୍ୟାୟନ, ଜାବାଳି, ଗୌତମ ଓ ନାରଦ ଏହି ଆଠଜଣ ସମିତିର ସଦସ୍ୟ ଥିଲେ—ଖୁବ୍ ସମ୍ଭବତଃ— ନାରଦ ଶେଷରେ ସମିତିର ମତ ଶୁଣାଇ କହିଲେ—"ରାଘବ, ଆପଣ ରାଜ୍ୟରେ ଶମ୍ବୁକ ନାମରେ ଜଣେ ଶୂଦ୍ର ସଶରୀରରେ ସ୍ୱର୍ଗ ଯିବା ଲାଗି ତପସ୍ୟା କରୁଛି । ତାହାର ଉଗ୍ର ତପସ୍ୟା ଫଳରେ ବାତାବରଣ ଅଶାନ୍ତ ହୋଇଯାଇଛି । ସେ କଳିଯୁଗରେ ଏପରି ତପସ୍ୟା କରିଥିଲେ ଚଳିଥାନ୍ତା ! ଏହା ଯୁଗଧର୍ମ ହୋଇ ନଥିବାରୁ, ରାଜ୍ୟ ଉପରେ ଏହାର ପ୍ରଭାବ ପଡ଼ିଲା । ରାଜ୍ୟର ପାପ ରାଜା ମୁଣ୍ଡରେ ଚାଲି ଯାଇଥାଏ ତେଣୁ ଆପଣ ଏହି ଦୋଷରେ ଦୋଷୀ ହୋଇଛନ୍ତି । ଆପଣ ତାହାକୁ ଏହି କାର୍ଯ୍ୟରୁ ନିବୃତ୍ତ କରନ୍ତୁ । ସେ ଯଦି ନ ମାନେ, ତେବେ ତାହାକୁ ହତ୍ୟା କରି ଦିଅନ୍ତୁ । ତା'ଫଳରେ ଏହି ବାଳକ ଜୀବିତ ହୋଇଯିବ ।"

ଏହା ଶୁଣିବା ମାତ୍ରେ ଶ୍ରୀରାମ ପୁଷ୍ପକଯାନ ଆଣାଇ ଶମ୍ବୁକର ତପସ୍ୟା ସ୍ଥାନରେ ପହଞ୍ଚିଗଲେ । ସେ ଗୋଟିଏ ସୁନ୍ଦର ସରୋବର କୂଳରେ ପାଦ ଉପରକୁ କରି ଘୋର ତପସ୍ୟା କରୁଥିଲା । ରାମଚନ୍ଦ୍ର ତାକୁ ସବୁ ବିଷୟ ପଚାରିଲେ । ସେ ସବୁକଥା ସତ ସତ କହିଦେଲା । ତା'ପରେ ତାକୁ ଶ୍ରୀରାମ କହିଲେ—"ଭାଇ, ଏହା ଯୁଗଧର୍ମ ନୁହେଁ ।" ସେ ରାମଚନ୍ଦ୍ରଙ୍କୁ କହିଲା—"ମହାଶୟ, ମୁଁ ସଶରୀରରେ ସ୍ୱର୍ଗ ଯିବାକୁ ଚାହୁଁଛି । ଏହା ମୋର ସତ୍ୟ ପ୍ରତିଜ୍ଞା ।"

ଶ୍ରୀରାମ ବଡ଼ ଅଡ଼ୁଆରେ ପଡ଼ିଗଲେ । ସେ ଜଣେ ନିର୍ଦ୍ଦୋଷ ଲୋକକୁ କିପରି ଦଣ୍ଡ ଦେବେ ? ପର ମୁହୂର୍ତ୍ତରେ ସେ ଭାବିଲେ—"ସୀତାପରି ନିର୍ଦ୍ଦୋଷ ସତୀକୁ ମୁଁ ଦଣ୍ଡ ଦେଇଛି । ସେପରି ସ୍ଥଳେ ମୁଁ ଏଠାରେ ପଛାଇବି କାହିଁକି ?"

ତା'ପରେ ରାଘବ ଭାବିଲେ—"ଏ' ବିଚାରା ଘୋର କଷ୍ଟ ସହ୍ୟ କରି ସ୍ୱର୍ଗକୁ ଯିବାଲାଗି ଚାହୁଁଛି । ଏହାକୁ ମୁଁ ନିଜ ହାତରେ ବଧ କରି ସ୍ୱର୍ଗଠାରୁ ଅଧିକ ବଡ଼— ମୋକ୍ଷପଦ ପ୍ରଦାନ କରିବି ।" ତହୁଁ ସେ ଖଡ୍‌ଗ ବାହାର କରି ଶମ୍ବୁକର ଶିରଚ୍ଛେଦ

କଲେ । ସେ ଶ୍ରୀରାମଙ୍କ ଭୁବନ ମୋହନ ରୂପକୁ ଚାହିଁ ଚାହିଁ ଶରୀର ତ୍ୟାଗ ପୂର୍ବକ ଭଗବଦ୍ଧାମକୁ ଚାଲିଗଲେ ।

ଏହା ଶୁଣି ଶୌନକ ପଚାରିଲେ—"ସୂତ ମହୋଦୟ ! ଶବରୀ ତ ଶୂଦ୍ରା ଥିଲେ । ଶ୍ରୀରାମ ତା'ଠାରୁ ଫଳ ଗ୍ରହଣ କରିବା ସଙ୍ଗେ ସଙ୍ଗେ ତାକୁ ଆପ୍ୟାୟିତ କରିଥିଲେ । ତାକୁ ତ ପ୍ରଭୁ ହତ୍ୟା କରି ନଥିଲେ । ଯେପରିସ୍ଥଳେ ସମ୍ବୂକ ବିଚରା ତପସ୍ୟା କରୁଥିବା ବେଳେ ତାକୁ ପ୍ରଭୁ ହତ୍ୟା କଲେ କାହିଁକି ? ଏପରି ଅନ୍ୟାୟ ପ୍ରଭୁ କଲେ କାହିଁକି ?"

ଏହାଶୁଣି ସୂତ ହସି ହସି କହିଲେ—"ନ୍ୟାୟ ଅନ୍ୟାୟ ସେହି ଭଗବାନ ହିଁ ଜାଣନ୍ତି । ଅନେକ କଥା ସମୟ ବିଶେଷରେ ନ୍ୟାୟ ତଥା ଅନ୍ୟାୟ ବୋଲି ବିବେଚିତ ହୋଇଥାଏ । ଆଗକାଳରେ ଜୁଆ ଖେଳିବାକୁ ରାଜାମାନେ ନ୍ୟାୟ ବୋଲି ମନେ କରୁଥିଲେ । ଯଦି କେହି ଯୁଦ୍ଧ ଓ ଜୁଆ ଖେଳିବାକୁ ଡାକେ, ତେବେ ତାହା ଧର୍ମ କାର୍ଯ୍ୟ ବୋଲି ମନେକରି ରାଜାମାନେ ସେ ଆହ୍ୱାନ ଗ୍ରହଣ କରୁଥିଲେ । ଧର୍ମଧ୍ୱଜ ଯୁଧିଷ୍ଠିର ଜୁଆ ଖେଳି ସର୍ବସ୍ୱ ହରାଇବା ସଙ୍ଗେ ସଙ୍ଗେ ବନବାସ ଜୀବନଯାପନ କରିଥିଲେ । ଆଜିକାଲି ଯଦି କେହି ଶକୁନି ପରି ଜୁଆ ଖେଳିବାରେ କୌଶଳ ପ୍ରଦର୍ଶନ କରେ, ତେବେ ତାକୁ କାରାବରଣ କରିବାକୁ ପଡ଼ିବ । ମଧ୍ୟ ଯୁଗରେ ଧର୍ମାଗୁରୁମାନଙ୍କ ବିରୁଦ୍ଧରେ ପଦଟିଏ କହିଲେ, ବିଦେଶରେ ସେହି ବ୍ୟକ୍ତିକୁ ଜୀବନ୍ତ ଜଳାଇ ଦିଆଯାଉଥିଲା । କିନ୍ତୁ ଆଜି ସେପରି ନାହିଁ । ଏହିପରି ଭାବରେ ଯୁଗଧର୍ମ ଗଢ଼ି ଆସିଛି । ତା'ପରେ ଶବରୀ ସମ୍ବୂକ ପରି ମୁହଁ ତଳକୁ ଓ ଗୋଡ଼ ଉପରକୁ ଉଠାଇ ତପସ୍ୟା କରୁ ନଥିଲା । ସେ ଦୀନଭାବରେ ଭଗବାନଙ୍କୁ ପାଇବାପାଇଁ ଚେଷ୍ଟା କରୁଥିଲା । ମନୁଷ୍ୟ ଧନ ଓ ପ୍ରତିଷ୍ଠା ଅର୍ଜନ ପାଇଁ ଈର୍ଷ୍ୟା କରିଥାଏ । ପ୍ରଭାବଶାଳୀ ବ୍ୟକ୍ତିମାନେ ଭାବନ୍ତି— ସ୍ୱର୍ଗର ସ୍ୱାମୀମାନେ ଆମରି ପାଖରେ ରହନ୍ତୁ । ବେଶୀ ଧନ ଦଉଲତ ଆମ ପାଖରେ ରହୁ । ଏଥିରେ ଯେ ବିଘ୍ନ କରେ କିମ୍ବା ଭାଗୀଦାର ହେବାକୁ ଇଚ୍ଛା କରେ, ତାକୁ ଶେଷ କରି ଦିଅନ୍ତି । କିମ୍ବା ମାଲିମୋକଦ୍ଦମାରେ ପକାଇ ତା'ର ଅନିଷ୍ଟ କରନ୍ତି । ଯେ ଦୀନଭାବର ସବୁ କିଛି ସହିଯାଏ, ତା'ର କେହି କିଛି କରିପାରେ ନାହିଁ । ତେଣୁ ଭଗବଦ୍ ଭକ୍ତିରେ ସମସ୍ତଙ୍କର ଅଧିକାର ରହିଛି । ପ୍ରତ୍ୟେକ ଅବସ୍ଥାରେ ବ୍ୟକ୍ତି ଭଗବଦ୍ ଭଜନରେ ମନ ଲଗାଇ ପାରେ । ସ୍ୱର୍ଗଲାଭ ଗୋଟିଏ ପ୍ରକାର ପ୍ରତିଷ୍ଠା । ସମ୍ବୂକ ତାହା ହିଁ ଚାହୁଁଥିଲା । କିନ୍ତୁ ଭଗବାନ ଶ୍ରୀରାମ ତା'ର ମୋହ ଦୂର କରାଇ ତାକୁ ମୋକ୍ଷପଦ ଦେଲେ । ତା' ଫଳରେ ଗୋଟିଏ ବ୍ରାହ୍ମଣ ଖୁସି ହେଲା ଏବଂ ବିଚରା ସମ୍ବୂକ ମୁକ୍ତି ପାଇଲା । ଭଗବାନଙ୍କର ପ୍ରତ୍ୟେକ କାର୍ଯ୍ୟରେ ସମସ୍ତଙ୍କ ହିତ ସାଧିତ ହୋଇଥାଏ । ଆମେମାନେ ଅଜ୍ଞାନତାବଶତଃ ତାହା ଜାଣିପାରୁ ନଥାଉଁ ।"

"ଭଗବାନଙ୍କଠାରେ ପକ୍ଷପାତ ନଥାଏ । ସେ ଯେପରି ବ୍ରାହ୍ମଣଙ୍କ କଥା ଶୁଣିଲେ, ସେହିପରି କୁକୁରର କଥା ଶୁଣିଥିଲେ । ଶୌନକଙ୍କ ପ୍ରଶ୍ନର ଉତ୍ତର ଦେଇ ମହର୍ଷି ସୂତ କହିଲେ—ଦିନେ ଲକ୍ଷଣ ଲକ୍ଷ୍ୟ କଲେ ଯେ, ଗୋଟିଏ କୁକୁର କାନ୍ଦି—ବୋବେଇ ରାଜା ରାମଚନ୍ଦ୍ରଙ୍କ ସିଂହଦୁଆର ଆଡ଼କୁ ଆସୁଛି । ଲକ୍ଷ୍ମଣ ଯାଇ ଶ୍ରୀରାମଙ୍କଠାରେ ନିବେଦନ କଲେ ।"

ଶ୍ରୀରାମଙ୍କ ଆଦେଶରେ ଲକ୍ଷ୍ମଣ କୁକୁରଟିକୁ ଭିତରକୁ ନେଇଗଲେ । କୁକୁରଟି କାନ୍ଦି କାନ୍ଦି ଜଣାଇଲା—"ପ୍ରଭୋ ! ସେ ବ୍ରାହ୍ମଣ ଜଣକ ମୋତେ ମାରିମାରି ଦରମରା କରି ଦେଇଛି । ମୁଁ ତା'ର କିଛି ଦୋଷ କରି ନାହିଁ !"

ଭଗବାନ ବ୍ରାହ୍ମଣଙ୍କୁ ଡକାଇ ଆଣିଲେ । ସେ ଶ୍ରୀରାମଙ୍କ ଆଗରେ କହିଲା—"କୁକୁର ମୋର କିଛି ଦୋଷ କରି ନାହିଁ ସତ, କିନ୍ତୁ ସେ ମୋରି ଆଗରେ ଜିଭ ବାହାର କରି ସଁଅଁ ସଁଅଁ ହେଉଥିଲା । ସେତେବେଳେ ମୋ' ମନ ଭଲ ନଥିଲା । ମୁଁ ଅନ୍ୟ ଗୋଟିଏ କାରଣ ପାଇଁ ରାଗିଥିଲି । ସେଇ ରାଗରେ ମୁଁ କୁକୁରକୁ ଗୋଟିଏ ପ୍ରହାର କରିଛି । ଏଥିପାଇଁ ଆପଣ ମୋତେ ଯେଉଁ ଦଣ୍ଡ ଦେବେ ମୁଁ ସ୍ୱୀକାର କରିବି ।"

ଶ୍ରୀରାମ ବ୍ରାହ୍ମଣଙ୍କୁ କିଛି ଦଣ୍ଡ ଦେବା ଆଗରୁ କୁକୁର କହିଲା—"ପ୍ରଭୋ ! ମୋ' କହିବା ଅନୁସାରେ ବ୍ରାହ୍ମଣଙ୍କୁ ଦଣ୍ଡ ଦେଲେ ମୁଁ ଖୁସି ହେବି । ଆପଣ ତାଙ୍କୁ ଗୋଟିଏ ବଡ଼ ମଠରେ ମଠାଧୀଶ ମହନ୍ତ କରି ବସାଇ ଦିଅନ୍ତୁ ।"

ଶ୍ରୀରାମଚନ୍ଦ୍ର ହସି ହସି କହିଲେ—"ଏହା ବ୍ରାହ୍ମଣଙ୍କ ପ୍ରତି ଦଣ୍ଡ ନା ପୁରସ୍କାର ? ସେଠାରେ ମହନ୍ତରୂପେ ରହି ସେ ଅନେକ ସୁଖରେ କାଳ ବିତାଇ ଦେବ ।"

"ହଁ ପ୍ରଭୋ, ମୁଁ ତାହା ହିଁ ଚାହୁଁଛି । ପୂର୍ବ ଜନ୍ମରେ ମୁଁ ଗୋଟିଏ ମଠରେ ମହନ୍ତ ଥିଲି ! ଖୁବ୍ ଭଲ ଖାଦ୍ୟ ଖାଉଥିଲି । ଶିଷ୍ୟ ଶିଷ୍ୟାଙ୍କ ଦ୍ୱାରା ସେବା କରାଉଥିଲି । ଉପରକୁ ଧର୍ମୋପଦେଶ ଦେଇ, ଭିତରେ ଭିତରେ ଅନେକ ପାପ କରୁଥିଲି । ସେଇ ପାପ ଫଳରେ ଆଜି ମୁଁ କୁକୁର ହୋଇ ମାଡ଼ ସହୁଛି । ମହନ୍ତ ହେବାର ମଜା ଏବେ ଭୋଗୁଛି । ଆପଣ ଯାହା ସୁଖ ବୋଲି ଭାବୁଛନ୍ତି, ତା'ର ପରିଣାମ ଅତ୍ୟନ୍ତ ଦୁଃଖପ୍ରଦ । ତେଣୁ ଆପଣ ଏ' ବ୍ରାହ୍ମଣଙ୍କୁ ମଠାଧୀଶ କରାଇ ଦିଅନ୍ତୁ ।"

ଶ୍ରୀ ରାମଚନ୍ଦ୍ର କୁକୁର କଥା ମାନିଲେ । ପରଦିନ ଖୁବ୍ ଆଡ଼ମ୍ବର ସହକାରେ ତାକୁ ମଠାଧୀଶ କରାଇ ଦେଲେ । ଭଗବାନ ଏହିପରି ଭାବରେ ନିତ୍ୟନୂତନ ଲୀଳା କରିବାରେ ଲାଗିଲେ ।

ଆଉ ଦିନକର କଥା । ଜଣେ ମହର୍ଷି ରାଜଦ୍ୱାରକୁ ଆସିଲେ । ସେ ଖବ୍ ତେଜସ୍ୱୀ ଓ ପ୍ରଭାବଶାଳୀ ଥିଲେ । ସେ ସିଂହଦ୍ୱାରକୁ ଆସି ଲକ୍ଷ୍ମଣଙ୍କୁ କହିଲେ— "କୁମାର ! ମୁଁ ଅତିବଳ ମହର୍ଷିଙ୍କ ଦୂତ ଅଟେ । ମୁଁ ଶ୍ରୀରାମଙ୍କ ସହିତ ଦେଖା କରିବାକୁ ଚାହୁଁଛି । ଶ୍ରୀ ରାମଚନ୍ଦ୍ରଙ୍କଠାରେ ଜଣାଇ ଦିଅନ୍ତୁ ।"

ଲକ୍ଷ୍ମଣ ଶ୍ରୀରାମଙ୍କଠାରୁ ଆଦେଶ ପାଇ ସେ ମହର୍ଷିଙ୍କୁ ଭିତରକୁ ନେଇଗଲେ । ମହର୍ଷିଙ୍କୁ ଦେଖି ଶ୍ରୀରାମ ତାଙ୍କୁ ସ୍ୱାଗତ ଜଣାଇଲେ । ପ୍ରଥମେ ପାଦ୍ୟ ଅର୍ଘ୍ୟ ଦେଇ ତାଙ୍କୁ ପୂଜାକଲେ । ତା'ପରେ ପଚାରିଲେ—"କୁହନ୍ତୁ, ମହର୍ଷି ଅତିବଳ ମୋ' ପାଇଁ କି ସନ୍ଦେଶ ପଠାଇ ଅଛନ୍ତି । ଆପଣଙ୍କ ପରି ଜଣେ ତେଜସ୍ୱୀ ବ୍ୟକ୍ତିଙ୍କୁ ସେ ଦୂତରୂପେ ପଠାଇଥିବାରୁ, ମୋର ଧାରଣା ହେଉଛି—କୌଣସି ଗୁରୁତ୍ୱପୂର୍ଣ୍ଣ ଖବର ମହର୍ଷି ନିଶ୍ଚିତଭାବରେ ପଠାଇଛନ୍ତି ।"

ଶ୍ରୀରାମଙ୍କ କଥା ଶୁଣି ମହର୍ଷି କହିଲେ—"ହଁ, ଆପଣଙ୍କ କଥନ ସତ୍ୟ । ଏହି ସନ୍ଦେଶ ପରମ ଗୋପନୀୟ । ସେଥିପାଇଁ ଆପଣଙ୍କୁ ପ୍ରଥମେ ପ୍ରତିଜ୍ଞା କରିବାକୁ ହେବ । ଆମ ମଧ୍ୟରେ ଆଲୋଚନା ଚାଲିଥିବା ସମୟରେ ଭିତରକୁ କେହି ଆସି ପାରିବ ନାହିଁ । ଯଦି କେହି ଆଦେଶ ଅମାନ୍ୟ କରି ଭିତରକୁ ଆସିଯାଏ, ତେବେ ଆପଣ ତାକୁ ହତ୍ୟା କରିବେ, ଆପଣଙ୍କଠାରୁ ଏପରି ଆଶ୍ୱାସନା ଓ ପ୍ରତିଶ୍ରୁତି ମିଳିଲେ, ମୁଁ ଆଲୋଚନା ଆରମ୍ଭ କରିବ ।"

ଏହାଶୁଣି ଶ୍ରୀରାମଚନ୍ଦ୍ର ଲକ୍ଷ୍ମଣଙ୍କୁ କହିଲେ—"ଲକ୍ଷ୍ମଣ ! ତୁମେ ଦ୍ୱାରପାଳଙ୍କୁ ଅନ୍ୟତ୍ର ପଠାଇ ନିଜେ ଦ୍ୱାରରେ ରୁହ । ଆମେ ଆଲୋଚନା କରୁଥିବା ସମୟରେ କେହି ଯେପରି ଭିତରକୁ ନ ଆସନ୍ତି, ତୁମେ ତା'ର ବ୍ୟବସ୍ଥା କରିବ । ଯଦି କେହି ଭିତରକୁ ଆସିଯାଏ, ମୁଁ ତାକୁ ସ୍ୱହସ୍ତରେ ବଧ କରିବ ପାଇଁ ପ୍ରତିଜ୍ଞା କରୁଛି ।"

ଲକ୍ଷ୍ମଣ ଶିର ନୁଆଁଇ ଶ୍ରୀରାମଙ୍କ ଆଜ୍ଞା ମାନିବା ଲାଗି ସ୍ୱୀକାର କଲେ । ସେ ଦ୍ୱାରରୁ ଦ୍ୱାରପାଳକୁ ଦୂରେଇ ଦେଇ ନିଜେ ଦ୍ୱାରରେ ଜଗି ରହିଲେ ।

ସୂତ କହିଲେ—"ସେ ମହର୍ଷି ଆଉ କେହି ନୁହନ୍ତି । ସ୍ୱୟଂ କାଳପୁରୁଷ ମହର୍ଷି ବେଶ ଧାରଣ କରି ଶ୍ରୀରାମଙ୍କୁ ଚେତାଇ ଦେବାଲାଗି ଆସିଥିଲେ । ସେ ଏକାନ୍ତରେ ଶ୍ରୀରାମଙ୍କୁ ପରମ ଧାମକୁ ଯିବାଲାଗି ନିବେଦନ ଜଣାଇଲେ ।"

## ଛପ୍ପୟ

"ପଣ ପ୍ରଭୁ କରି ସ୍ୱୀକାର ଦ୍ୱାରପେ ଲଖନ ବିଠାୟୌ ।
ପୁନି ମୁନି ସନ ପ୍ରଭୁ କହ୍ୟୋ କାଲ କହି କାରନ ଆୟୌ ॥
ସମୟ ସମୁଝି କେ କାଲ ବେଷ ମୁନି କେ ଧରି ଆୟୋ ।
ପ୍ରଭୁ ଆୟୁସୁ ସିର ଧାରି ବ୍ରହ୍ମ ସନ୍ଦେଶ ସୁନାୟୋ ॥
ଅଂଶନିଯୁତ ଅବତାର ଧରି, ଭାର ଉତାର୍ୟୋ ଅବନିକୋ ।
ନିୟୁତ କାଲ ଜିତନୋ କର୍ୟୋ, ଭୟୋ ପୂର୍ଣ୍ଣ ସୋ ଯାବନକୋ ।"



## ଶ୍ରୀରାମଙ୍କ ଦ୍ୱାରା ଲକ୍ଷ୍ମଣଙ୍କ ପରିତ୍ୟାଗ

"ନ ବୈ ସ ଆତ୍ମାଽଽତ୍ମବତାଂ ସୁହୃତ୍ତମଃ
ସକ୍ତସ୍ତ୍ରିଲୋକ୍ୟାଂ ଭଗବାନ୍ ବାସୁଦେବଃ ।
ନ ସ୍ତ୍ରୀକୃତଂ କଶ୍ମଲମଶ୍ନୁବୀତ
ନ ଲକ୍ଷଣଂ ଚାପି ବିହାତୁମର୍ହତି ।।

(ଶ୍ରୀ ଭା. ୫ । ୧୯ । ୬ )

### ଛପ୍‌ପଦ୍ମ

"ଅବ ଇଚ୍ଛା ଯଦି ହୋଇ ନାଥ ! ନିଜ ଧାମ ପଧାରିବେ ;
କର ନରତନୁ ସଂବରନ ଅଟ୍ୟଲୀଳ ବିସ୍ତରେଂ ।।
କୃପାସ୍ମିତନ ସୁନି କାଲ କଥନ ବୋଲେ ମୃଦୁ ବାନୀ ;
ତବ ଶେଷବ ତଥ କାଲ ପ୍ରଥମ ଦ୍ୱାର ସବନେ ଜାନୀ ।।
କହି କାଲତେଂ ପ୍ରଭୁ—କରହୁଁ ହୋଇବେ ଜ ତେଂ ଜଗତ ହିତ ।
ତବଇ ଆୟେ ଦ୍ୱାରପେ, କ୍ରୋଧୀ ଦୁର୍ବାସା କୁପିତ ।।

ଅର୍ଥାତ୍—ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ଆତ୍ମବାନ୍ ଧୀର ପୁରୁଷ ସଂସାରରେ କୌଣସି ବସ୍ତୁ ପ୍ରତି ଆସକ୍ତ ହୁଅନ୍ତି ନାହିଁ । ତାଙ୍କୁ ଜାନକୀ ବିୟୋଗ ଜନିତ ଦୁଃଖ କଷ୍ଟ ଦିଏ ନାହିଁ କିମ୍ବା ଭାଇ ଲକ୍ଷ୍ମଣଙ୍କ ପରିତ୍ୟାଗ ତାଙ୍କ ମନରେ ପ୍ରଭାବ ପକାଇ ନ ଥାଏ ।"

ଅନ୍ୟମାନେ ଭୁଲ୍ କରିପାରନ୍ତି, କିନ୍ତୁ କାଳ କେବେହେଲେ ଭୁଲ କରି ନ ପାରନ୍ତି । ସେ ଅବିଚଳିତ ଭାବରେ ସବୁ କାମ କରିଯାଆନ୍ତି । ସମଗ୍ର ସଂସାର କାଳର ଅଧୀନ । କାଳ ବିରୁଦ୍ଧରେ କେହି କିଛି କରିପାରିବେ ନାହିଁ । କାଳ ସମସ୍ତ ବଳବାନ୍‌ଙ୍କ-ଠାରୁ ଅଧିକ ଶକ୍ତିଶାଳୀ ଅଟେ । ସେ କେବଳ ପରମେଶ୍ୱରଙ୍କ ଇଚ୍ଛା ପାଳନ

କରିଥାଏ । କାଳ ଭଗବାନଙ୍କ ସ୍ୱରୂପ ଅଟେ । ସେ କେବଳ ଭଗବାନଙ୍କ ଇଚ୍ଛା-ପାଳନ କରିଥାଏ । ଭଗବାନଙ୍କ ମନ ଜାଣି ସେ ନିଜର କାର୍ଯ୍ୟକ୍ରମ ଆରମ୍ଭ କରିଥାଏ । ଭକ୍ତ ଓ ଭଗବାନ ଏହି ଦୁହିଁଙ୍କୁ ଛାଡ଼ିଦେଲେ, ଆଉ ସମସ୍ତେ କାଳର ଅଧୀନ ଅଟନ୍ତି ।

ସୂତ କହିଲେ—"ହେ ମୁନିଗଣ ! କାଳ ଶ୍ରୀରାମଙ୍କୁ ଏକୁଟିଆ ଦେଖି ତାଙ୍କ ବକ୍ତବ୍ୟ ଆରମ୍ଭ କରିଦେଲେ । ଜଣେ ଦ୍ୱାରରେ ଲକ୍ଷ୍ମଣ ହାତରେ ଧନୁଶର ଧରି ପ୍ରହରୀ ହୋଇ ଜଗିଥିଲେ ।"

ଏହି ସମୟରେ ମହର୍ଷି ବେଶଧାରୀ କାଳ କହିଲେ—ହେ ପ୍ରଭୋ ! ମୁଁ କାଳ ! ବ୍ରହ୍ମାଙ୍କ ଆଜ୍ଞାରେ ମୁଁ ଆପଣଙ୍କ ନିକଟକୁ ଆସିଛି । ବ୍ରହ୍ମାଙ୍କ ବାଣୀ ଅବିକଳ ମୁଁ ଆପଣଙ୍କୁ ଶୁଣାଇ ଦେଉଛି—"ଆପଣ ମୋତେ ସୃଷ୍ଟି ପ୍ରକ୍ରିୟାରେ ନିଯୁକ୍ତ କରି-ଅଛନ୍ତି । ତେଣୁ ଏଠାରେ ମୁଁ କେବଳ ଆପଣଙ୍କ ଆଜ୍ଞା ପାଳନ କରୁଛି । ଆପଣ ଦୁର୍ଦ୍ଦର୍ଷ ରାବଣକୁ ସଂହାର କରିବା ନିମିତ୍ତ ନିର୍ଦ୍ଦିଷ୍ଟ ସମୟପାଇଁ ଅବନୀରେ ଅବତୀର୍ଣ୍ଣ ହୋଇଥିଲେ । ଆପଣ ଯେତେଦିନ ପାଇଁ ଯାଇଥିଲେ, ତାହା ଶେଷହୋଇ ଗଲାଣି । ମୁଁ ଆପଣଙ୍କୁ ଆଜ୍ଞା ଦେଉନାହିଁ । ଆପଣ କାଳର କାଳସ୍ୱରୂପ ଅଟନ୍ତି । ତେଣୁ କେବଳ ଆପଣଙ୍କୁ ସ୍ମରଣ କରାଇ ଦେଉଛି । ଯଦି ଆପଣଙ୍କ ଇଚ୍ଛାହୁଏ, ତେବେ ଆପଣ ନରଲୀଳା ସମ୍ବରଣ କରି ନିତ୍ୟଧାମକୁ ଫେରି ଆସନ୍ତୁ । ଯଦି ଆପଣ ଚାହୁଁଥାଆନ୍ତି, ତେବେ ଆପଣ ଆହୁରି କିଛିଦିନ ସେଠାରେ ରହି ପ୍ରଜାମାନଙ୍କୁ ସୁଖ ଦେଇ ପାରନ୍ତି ।"

ଭଗବାନ ଶ୍ରୀରାମଚନ୍ଦ୍ର କହିଲେ—"କାଳ ଦେବ ! ମୋର ସବୁ କଥା ଜାଣିଅଛୁ । ବ୍ରହ୍ମା ଯାହା ଚାହୁଁଛନ୍ତି, ତାହା ଅଚିରେ ପୂରଣ ହେବ । ମୁଁ ଅଳ୍ପଦିନ ମଧ୍ୟରେ ନରଲୀଳା ସମ୍ବରଣ କରିବାକୁ ଯାଉଛି ।"

ସୂତ କହିଲେ—"ହେ ମୁନିଗଣ ! କାଳ ଓ ଶ୍ରୀରାମଙ୍କ ମଧ୍ୟରେ ଆଲୋଚନା ଚାଲିଥିବା ସମୟରେ ମହାକ୍ରୋଧୀ ମୁନି ଦୁର୍ବାସା ଆସି ସେହି ସମୟରେ ଶ୍ରୀରାମଙ୍କ ସିଂହଦ୍ୱାରଠାରେ ଉପସ୍ଥିତ ହେଲେ । ସେତେବେଳେ ସେ କ୍ରୋଧରେ ଉନ୍ମତ୍ତ ଥିଲାପରି ମନେହେଉଥିଲେ । ତାଙ୍କ ଜଟାଜୁଟ ଫିଟିଯାଇ ଫର ଫର୍ ହୋଇ ଉଡ଼ୁଥିଲା ଏବଂ ତାଙ୍କ ଆଖି ଯୋଡ଼ିକ ଲାଲ୍ ଲାଲ୍ ଦେଖାଯାଉଥିଲା । ସେ ଅତ୍ୟନ୍ତ ଅଧିକାର ପୂର୍ଣ୍ଣ ସ୍ୱରରେ କହିଲେ—ଲକ୍ଷ୍ମଣ ! ମୁଁ ଏହି ମୁହୂର୍ତ୍ତରେ ଶ୍ରୀରାମଙ୍କୁ ଭେଟିବାକୁ ଚାହେଁ । ତୁମେ ଶୀଘ୍ର ଯାଇ ଶ୍ରୀରାମଙ୍କୁ ଜଣାଅ ।"

ଲକ୍ଷ୍ମଣ ଦୁର୍ବାସାଙ୍କୁ ଅଭିନନ୍ଦନ ଜଣାଇ କହିଲେ—"ଭଗବନ୍ ! ଶ୍ରୀରାମଚନ୍ଦ୍ର ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଆଲୋଚନାରେ ଜଣେ ମହର୍ଷିଙ୍କ ଗହଣରେ ଅଛନ୍ତି ।

ଯାହାକିଛି କହିବାର କଥା, ଆପଣ ମୋତେ କଣାନ୍ତୁ । ମୁଁ ଆପଣଙ୍କ ସେବାରେ ନିଯୁକ୍ତ ହେବି ।”

ଦୁର୍ବାସା ଲକ୍ଷ୍ମଣଙ୍କୁ ଅତ୍ୟନ୍ତ କର୍କଶ ସ୍ୱରରେ କହିଲେ—“ଲକ୍ଷ୍ମଣ ! ତୁମେ ତୁମର ସୀମା ଲଙ୍ଘନ କରି ଯାଉଛ । ମୁଁ ତୁମକୁ କହିଲି ପରା ଯେ, ଶ୍ରୀରାମଙ୍କ ସହିତ ମୋର କାମ ଅଛି । ମୁଁ ତୁମ ଆଗରେ ତାହା ପ୍ରକାଶ କରିପାରିବି ନାହିଁ । ଶୀଘ୍ର ଯାଇ ଶ୍ରୀରାମଙ୍କୁ ମୋ ସନ୍ଦେଶ ଶୁଣାଇ ଦିଅ !”

ଲକ୍ଷ୍ମଣ ଦୁର୍ବାସାଙ୍କ ବଚନ ଶୁଣି ଥରି ଉଠିଲେ । ସେ ଅତ୍ୟନ୍ତ ବିନମ୍ରଭାବରେ କହିଲେ—“ପ୍ରଭୋ ! ଆପଣ କ୍ଷଣମାତ୍ର ଅପେକ୍ଷା କରନ୍ତୁ । ଶ୍ରୀରାମଚନ୍ଦ୍ର ବର୍ତ୍ତମାନ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ବ୍ୟସ୍ତ ଅଛନ୍ତି ।”

ଦୁର୍ବାସା ଅତ୍ୟନ୍ତ ରାଗିଯାଇ, ଦାନ୍ତ କଡ଼ମଡ଼ କରି କହିଲେ—“ଆରେ । ! କ୍ଷତ୍ରିୟ କୁମାର ! ତୁ ବୋଧହୁଏ ମୋ' ତେଜ, ସ୍ୱଭାବ ଓ ଶକ୍ତି ବିଷୟରେ ସମ୍ପୂର୍ଣ୍ଣ ଅନଭିଜ୍ଞ ! ତେଣୁ ତୁ ଏପରି ଧୃଷ୍ଟତା ପ୍ରକାଶ କରୁଛୁ । ମନେରଖ, ମୋ' ନାଆଁ ଦୁର୍ବାସା । 'ଅଭିଶାପ ହେଉଛି'—ମୋର ଅସ୍ତ୍ର ! ସାମାନ୍ୟ ଅବହେଳା ଦେଖାଇ ଥିବାରୁ, ଇନ୍ଦ୍ର ଶ୍ରୀହୀନ ହୋଇ ଦ୍ୱାରଦ୍ୱାର ବୁଲିଥିଲେ । ତୁ ମୋ ଆଗରେ ଉତ୍ତର ଦେବାର ସାହସ କରୁଛୁ ! ତୁ ଯଦି ଏହିକ୍ଷଣି ମୋ' ଆଦେଶରେ ଶ୍ରୀରାମଙ୍କ ପାଖକୁ ନ ଯାଉ, ତେବେ ମୋ' ଅଭିଶାପରେ ସମଗ୍ର ଅଯୋଧ୍ୟାପୁରୀ ଭସ୍ମ ହୋଇଯିବ !”

ଏହାଶୁଣି ଲକ୍ଷ୍ମଣ ଭୟଭୀତ ହୋଇଗଲେ । ସେ ସମସ୍ତର ବଳାବଳ ପ୍ରତି ବିଚାର କଲେ—“ଏ କ୍ରୋଧୀ ମୁନି ପକ୍ଷରେ କିଛିହେଲେ ଅସମ୍ଭବ ନୁହେଁ । ଏ' ଯାହା ଚାହିଁବେ ତାହା କରି ପାରିବେ । ମୁଁ ଯଦି ନ ଯାଏଁ, ତେବେ ଏ' ସମଗ୍ର ରାଜ୍ୟକୁ ଧ୍ୱଂସ କରିଦେବେ । ଯଦି ଏହିକ୍ଷଣି ଭିତରକୁ ଚାଲିଯାଏ, ତେବେ ଶ୍ରୀରାମ କେବଳ ମୋତେ ବଧ କରିବେ । ଜଣକ ବଦଳରେ ଯଦି ବହୁଲୋକ ତଥା ଧନସମ୍ପତ୍ତି ରକ୍ଷାପାଇ ଯାଏ, ତେବେ ମୋର ଆତ୍ମତ୍ୟାଗ ସୁଖଦ ହେବ ।”

ଏହା ଚିନ୍ତାକରି ସେ ହାତଯୋଡ଼ି କହିଲେ—“ଭଗବନ୍ ! ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ମୁଁ ଏହିକ୍ଷଣି ଶ୍ରୀରାମଙ୍କ ନିକଟରେ ଆପଣଙ୍କ ଆଗମନର ବାର୍ତ୍ତା ଜଣାଇ ଦେଉଛି ।”

ଏହା କହିଦେଇ ସେ ଭିତରକୁ ଚାଲିଗଲେ । କାଳ ଓ ଶ୍ରୀରାମଙ୍କ ଆଲୋଚନା ହଠାତ୍ ବନ୍ଦ ହୋଇଗଲା । କାଳ ଅତ୍ୟନ୍ତ ରହସ୍ୟପୂର୍ଣ୍ଣ ଦୃଷ୍ଟିରେ ଲକ୍ଷ୍ମଣଙ୍କୁ ଚାହିଁ-

ରହିଲେ । ଲକ୍ଷ୍ମଣ ମଧ୍ୟ କାଳର ରହସ୍ୟପୂର୍ଣ୍ଣ କାହାଣୀ ଦେଖିପାରି ଥିଲେ । ସେ ସେଥିପ୍ରତି ଗୁରୁତ୍ୱ ନ ଦେଇ କହିଲେ—"ପ୍ରଭୋ ! ମହାମୁନି ଦୁର୍ବାସା ଅତ୍ୟନ୍ତ ଅଧୀରତାର ସହିତ ଆପଣଙ୍କ ଦର୍ଶନ କାମନା କରୁଛନ୍ତି ।"

ଦୁର୍ବାସାଙ୍କ ନାମ ଶୁଣି କାଳ ମନେ ମନେ ଖୁସିହୋଇ ଭାବିଲେ—ଯା'ହେଉ, ମୋ' କାମ ହୋଇଗଲା । ଶ୍ରୀରାମଚନ୍ଦ୍ର ଦୁର୍ବାସାଙ୍କ ନାମ ଶୁଣିବା ମାତ୍ରେ ମନେ ମନେ ଥରି ଉଠିଲେ । ସେ କହିଲେ—"ମହାମୁନିଙ୍କୁ ଶୀଘ୍ର ମୋ' ପାଖକୁ ନେଇ ଆସ ।"

ଏହା ମଧ୍ୟରେ ମୁନି ବେଶଧାରୀ କାଳ ବିଦାୟ ନେଲେ । ଲକ୍ଷ୍ମଣ ଯାଇ ଦୁର୍ବାସାଙ୍କୁ କହିଲେ—"ମହାଶୟ, ଆସନ୍ତୁ !"

ଦୁର୍ବାସା କ୍ରୋଧରେ ଆଖି ତରାଟି ଭିତରକୁ ପଶିଗଲେ । ଲକ୍ଷ୍ମଣ ମଧ୍ୟ କୌତୂହଳୀ ହୋଇ ତାଙ୍କ ପଛେ ପଛେ ଗଲେ । ସେ ମନେ ମନେ ଭାବୁଥିଲେ— "ମୁନିଙ୍କର ଏପରି କି କାର୍ଯ୍ୟ ରହିଗଲା ଯେ, ସେ ଟିକିଏ ହେଲେ ବିଳମ୍ବ ସହ୍ୟକରି ପାରୁ ନଥିଲେ ।"

ମୁନିଙ୍କୁ ଦେଖିବା ମାତ୍ରେ ଶ୍ରୀରାମ ତାଙ୍କ ଚରଣ ବନ୍ଦନା କଲେ । ପାଦ୍ୟ-ଅର୍ଘ୍ୟ ଦେଇ ତାଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । ଦୁର୍ବାସା କହିଲେ—"ରାଘବ ! ମୁଁ ସହସ୍ର ବର୍ଷ ଉପବାସ କରିବାର ବ୍ରତ କରିଥିଲି । ତାହା ସମ୍ପୂର୍ଣ୍ଣ ହୋଇଗଲା । ମୁଁ ଆଜି ତୁମର ଘରେ ଭୋଜନ କରିବି । ସେଥିପାଇଁ ବିଶେଷ ଆୟୋଜନର ଆବଶ୍ୟକତା ନାହିଁ । ଯାହା ତୁମ ରୋଷେଇଶାଳାରେ ପ୍ରସ୍ତୁତ ହୋଇଛି, ତାହା ମୋତେ ସଙ୍ଗେ ସଙ୍ଗେ ପ୍ରଦାନ କରନ୍ତୁ ।"

ଏହାଶୁଣି ଲକ୍ଷ୍ମଣ ମନେ ମନେ ହସି ହସି ଭାବିଲେ—"ଏ' ତ ଗୋଟିଏ ବିଚିତ୍ର ମୁନି । ଖାଇବାକୁ ଯଦି ମାଗିବାର ଥିଲା, ତେବେ ମୋତେ ମାଗିଥିଲେ କ'ଣ ଚଳି ନଥା'ନ୍ତା ! ମୁଁ କ'ଣ ଗଣ୍ଡେ ଖାଇବାକୁ ଦେଇପାରି ନଥାନ୍ତି । ଗୋଟିଏ ସାମାନ୍ୟ ବିଷୟପାଇଁ ମୁନି ମୋ' ପ୍ରତିଜ୍ଞା ଭଙ୍ଗ କରାଇଲେ ! ଏହିପରି ଆଉ ଗୋଟିଏ ଘଟଣା ଲକ୍ଷ୍ମଣଙ୍କର ମନେ ପଡ଼ିଗଲା । କେହି ଜଣେ ଘଟଣାଟି ତାଙ୍କୁ ଶୁଣାଇ ଥିଲା ।"

ସରଯୂର ଆର ପାଖରେ ଜଣେ ମେଷ ପାଳକ ରହୁଥିଲା । ନଦୀର ଏ'ପଟେ ଆଉ ଜଣେ ତା'ର ଜାତିର ଲୋକ ଥିଲା । ଶ୍ରାବଣ ଭାଦ୍ରବ ମାସରେ ସରଯୂ ଖୁବ୍

ବଢ଼ି ଥାଏ । ଏ' ପାଖର ମେଷ ପାଳକ ଆର ପାଖର ଜାଉ ଭାଇକୁ ଡାକ ପକାଇ କହିଲା—"ଏ' ଭାଇ ! ଜଲଦି ଟିକିଏ ଏ' ପାଖକୁ ଆସିଲୁ । ତୋତେ କେତେକ ଜରୁରୀ କଥା ପଚାରିବାର ଅଛି ।"

ଆରପଟର ଲୋକଟି କହିଲା—"ଭାଇ ! ଦେଖୁନ, ନଈର ଅବସ୍ଥା । ଯିବି କପରି ? ତୁମର ଯାହା କିଛି ପଚାରିବାର ଅଛି, ସେଇଠି ଥାଇ ପଚାରି ନିଅ !"

ଏ' ପଟର ମେଷ ପାଳକ କହିଲା—"ନା ଭାଇ ! କାମ ଖୁବ୍ ଜରୁରୀ । ତୁମେ ଯେମିତି ହେଉ ଟିକିଏ ଆସ । ନଇଲେ ଚଳିବ ନାହିଁ ।"

ସେ ଲୋକଟି ବାଧ୍ୟହୋଇ ଭରା ନଈଟିକୁ କୌଣସିମତେ ପାରହୋଇ ଏ'ପଟକୁ ଆସିଲା । ସେ ଆସିବା ମାତ୍ରେ ଓଦା ସର୍ ସର୍ ହୋଇ ପଚାରିଲା—"କ'ଣ କହିଲୁ ଭାଇ ଜଲ୍ଦି । ମୋ' ଦେହ ଶୀତରେ ଥରୁଛି ।"

ଏ' ପଟର ଲୋକଟି ଆରପଟର ଲୋକଟି ପାଖକୁ ଘୁଞ୍ଚିଯାଇ ତା' କାନ ପାଖରେ ଫୁସ୍ ଫୁସ୍ ହୋଇ କହିଲା—"ତୁମେ କାଲି କେଉଁ ଆଡ଼କୁ ତୁମ ମେଣ୍ଢା ଚରାଇବାକୁ ନେବ ?"

ଆର ଲୋକଟି ଖୁବ୍ ରାଗିଗଲା । ସେ ମୁହଁ ଛାଞ୍ଚାଡ଼ି କହିଲା—"ଯା......! ଏଇକଥା କ'ଣ ତୁ ମୋତେ ଏ' ପାଖରୁ ଥାଇ ପଚାରି ପାରି ନଥାନ୍ତୁ ? ମୋତେ ଏତେ କଷ୍ଟଦେଲୁ !"

ଲକ୍ଷ୍ମଣ ତାହା ହିଁ ଭାବି ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ମୁନିଙ୍କ ଆଶ୍ଚର୍ଯ୍ୟଜନକ ସ୍ୱଭାବ ସମ୍ବନ୍ଧରେ ଭାବି ମନେ ମନେ ଖୁବ୍ ହସିଲେ । ମୁନି ଦୁର୍ବାସା ପେଟଭରି ଭୋଜନ କରିବା ପରେ, ଶ୍ରୀରାମଙ୍କୁ ଆଶୀର୍ବାଦ ପ୍ରଦାନ କରି ସେଠାରୁ ଚାଲିଗଲେ ।

ମୁନି ଚାଲିଯିବା ପରେ ପୂର୍ବର ପ୍ରତିଜ୍ଞା ଶ୍ରୀରାମଙ୍କର ମନେ ପଡ଼ିଗଲା । ତା' ସହିତ କାଳର କରାଳ ରୂପ ତାଙ୍କ ଆଖି ଆଗରେ ଭାସି ଉଠିଲା । ସେ ଭାବିଲେ— 'ଏହି ହାତରେ ପ୍ରାଣପ୍ରିୟା ସୀତାକୁ ନିର୍ବାସନ ଦଣ୍ଡ ଦେଲି, ନିର୍ଦ୍ଦୋଷ ସମ୍ବୁକକୁ ବଧ କଲି; ପୁଣି ସେହି ହାତରେ ମୋର ପ୍ରାଣପ୍ରିୟ ଭାଇକୁ ବଧ କରିବି ! ହାୟ...କାଳ, ତୁମେ କେତେ ନିର୍ଦ୍ଦୟ । ଯାହା ଏକାବେଳକେ ନ କରିବା କଥା, ତାହା ମୋର ହାତରେ କରାଇ ନେଉଛ ! ଯେଉଁ ଭାଇ ପିଲାଦିନରୁ ମୋ' ପାଖେ ପାଖେ ଜଗି ରହିଛି, ଯେ ଜୀବନରେ କେବେହେଲେ ନିଜ ସୁଖ ପ୍ରତି ଦୃଷ୍ଟି ନଦେଇ, ମୋ' ସୁଖପାଇଁ କାମ କରିଛି, ତା'ର ପୁରସ୍କାର ସ୍ୱରୂପ ମୋତେ ଆଜି ତା' ଗଣ୍ଡିରୁ ମୁଣ୍ଡଟିକୁ ଅଲଗା

କରିବାକୁ ହେବ ! ନାଃ...ଏହା ମୋ'ଦ୍ୱାରା ହୋଇ ପାରିବ ନାହିଁ । ଆଜି ମୁଁ ପ୍ରତିଜ୍ଞା ଭଙ୍ଗ କରିବାକୁ ଚଳିଲେହେଲେ ପଶ୍ଚାଦ୍‌ପଦ ନୁହେଁ !" ଏମିତି କେତେ କ'ଣ ଭାବି ଶ୍ରୀରାମ ବିବ୍ରତ ହୋଇ ପଡ଼ିଲେ ।

ଶ୍ରୀରାମଙ୍କୁ ଦୁଃଖିତ ହୋଇଥିବାର ଲକ୍ଷ୍ୟକରି ହସି ହସି ଲକ୍ଷ୍ମଣ କହିଲେ— "ପ୍ରଭୋ ! ଆପଣ ନିଜ ପ୍ରତିଜ୍ଞା ରକ୍ଷା କରନ୍ତୁ । ଏହା ଫଳରେ ଆମ କୁଳର କଳଙ୍କ ଲାଗିବ ନାହିଁ । ମୁଁ ସେଥିପାଇଁ ଆଦୌ ଦୁଃଖିତ ନୁହେଁ ।"

ଏହାଶୁଣି ଶ୍ରୀରାମ ଅତ୍ୟନ୍ତ ଦୁଃଖିତ ହୋଇ ଜାବାଳି ଆଦି ମୁନିମାନଙ୍କୁ ଡକାଇ ସମସ୍ତ ସମ୍ବାଦ ଶୁଣାଇ ଦେଲେ । ସେମାନେ ଏହାଶୁଣି ଅବାକ୍ ହୋଇଗଲେ । କାହାରି ପାଟିରୁ କିଛି ହେଲେ କଥା ବାହାରିଲା ନାହିଁ । ନିସ୍ତବ୍ଧତା ଭଙ୍ଗକରି ବଶିଷ୍ଠ କହିଲେ—"ଶ୍ରୀରାମ ! ପ୍ରତିଜ୍ଞା ପାଳନ ହେଉଛି ଧର୍ମ ! ଆପଣ ସତ୍ୟ ପ୍ରତିଜ୍ଞ ଅଟନ୍ତି । ଆପଣ ନିଜ ପ୍ରତିଜ୍ଞା-ଭଙ୍ଗ କରନ୍ତୁ ନାହିଁ । କାଳ ସନ୍ନିକଟ ହୋଇଗଲାଣି । ମୁଁ ଦିବ୍ୟ ଦୃଷ୍ଟିରେ ସବୁକିଛି ଦେଖି ପାରୁଛି ।"

ଶ୍ରୀରାମ କାନ୍ଦି କାନ୍ଦି କହିଲେ—"ମହାମୁନି ! ମୁଁ ମୋର ପ୍ରାଣପ୍ରିୟ ଭାଇକୁ କିପରି ବଧକରି ପାଇବ ?"

ତହୁଁ ବଶିଷ୍ଠ କହିଲେ—"କେବଳ ଅସ୍ତ୍ରରେ ଶିରଚ୍ଛେଦ କଲେ ବଧ ହୁଏନାହିଁ । ପରିତ୍ୟାଗ କରିବା ମଧ୍ୟ ବଧ ସହିତ ସମାନ । ରାଜାଙ୍କ ଆଜ୍ଞା ଭଙ୍ଗ କରିବା—ରାଜାଙ୍କ ବଧ ସହିତ ସମାନ । ସ୍ତ୍ରୀ ସହିତ ଶଯ୍ୟା ପୃଥକ୍ କରିଦେଲେ—ସ୍ତ୍ରୀର ବଧ ହୋଇଥାଏ । ବ୍ୟକ୍ତିକୁ ପରିତ୍ୟାଗ କରିଦେଲେ, ତା'ର ବଧ ସହିତ ସମାନ । ଆପଣ ଲକ୍ଷ୍ମଣଙ୍କୁ ପରିତ୍ୟାଗ କରିଦିଅନ୍ତୁ । ସେଇଥିରେ ଆପଣଙ୍କ ପ୍ରତିଜ୍ଞା ପୂରଣ ହୋଇଯିବ । ଆପଣଙ୍କଠାରୁ ପୃଥକ୍ ରହି ଲକ୍ଷ୍ମଣ ଜୀବିତ ରହିପାରିବ ନାହିଁ ।"

ଏହା ଶୁଣି ଶ୍ରୀରାମ କାନ୍ଦି କାନ୍ଦି କହିଲେ—"ଲକ୍ଷ୍ମଣ ! ମୁଁ ତୋତେ ପରିତ୍ୟାଗ କରି ଦେଲି । ତୁ ଏବେ ଅନ୍ୟ କେଉଁଠି ଯାଇ ରହ ।"

ଏହା ଶୁଣିବା ମାତ୍ରେ ଲକ୍ଷ୍ମଣଙ୍କ ଆଖିରୁ ଲୁହର ଧାର ଝରି ପଡ଼ିଲା । ସେ ଶ୍ରୀରାମଙ୍କୁ ପ୍ରଦକ୍ଷିଣ କରି, ଭୂମିକୁ ପ୍ରଣାମ କଲେ । ତା'ପରେ ସେ ଅଯୋଧ୍ୟାର ରାଜମହଲରୁ ବାହାରି ସରଯୂ ତଟକୁ ଚାଲିଗଲେ । ସେ ସେଠାରେ ବିନା ଅନ୍ନଜଳରେ ସମାଧି ଲଗାଇ ବସି ପଡ଼ିଲେ । ସେ ଶେଷକୁ ନିଃଶ୍ୱାସ ନେବା ବନ୍ଦ କରିଦେଲେ ସ୍ୱରୂପ ଚିନ୍ତା କରି କରି ତନ୍ମୟ ହୋଇ ଉଠିଲେ । ତହୁଁ ଇନ୍ଦ୍ର ତାଙ୍କୁ ସଶରୀରରେ

ସ୍ୱର୍ଗକୁ ନେଇଗଲେ । ଅଯୋଧ୍ୟାବାସୀ ଲକ୍ଷ୍ମଣଙ୍କୁ ଖୋଜି ଖୋଜି କେଉଁଠି ହେଲେ ପାଇଲେ ନାହିଁ । ଯେ ଚିନ୍ମୟ ହୋଇ ଯାଇଛନ୍ତି, ତାଙ୍କୁ ଲୋକମାନେ ପାଇବେ କିପରି ?

ତହୁଁ ସୂତ ମୁନି କହିଲେ—"ମୁନିଗଣ ! ଏହିପରି ଭାବରେ ଲକ୍ଷ୍ମଣ ସଶରୀରରେ ପରଲୋକକୁ ଗମନ କଲେ । ଲକ୍ଷ୍ମଣଙ୍କ ଅଭାବରେ ଶ୍ରୀରାମ ଦୁଃଖିତ ହୋଇ ଧୈର୍ଯ୍ୟ ହରାଇ ବସିଲେ । ସମଗ୍ର ସଂସାର ତାଙ୍କୁ ଶୂନ୍ୟ ଦେଖାଗଲା ।"

## ଛପ୍ପୟ

"ରାମଚନ୍ଦ୍ର ତୈଂ ମିଲହୁଁ କହେଁ ପୁନି ପୁନି ଦୁର୍ବାସା ।
ମୁନି ନହିଁ ମାନେ ଲକ୍ଷ୍ମଣ ଗୟୌ ତଜି ଜୀବନ ଆଶା ।
ବୁଲବାୟୌ ମୁନି ବଦା କାଲ ରଘୁବର ନ କୀନ୍ହୋଂ ।
କରି ଆଦର ସତକାର ସ୍ୱାଦ ଯୁତ ଭୋଜନ ଦୀନ୍ହୋଂ ।।
ପୂର୍ଣ୍ଣ ପ୍ରତିଜ୍ଞା କରନ ହିତ, ରଘୁପତି ଲଛିମନ ତଜି ଦୟୌ ।
ରାମ ବିରହ ଚେମଂ ତନୁ ସହିତ, ଦୁଃଖିତ, ଲଖନ ସୁରପୁର ଗୟୌ ।।"



# ଶ୍ରୀରାମଙ୍କ ପରମଧାମ ଯାତ୍ରା

"ସ୍ମରତାଂ ହୃଦି ବିନ୍ୟସ୍ୟ ବିଦ୍ଧଂ ଦଣ୍ଡକକଣ୍ଟକୈଃ ।
ସ୍ୱପାଦପଲ୍ଲବଂ ରାମ ଆତ୍ମଜ୍ୟୋତିରଗାତ୍ ତତଃ ॥

(ଶ୍ରୀଭା. ୯ସ୍କ-୧୧ଅ, ୧୯ଶ୍ଲୋ)

## ଛପ୍ପୟ

ଲଖନ ବିରହ ଅତି ଦୁସହ ରାମ ତେହି ସହି ନ ସକେ ଜବ ।
ଲବ କୁଶ କୀହ୍ନେଂ ନୃପତି ଚଲେ ବନ୍ ଧନ ଜନ ତଜି ସବ ॥
ଭରତ ଶତ୍ରୁହନ ସଙ୍ଗ ଚଲେ ପୁର କେ ନରନାରୀ ।
ଖଗ, ମୃଗ, ବାନର, ବୃକ୍ଷ, ଭୀର ଲଗି ସଁଗ ଭାରୀ ॥
ରାମ ପ୍ରେମ କେ ପାଶ ମହଁ, ବଁଧେ ଚଲେ ସବ ହରଷିକେଁ ।
ଅତି ପ୍ରମୁଦିତ ସୁରପତି ଭଏ, ହରଷ ଜତାୟେଂ ବରଷିକେଂ ॥

ଅର୍ଥାତ୍ ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ଶ୍ରୀରାମ୍ ସମସ୍ତ ନରଲୀଳା ଶେଷ କରିଦେଲେ । ଭକ୍ତମାନଙ୍କ ସ୍ମରଣ ଫଳରେ ସେ ନିଜର ପାଦପଲ୍ଲବକୁ ସେମାନଙ୍କ ହୃଦୟରେ ସ୍ଥାପନ କରନ୍ତି, ସେହି ପାଦକମଳ ଦଣ୍ଡକବନର କଣ୍ଟକ ଦ୍ୱାରା ବିଦ୍ଧ ହୋଇଥିଲା । ଏହାପରେ ସେଉଁ ଶ୍ରୀରାମ ସେ ଆତ୍ମଜ୍ୟୋତିରେ ବିଲୀନ ହୋଇଗଲେ ।"

ଜୀବର ପରମ ମିତ୍ର ହେଉଛନ୍ତି—ରାମ । ରାମଙ୍କୁ ଛାଡ଼ି ଯେ କାମର ଅଧୀନ ହୁଏ, ତାହାଙ୍କୁ ଚଉରାଶି ନରକରେ ପରିଭ୍ରମଣ କରିବାକୁ ପଡ଼େ । ମୁନିମାନେ ଜଙ୍ଗଲ ଭିତରେ ରହି କିଛି ନଖାଇ ନପିଇ ରାମନାମ ଜପରେ ଲାଗି ପଡ଼ନ୍ତି । ସେମାନେ ସଂସାରର ଗମନାଗମନଠାରୁ ମୁକ୍ତି ପାଇବାପାଇଁ, ସମସ୍ତ ପ୍ରକାର ଆସକ୍ତିରୁ ଦୂରରେ ରହି ଜଙ୍ଗଲ ଜୀବନଯାପନ ପୂର୍ବକ ଘୋର ତପସ୍ୟାରେ ମଗ୍ନ ହୋଇ ଯାଆନ୍ତି । କିନ୍ତୁ ଭକ୍ତମାନଙ୍କର ଆଚରଣ ପୃଥକ୍ । ସେମାନେ ଘରଦ୍ୱାର ଛାଡ଼ି ଜଙ୍ଗଲକୁ ଯାଆନ୍ତି

ନାହିଁ । ସେମାନେ ସର୍ବଦା ଶ୍ରୀରାମଙ୍କୁ ଦେଖି, ତାଙ୍କର ମନୋହର ରୂପକୁ ହୃଦୟ ସିଂହାସନରେ ବସାଇ ଥାଆନ୍ତି । ତା'ଫଳରେ ସେମାନଙ୍କୁ ଯୋଗୀମାନଙ୍କର ଗତି ପ୍ରାପ୍ତ ହୋଇଥାଏ ।

ଶ୍ରୀ ସୂତ ମହର୍ଷି କହିଲେ—"ମୁନିଗଣ ! ଲକ୍ଷ୍ମଣ ପରମଧାମର ଯାତ୍ରୀ ହୋଇଯାଆନ୍ତେ, ଶ୍ରୀରାମଙ୍କୁ ସବୁକିଛି ତୁଚ୍ଛ ବୋଧ ହେଲା । ସେ ଲକ୍ଷ୍ମଣଙ୍କୁ ଆଧାର କରି ଚଳି ଯାଉଥିଲେ । ଏବେ ତାଙ୍କ ବିୟୋଗରେ ସେ ଅଧୀର ହୋଇ ପଡ଼ିଲେ । ସେ ଏକଦା ସମସ୍ତ ପୁରବାସୀ, ମନ୍ତ୍ରୀ, ପୁରୋହିତ ତଥା ମୁନିମାନଙ୍କୁ ବସାଇ କହିଲେ— "ବନ୍ଧୁଗଣ ତଥା ଗୁରୁଜନ ! ଲକ୍ଷ୍ମଣ ବିନା ମୋତେ ଏ' ସଂସାର ଶୂନ୍ୟ ବୋଧ ହେଉଛି । ଲକ୍ଷ୍ମଣଙ୍କ ବିନା ମୁଁ ଆଉ ଏହି ରାଜମହଲରେ ଗୋଟିଏ କ୍ଷଣ ମଧ୍ୟ ରହି ପାରିବି ନାହିଁ । ଲକ୍ଷ୍ମଣ ମୋ' ସହିତ ବନକୁ ଯାଇଥିଲା । ମୁଁ ତା' ସହିତ ଇହଲୋକ ପରିତ୍ୟାଗ କରିବି । ଆଜି ଭରତର ରାଜ୍ୟାଭିଷେକର ଆୟୋଜନ କର । ମୋ' ଆଜ୍ଞା ଅବଲମ୍ବେ ପାଳିତ ହେବା ଉଚିତ । ଆଉ ମୋର ସମୟ ନାହିଁ । ଯେତେ ଶୀଘ୍ର ସମ୍ଭବ ଏହା କରାଯାଉ !"

ଏହା ଶୁଣି ସମସ୍ତେ ରୋଦନ କରିବାକୁ ଲାଗିଲେ । ଭରତ ଏହା ଶୁଣିବା ମାତ୍ରେ ମୂର୍ଚ୍ଛିତ ହୋଇଗଲେ । ଲବକୁଶ ଶୀଘ୍ର ଭରତଙ୍କୁ ସଚେତ କରାଇଲେ । ସେ ସଚେତ ହେବାପରେ କାନ୍ଦି କାନ୍ଦି କହିଲେ—"ସଂସାରରେ ଏକମାତ୍ର ଅଭାଗା ମୁଁ । ଭାଇ ଲକ୍ଷ୍ମଣ ଭାଗ୍ୟଶାଳୀ । ସେ ବନବାସ ସମୟରେ ଭାଇଙ୍କ ଆଗେ ଆଗେ ଯାଇ ତାଙ୍କ ପଥ ପରିଷ୍କୃତ କରି ଦେଉଥିଲା ଏବଂ ଏବେ ମଧ୍ୟ ପ୍ରଥମେ ପରଲୋକକୁ ଚାଲିଗଲା । ମୁଁ ପୂର୍ବ ଜନ୍ମରେ କେତେ ପାପ କରିଥିଲି କେଜାଣି, ରାଜ ସିଂହାସନ ମୋତେ ଛାଡ଼ି ପାରୁ ନାହିଁ । ଶ୍ରୀରାମଙ୍କ ବନବାସ ସମୟରେ ମୋତେ ଚଉଦବର୍ଷ ପର୍ଯ୍ୟନ୍ତ ମହାକଷ୍ଟରେ ରାଜକାର୍ଯ୍ୟ ସମ୍ଭାଳିବାକୁ ପଡ଼ିଥିଲା । ସେତେବେଳେ କେତେ କଷ୍ଟ ଭୋଗିଛି, ତାହା ମୋ' ବ୍ୟତୀତ ଆଉ କେହି ଜାଣନ୍ତି ନାହିଁ । ଆଜି ମଧ୍ୟ ସେହି ରାଜସିଂହାସନ ମୋ' ମୁଣ୍ଡରେ ଅଜାଡ଼ି ଦେଇ, ଶ୍ରୀରାମ ପରଲୋକ ଯାତ୍ରାପାଇଁ ମନ ବଳାଇଲେଣି । ହେ ରାଘବ ! ଆପଣଙ୍କ ଆଜ୍ଞା ପାଳନ ନ କଲେ, ଯେଉଁ ମହାପାପ ହେବ, ମୁଁ ତାହା ଭୋଗ କରିବାକୁ ପ୍ରସ୍ତୁତ ଅଛି । ତା'ଫଳରେ ମୋତେ ରୌରବ ଆଦି ନର୍କ ଭୋଗ କରିବାକୁ ପଡ଼ିପାରେ । ମୁଁ ଆପଣଙ୍କ ଆଜ୍ଞା ପାଳନ କରି ପାରିବି ନାହିଁ । ମୁଁ ଶପଥ କରି କହୁଛି, ମୁଁ ଆପଣଙ୍କ ଆଦେଶ ପାଳନ କରିବି ନାହିଁ । ଆପଣ ମୋତେ ଏପରି ଆଦେଶ ଦିଅନ୍ତୁ ନାହିଁ । ମୁଁ ଆପଣଙ୍କ ବିନା ଦଣ୍ଡେ ହେଲେ ଚଳି ପାରିବି ନାହିଁ । ଆୟୁଷ୍ମାନ୍ କୁଶ ଓ ଲବ ଦୁହେଁ ଯାକ ସବୁଦିଗରୁ ଯୋଗ୍ୟ । ତା'ପରେ ନ୍ୟାୟତଃ ସେ ଦୁହେଁ ରାଜସିଂହାସନର ଅଧିକାରୀ । ଦକ୍ଷିଣ କୋଶଳରେ କୁଶ ଏବଂ ଉତ୍ତର କୋଶଳରେ

ଲବକୁ ରାଜସିଂହାସନରେ ବସାଇ ଦିଅନ୍ତୁ । ମୁଁ ଆପଣଙ୍କ ସହିତ ମହାଯାତ୍ରା କରିବି ।”

ଭରତଙ୍କର ଦୃଢ଼ ପ୍ରତିଜ୍ଞା ଲକ୍ଷକରି ଶ୍ରୀରାମ ତାଙ୍କ କଥା ମାନିନେଲେ । ତା’ପରେ ଲବକୁଶଙ୍କ ରାଜ୍ୟାଭିଷେକ ସମ୍ବନ୍ଧରେ ଆୟୋଜନ ଚାଲିଲା । ସେ ସମୟରେ ଅଯୋଧ୍ୟାର ସମସ୍ତ ପ୍ରଜା ଅଧୀର ହୋଇ କାନ୍ଦିବାକୁ ଲାଗିଲେ । ପ୍ରଜାମାନଙ୍କର ଦୟନୀୟ ଦଶା ଦେଖି ମୁନି ବଶିଷ୍ଠ ପରମ ଦୟାଳୁ ରାମଚନ୍ଦ୍ରଙ୍କୁ କହିଲେ—“ପ୍ରଭୋ ! ଆପଣ ପ୍ରଜାମାନଙ୍କର ହାର୍ଦ୍ଦିକ ଇଚ୍ଛା ବୁଝି, ତଦନୁସାରେ କାର୍ଯ୍ୟ କରନ୍ତୁ । ଆପଣ ସର୍ବଦା ପ୍ରଜାମାନଙ୍କର ଦୁଃଖ ଦୂର କରି ଆସିଛନ୍ତି ।”

ଗୁରୁଦେବଙ୍କ କଥା ଶୁଣି ଶ୍ରୀରାମ କହିଲେ—“ହଁ, ଗୁରୁଦେବ ! ଆପଣ ଯାହା ଆଜ୍ଞା କରିବେ ମୁଁ ତଦନୁସାରେ କାର୍ଯ୍ୟ କରିବି । ମୁଁ ପ୍ରଜାମାନଙ୍କର ଦୁଃଖ ସହ୍ୟ କରି ପାରିବି ନାହିଁ । ଏମାନଙ୍କର ଅନ୍ତିମ ଇଚ୍ଛା ମୁଁ ପୂରଣ କରିବାକୁ ପ୍ରସ୍ତୁତ ଅଛି ।”

ଏହା କହି ଶ୍ରୀରାମ ପ୍ରଜାମାନଙ୍କୁ ଆଶ୍ୱସ୍ତ କରି କହିଲେ—“ତୁମେମାନେ ମୋ’ଠାରୁ କ’ଣ ଚାହୁଁଛ ?” ପ୍ରଜାମାନେ କହିଲେ—“ଆପଣ ଆମମାନଙ୍କର ପ୍ରଭୁ ତଥା ମାଲିକ ! ଆପଣ ନଦୀତଟର ଯେଉଁ ଆଶ୍ରମରେ ରହିବେ, ଆମେମାନେ ଆପଣଙ୍କ ସାଥିରେ ରହିବୁ । ଆପଣ ଆମମାନଙ୍କୁ ପରିତ୍ୟାଗ କରନ୍ତୁ ନାହିଁ ।”

ପ୍ରଜା ଓ ପୁରବାସୀଙ୍କର ବଚନ ଶୁଣି ଶ୍ରୀରାମଚନ୍ଦ୍ର ରାଜି ହୋଇଗଲେ । ତହୁଁ ସମସ୍ତେ ସେମାନଙ୍କ ସହିତ ଯିବାଲାଗି ଉଦ୍ୟତ ହୋଇଗଲେ । ଏଣେ ଲବକୁଶଙ୍କ ଅଭିଷେକପାଇଁ ସକଳ ବ୍ୟବସ୍ଥା ଶେଷ ହୋଇଗଲା । ଶ୍ରୀରାମଚନ୍ଦ୍ର ବେଦଜ୍ଞ ବ୍ରାହ୍ମଣ ଓ ମୁନିଋଷିଙ୍କ ସାହାଯ୍ୟରେ ଲବକୁଶଙ୍କ ଅଭିଷେକ ଶେଷ କଲେ । ତା’ପରେ ଘୋଡ଼ା ପଠାଇ ଶତ୍ରୁଘ୍ନଙ୍କୁ ଶୀଘ୍ର ଆସିବାପାଇଁ ଖବର ପଠାଇଲେ ।

ଶତ୍ରୁଘ୍ନ ପ୍ରଭୁଙ୍କ ବାର୍ତ୍ତା ଶୁଣି ତଥା ଶ୍ରୀରାମଙ୍କ ମହାପ୍ରୟାଣର ଖବର ପାଇ ନିଜ ବଡ଼ ପୁଅ ସୁବାହୁଙ୍କୁ ମଥୁରାରେ ତଥା ଦ୍ୱିତୀୟ ପୁତ୍ର ଶତ୍ରୁଘାତୀଙ୍କୁ ବୈଦିଶ ଦେଶରେ ଅଭିଷିକ୍ତ କରାଇ, ଧନ ସମ୍ପତ୍ତିକୁ ଉଭୟଙ୍କ ମଧ୍ୟରେ ବାଣ୍ଟିଦେଲେ ।

ସେ ଶ୍ରୀରାମଙ୍କ ଦର୍ଶନ ଲାଗି ଆକୁଳ ହୋଇ ମାର୍ଗ ମଧ୍ୟରେ ଆଦୌ ବିଶ୍ରାମ ନ କରି ଶୀଘ୍ର ଅଯୋଧ୍ୟାପୁରୀକୁ ଲେଉଟି ଆସିଲେ । ସେ କେତେଦିନ ମଧ୍ୟରେ ଅଯୋଧ୍ୟାରେ ପହଞ୍ଚି ଶ୍ରୀରାମ ଓ ଭରତଙ୍କ ପାଦପଦ୍ମ ଦର୍ଶନ କଲେ । ସେ ଲକ୍ଷ୍ମଣ ଇହଲୀଳା ସାଙ୍ଗ ସମ୍ବାଦରେ ଅତ୍ୟନ୍ତ ବିବ୍ରତ ହୋଇଗଲେ । ତାଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ଶ୍ରୀରାମ କହିଲେ—“ଶତ୍ରୁଘ୍ନ ! ତୁମେ ଚିନ୍ତା କରନାହିଁ । କାଳର ଗତିକୁ କେହି ଏଡ଼ାଇ ପାରିବ ନାହିଁ ।”

ଏହା ଶୁଣି ଶତ୍ରୁଘ୍ନ କାନ୍ଦି କାନ୍ଦି କହିଲେ—"ପ୍ରଭୋ ! ମୁଁ ଆପଣଙ୍କ ଆଜ୍ଞା କେବେହେଲେ ଏଡ଼ାଇ ଦେଇନାହିଁ । ଏପରକି, ମୁଁ ଆପଣଙ୍କ ଆଗରେ କେବେ-ହେଲେ କଥା କହି ନାହିଁ । ସବୁବେଳେ ନତମସ୍ତକ ହୋଇ କେବଳ ଆଜ୍ଞା ପାଳନ କରି ଆସିଛି । ଅଟେ ମାତ୍ରେ ଧୃଷ୍ଟତା ପ୍ରଦର୍ଶନ କରି ମୁହଁ ଖୋଲିଥିଲି । ତା'ର ଫଳରେ ମୋତେ ପ୍ରଭୁଙ୍କ ପାଦପଦ୍ମରୁ ଦୂରେଇ ରହିବାକୁ ପଡ଼ିଛି । ଆଜି ମଧ୍ୟ ଆଉଥରେ ମୁହଁ ଖୋଲୁଛି । ଆପଣ ମୋତେ କୌଣସି ନୂତନ କାର୍ଯ୍ୟରେ ନିଯୁକ୍ତ କରନ୍ତୁ ନାହିଁ । ମୁଁ ପୁଅ ଦୁହିଙ୍କୁ ରାଜ୍ୟ ଦେଇସାରି ସବୁ କାର୍ଯ୍ୟରୁ ନିବୃତ୍ତ ହୋଇ ଆସିଛି । ଆପଣ ଯେଉଁଆଡ଼େ ଯିବେ, ମୁଁ ଆପଣଙ୍କ ସାଥିରେ ଯିବି । ଏଥର ମୁଁ ଆପଣଙ୍କ ସାଙ୍ଗ ଛାଡ଼ି ପାରିବି ନାହିଁ ।"

ଶତ୍ରୁଘ୍ନର ଦୃଢ଼ତା ଦେଖି ପ୍ରଭୁ ଶ୍ରୀରାମ ତାଙ୍କୁ ମଧ୍ୟ ଅନୁମତି ଦେଇ ଦେଲେ ।

ଶ୍ରୀରାମଙ୍କ ପରଲୋକଯାତ୍ରାର ସମ୍ବାଦ ବିଜୁଳି ବେଗରେ ସର୍ବତ୍ର ପ୍ରଚାରିତ ହୋଇଗଲା । ଏହି ସମ୍ବାଦ ପାଇବା ମାତ୍ରେ ସୁଗ୍ରୀବ, ହନୁମାନ, ଜାମ୍ବବାନ ଓ ରାକ୍ଷସରାଜ ବିଭୀଷଣ ଆସି ଶ୍ରୀରାମଙ୍କ ସେବାରେ ଉପସ୍ଥିତ ହୋଇଗଲେ ।

ସୁଗ୍ରୀବ ହାତ ଯୋଡ଼ି କହିଲେ—"ପ୍ରଭୋ ! ମୁଁ ଅଙ୍ଗଦକୁ ରାଜ୍ୟରେ ଅଭିଷିକ୍ତ କରାଇ ଦେଇ ଆସିଛି । ମୋର ଆଉ କୌଣସି କାର୍ଯ୍ୟ କରିବାର ନାହିଁ । ମୋର ଏକମାତ୍ର ଇଚ୍ଛା—ମୁଁ ଆପଣଙ୍କ ସହିତ ଯିବି ! ଦୟାକରି ମୋତେ ଅନୁମତି ପ୍ରଦାନ କରନ୍ତୁ !"

ହନୁମାନ ଏ ସମ୍ବାଦରେ ଅତ୍ୟନ୍ତ ବିବ୍ରତ ହୋଇ ଉଠିଲେ । ସେ କିଛି ନିବେଦନ କରିବା ପୂର୍ବରୁ ଶ୍ରୀରାମ କହିଲେ—"ପବନନନ୍ଦନ ! ତୁମେ ଏପରି ଉଦାସ ହୋଇଛ କାହିଁକି ? ତୁମେ ମୋ'ଠାରୁ ଅଭିନ୍ନ, ଯେତେଦିନ ଯାଏ ଚନ୍ଦ୍ର ସୂର୍ଯ୍ୟ ଏ ଧରାଧାମରେ ଉଦୟାସ୍ତ ହେଉଛନ୍ତି, ସେ ପର୍ଯ୍ୟନ୍ତ ମୁଁ ଅବତାର ଗ୍ରହଣ କରି କୌଣସି ନା କୌଣସି ରୂପରେ ଏଠାକୁ ଆସୁଥିବି । ତୁମେ ମୋ' ଲୀଳାର ଏକମାତ୍ର ମୂଳସାକ୍ଷୀ ରୂପେ ଆନନ୍ଦ ମନରେ ମୋ' ଗୁଣଗାନ କରୁଥିବ । ଯେଉଁଠାରେ ମୋ' ଗୁଣଗାନ କରାଯିବ, ତୁମେ ସେଠାରେ ନିଶ୍ଚିତ ଭାବରେ ରହିଥିବ !"

ତା'ପରେ ସେ ବିଭୀଷଣଙ୍କୁ ଚାହିଁ କହିଲେ—"ରାକ୍ଷସ ରାଜ ! ମୁଁ ତୁମକୁ ଏକକଳ୍ପ ଆୟୁ ପ୍ରଦାନ କରୁଛି । ତେଣୁ ତୁମେ ଏକକଳ୍ପ ପର୍ଯ୍ୟନ୍ତ ରାକ୍ଷସମାନଙ୍କ ଅଧିପତି ରୂପେ ଶାସନ କରି ମୋ' ଗୁଣଗାନ କରୁଥିବ । ଜାମ୍ବବାନ୍, ମୟନ୍ଦ ଓ ଦ୍ୱିବିଦ କଳିଯୁଗ ପର୍ଯ୍ୟନ୍ତ ଧରାଧାମରେ ରହିବେ । ଅନ୍ୟ ବାନରମାନେ ମୋ' ସହିତ ଯାଇ ପାରନ୍ତି ।"

ସମସ୍ତେ ଶ୍ରୀରାମଙ୍କ ଆଜ୍ଞା ଶିରୋଧାର୍ଯ୍ୟ କଲେ । ଏହିପରି ଆଲୋଚନାରେ ସେ ଦିନଟି ବିତିଗଲା । ଶ୍ରୀରାମଙ୍କ ସହିତ ସମସ୍ତେ ଯିବାଲାଗି ଅନୁମତି ପାଇଥିବାରୁ, ଆନନ୍ଦ ପୂର୍ବକ ସେହି ରାତିଟି ସୁଖରେ କଟାଇଲେ ।

ପ୍ରଭାତ ହେବାମାତ୍ରେ ଶ୍ରୀରାମ ନିତ୍ୟକର୍ମରୁ ନିବୃତ୍ତ ହୋଇ ଅଗ୍ନିହୋତ୍ରରୁ ତିନି ପ୍ରକାର ଅଗ୍ନି ଅଣାଇଲେ । ଭଗବାନ ବଶିଷ୍ଠ ମହାପ୍ରସ୍ଥାନର ସମସ୍ତ ପ୍ରକ୍ରିୟା କରାଇଲେ । ତା'ପରେ ଭଗବାନ ଶ୍ରୀରାମ ବ୍ରାହ୍ମଣ, ଋଷି ଓ ଗୁରୁଜନଙ୍କ ପାଦବନ୍ଦନା କଲେ । ତା'ପରେ ସେ ସମସ୍ତଙ୍କଠାରୁ ଅନୁମତି ନେଇ ରାଜମହଲରୁ ମହାପ୍ରସ୍ଥାନ ଲାଗି ବାହାରି ପଡ଼ିଲେ ।

ଶ୍ରୀରାମଚନ୍ଦ୍ର ପୀତବସ୍ତ୍ର ଧାରଣ କରିଥିଲେ । ତାଙ୍କ ଆଗରେ ବେଦଜ୍ଞ ବ୍ରାହ୍ମଣମାନେ ବେଦପାଠ କରି ଆଗେଇ ଚାଲିଲେ । ତାଙ୍କ ପଛେ ପଛେ ସମସ୍ତ ପ୍ରଜା, ବାନର ତଥା ଅନ୍ୟାନ୍ୟମାନେ ଚାଲିଥିଲେ । ସେ ଅତ୍ୟନ୍ତ ଗମ୍ଭୀର ଭାବରେ ଚାଲିଥିଲେ । ସେ ଶିରରେ ଛତ୍ର କିମ୍ବା ପାଦରେ ପାଦତ୍ରାଣ (ଯୋତା) ଧାରଣ କରି ନଥିଲେ । ସେ ମୌନବ୍ରତ ଆଚରଣ କରି ଚାଲିଥିଲେ । ସେତେବେଳେ ତାଙ୍କର ତେଜ ଅସହ୍ୟ ହୋଇ ଉଠିଥିଲା । ସେ କୌଣସି ପ୍ରକାର ସାଂସାରିକ ଚେଷ୍ଟା କରି ନଥିଲେ । ତାଙ୍କ ଦକ୍ଷିଣ ପାର୍ଶ୍ୱରେ ମୂର୍ତ୍ତିମତୀ ଶ୍ରୀ ଓ ପଦ୍ମ ଏବଂ ବାମ ଭାଗରେ ଭୂଦେବୀ ଚାଲୁଥିଲେ । ତାଙ୍କର ସଂହାରକାରିଣୀ ଶକ୍ତି ସମ୍ମୁଖରେ ମୂର୍ତ୍ତିମତୀ ହୋଇ ଆଗେଇ ଚାଲିଥିଲେ ଏବଂ ତାଙ୍କର ସମସ୍ତ ଅସ୍ତ୍ରଶସ୍ତ୍ର ମଧ୍ୟ ସାକ୍ଷାତ୍ ମନୁଷ୍ୟ ସ୍ୱରୂପ ଧାରଣ କରି ତାଙ୍କୁ ଚାରିଦିଗରୁ ଘେରି ଚାଲିଥିଲେ । ବେଦମାତା ଗାୟତ୍ରୀ, ଓଁକାର ବଷଟ୍‌କାର ଆଦି ବିପ୍ରବେଶରେ ଶ୍ରୀରାମଙ୍କ ଆଗେ ଆଗେ ଚାଲିଥିଲେ । ସେତେବେଳେ ମନେ ହେଉଥିଲା—ଯେତେ ଯେପରି, ସ୍ୱର୍ଗର ଦ୍ୱାର ସମସ୍ତଙ୍କପାଇଁ ଉନ୍ମୁକ୍ତ । ତେଣୁ ସମସ୍ତେ ଉତ୍କଣ୍ଠାର ସହିତ ଶ୍ରୀରାମଙ୍କ ଶ୍ରୀଚରଣର ଅନୁଗମନ କରୁଥିଲେ । ମୁନି, ଋଷି, ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର, ବାଳକ, ବୃଦ୍ଧ, ଯୁବା, ଦାସଦାସୀ, ଅନ୍ତଃପୁରର ସେବକ ଆଦି ସମସ୍ତେ ଆନନ୍ଦିତ ମନରେ ଶ୍ରୀରାମଙ୍କ ସହିତ ଚାଲୁଥିଲେ । ସୁପୂଜିତ ଅଗ୍ନିହୋତ୍ରର ବୈଶ୍ୱାନର ତାଙ୍କ ସହିତ ଚାଲୁଥିଲା । ମନୁଷ୍ୟମାନଙ୍କ କଥା ପଚାରେ କିଏ, ପଶୁପକ୍ଷୀ ମଧ୍ୟ ସ୍ନେହପୂର୍ବକ ଶ୍ରୀରାମଙ୍କ ସହିତ ଚାଲୁଥିଲେ । ଆଉ ଅଧିକ କ'ଣ କୁହାଯିବ; ସେତେବେଳେ ଅଯୋଧ୍ୟାର ସମସ୍ତ ବ୍ୟକ୍ତି ଶ୍ରୀରାମଙ୍କୁ ଅନୁଗମନ କରୁଥିଲେ । ଯେଉଁମାନେ ଅନ୍ୟାନ୍ୟ କାମରେ ଅନ୍ୟତ୍ର ଯାଇଥିଲେ, ସେମାନେ ମଧ୍ୟ ନିଜ ନିଜ କାମଧନ୍ଦା ଛାଡ଼ିଦେଇ ଶ୍ରୀରାମଙ୍କ ପଛେ ପଛେ ଗୋଡ଼ାଇଲେ ।

ଏହିପରି ଭାବରେ ଶ୍ରୀରାମ ଯାଇ ସରଯୂନଦୀର 'ଗୋପ୍ରତାର ଘାଟ' ନିକଟରେ ପହଞ୍ଚିଲେ । ସେତେବେଳେ ମନେ ହେଉଥିଲା—ଯେତେ ଯେପରି ମାତା

ସରଯୂ ଶ୍ରୀରାମଙ୍କୁ କୋଳରେ ଧାରଣ କରିବାପାଇଁ ଅତ୍ୟନ୍ତ ଗମ୍ଭୀର ହୋଇ ଯାଇଥିଲେ । ତଥାପି ମନେ ହେଉଥିଲା—ତାଙ୍କର ସେହି ଗମ୍ଭୀରତା ମଧ୍ୟରେ ଆନନ୍ଦର ଉତ୍ସ ପ୍ରବାହିତ ହେଉଛି । ଶ୍ରୀରାମ ଆଗେଇ ଯାଇ ହୃଷ୍ଟସଲିଳା ସରଯୂ ମଧ୍ୟରେ ପ୍ରବେଶ କଲେ ।

ଠିକ୍ ସେତିକିବେଳେ ଲୋକପିତାମହ ବ୍ରହ୍ମା ଲକ୍ଷ ଲକ୍ଷ ଦିବ୍ୟ ବିମାନ ସହିତ ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ସ୍ୱାଗତ ନିମିତ୍ତ ସେଠାରେ ଉପସ୍ଥିତ ଥିଲେ ।

ସେ ବ୍ରହ୍ମାଙ୍କ ସ୍ୱାଗତ ସମ୍ବର୍ଦ୍ଧନାରେ ପ୍ରୀତ ହୋଇ ନିଜ ଭାଇମାନଙ୍କ ସହିତ ପରମ ବୈଷ୍ଣବ ଧାମକୁ ପ୍ରସ୍ଥାନ କଲେ ।

ମହର୍ଷି ସୂତ କହିଲେ—"ହେ ମୁନିଗଣ ! ଶ୍ରୀରାମ ସଶରୀରରେ ଦିବ୍ୟଧାମକୁ ଯାତ୍ରା କରୁଥିବା ବେଳେ ସାଧ୍ୟ, ମରୁତ, ଚାରଣ, ଇନ୍ଦ୍ର ଓ ଅଗ୍ନି ଆଦି ତାଙ୍କ ସ୍ତୁତି କରିବାକୁ ଲାଗିଲେ । ଅପ୍ସରାଗଣ ନୃତ୍ୟ ଓ ଗନ୍ଧର୍ବମାନେ ଗୀତଗାନ କରୁଥିଲେ ।"

## ଛପ୍‌ପୟ

"ଅବଧ ପୁରୀ ତେଂ ସକଲ ଚଲେ ସିନ୍ଧୁପନ୍ଥହିଁ ଘାର ଉର ।
ନିଖିଲ ଜୀବ ନିର୍ମୁକ୍ତ ଭୟେ ସବ ଶୂନ୍ୟ ଭୟୋ ପର ॥
କୀୟୋ ପ୍ରଭୁପଦ ପ୍ରେମ ସଫଲ ତନୁ ଜନନେ କୀନ୍ହୋ ।
ଜଗଜୀବନ କୋ ଲଭ ଜଥ ଗଥ ଜନହୀ ଲୀନ୍ହୋ ॥
ବିଧି ବିମାନ ଅଗଣିତ ଲୟେ, ସରଯୂ ତଟ ଆୟେ ତୁରତ ।
ବୈଠୀ ପଧାରେ ପରମପଦ, ରଘୁନନ୍ଦନ ନିଜ ଜନ ସହିତ ॥"



# ଅନନ୍ୟ ଜୀବଙ୍କ ପରମ ଗତି

"ସ ଯୈଃ ସ୍ପୃଷ୍ଟୋଽଭି ଦୃଷ୍ଟୋ ବା ସଂବିଷ୍ଟୋଽନୁଗତୋଽପିବା ।
କୋଶଳାସ୍ତେ ଯଯୁଃ ସ୍ଥାନଂ ଯତ୍ର ଗଚ୍ଛନ୍ତି ଯୋଗିନଃ ॥"
(ଶ୍ରୀଭା ୯ସ୍କ, ୧୧ଅ, ୨୨ଶ୍ଳୋକ)

## ଛପ୍‌ପୟ

"ଜିହ୍ନ ପଦ ପାବନ ହେତୁ କରହୁଁ ଜପଯୋଗ ବିରାଗୀ ।
ବିବିଧ ଘାଁତ ତନୁ କସହୁଁ ତେଜ ଯୁତ ତପସୀ ତ୍ୟାଗୀ ॥
ସୋ ପଦ ପାୟୋ ସହଜ ଅବଧବାସୀ ଜୀବନ ନେ ।
ରାମ କୃପା ତେଂ ଲୋକ ଉତ୍ତମ ପାୟୋ ଜନ ନେ ॥
ପଙ୍କୋ ପକରେଂ ପ୍ରେମ ତେଂ, ଆତ୍ମ ସମରପନ ଜେ କରହୁଁ ।
ତେ ତପ ତୀରଥ ଯୋଗ ବିନୁ, ଭବସାଗର ଛନ ମହୁଁ ତରହୁଁ ॥"

ଅର୍ଥାତ୍ ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କୁ ଯେଉଁମାନେ ସ୍ପର୍ଶ କରିଥିଲେ, ଯେଉଁମାନେ ଦର୍ଶନ କରିଥିଲେ, ଯେଉଁମାନେ ତାଙ୍କ ସାହଚର୍ଯ୍ୟ ଲାଭ କରିଥିଲେ ଏବଂ ଯେଉଁମାନେ ଅନୁଗମନ କରୁଥିଲେ, ସେହି ସକଳ ଅଯୋଧ୍ୟାବାସୀ; ପ୍ରସିଦ୍ଧ ଯୋଗୀମାନେ ଯେଉଁ ସ୍ଥାନକୁ ଗମନ କରୁଥିଲେ, ସେହି ସ୍ଥାନ ଲାଭ କରିଥିଲେ ।"

ବର୍ଷା ପରେ ନଦୀ ତଟରେ ଅନେକ ବୃକ୍ଷ-ଲତା ଉତ୍ପନ୍ନ ହୁଅନ୍ତି । ନାନା-ପ୍ରକାର କଣ୍ଟା, ଘାସ, ଲତା ଆଦି ମଧ୍ୟ ସେଠାରେ ଉତ୍ପନ୍ନ ହୁଅନ୍ତି । କେହି ନଦୀତଟରେ କିଛି ଉତ୍ସବ କଲେ ସେମାନେ ପ୍ରଥମେ ସେହି ଭୂମିକୁ ପରିଷ୍କାର କରିଥା'ନ୍ତି । ଏହି ସମୟରେ ଯଦି ନଦୀରେ ବନ୍ୟା ଆସିଯାଏ, ତେବେ ବିନା ପରିଶ୍ରମରେ ନଦୀତଟ ପରିଷ୍କୃତ ହୋଇଯାଏ ।

ସେହିପରି ଯେଉଁ ସମୟରେ ଈଶ୍ୱର ଅବତାର ଗ୍ରହଣ କରନ୍ତି, ସେ ନିଜ ପ୍ରଭାବରେ ନିଜ ଅନୁଗାମୀମାନଙ୍କୁ ସଂସାର-ସାଗରରୁ ଉଦ୍ଧାର କରାଇ ଦିଅନ୍ତି । କେବଳ ମନୁଷ୍ୟ କାହିଁକି, ସେ ମହାତ୍ମାମାନଙ୍କ ପବିତ୍ର ପ୍ରଭାବ ଫଳରେ କୀଟ ପତଙ୍ଗ ମଧ୍ୟ ଭବବନ୍ଧନକୁ ଅନାୟାସରେ ପାର କରି ଯାଆନ୍ତି ।

ଶ୍ରୀସୂତ କହିଲେ—"ହେ ମୁନିଗଣ, ଭଗବାନ ଶ୍ରୀରାମଚନ୍ଦ୍ର ସଶରୀରରେ ବୈକୁଣ୍ଠଲୋକକୁ ଚାଲିଗଲେ । ଅନ୍ୟମାନେ ମଧ୍ୟ ସରଯୂର ପବିତ୍ରଜଳରେ ଦେହତ୍ୟାଗ କରିଥିଲେ । ଏହା ଦେଖି ଶ୍ରୀରାମ ବ୍ରହ୍ମାଙ୍କୁ କହିଲେ—"ମୋତେ ଅନୁସରଣ କରିଥିବା ସମସ୍ତ ପ୍ରାଣୀଙ୍କୁ ଦିବ୍ୟଧାମ ମିଳିବା ଉଚିତ ଏବଂ ଆଜିଠାରୁ ସରଯୂର 'ଗୋପ୍ରତାର ଘାଟ'ରେ ଜଳସ୍ପର୍ଶ କରୁଥିବା ପ୍ରାଣୀ କର୍ମବନ୍ଧନରୁ ମୁକ୍ତ ହୋଇଯିବେ ।"

ଏହାଶୁଣି ବ୍ରହ୍ମା କହିଲେ—"ପ୍ରଭୋ ! ଆପଣ ସକଳ ପ୍ରାଣୀଙ୍କର ଏକମାତ୍ର ଗତି ଅଟନ୍ତି । ଆପଣ ଯାହାକୁ ଯେଉଁ ଧାମ ଦେବାକୁ ଚାହାନ୍ତି, ଦେଇପାରନ୍ତି । ଏହି କୀଟପତଙ୍ଗ ଆଦି ସମସ୍ତେ 'ସନ୍ତାନକ' ଲୋକକୁ ଯାଆନ୍ତୁ । ଏହି ଲୋକ 'ବ୍ରହ୍ମଲୋକ' ପରି ଅତ୍ୟନ୍ତ ପବିତ୍ର ତଥା ସନାତନ ଅଟେ । ଏହି ମର୍କଟ ଓ ଭଲ୍ଲୁକମାନେ ଶରୀର-ତ୍ୟାଗ ପୂର୍ବକ ନିଜ ନିଜର ପୂର୍ବ ଅଂଶରେ ମିଳିତ ହୋଇ ଯାଆନ୍ତୁ । ସୁଗ୍ରୀବ ସୂର୍ଯ୍ୟଙ୍କ ଅଂଶରେ ତଥା ଅନ୍ୟାନ୍ୟ ବାନରମାନେ ନିଜ ନିଜ ଅଂଶରେ ଏକୀଭୂତ ହୋଇ ଯାଆନ୍ତୁ ।"

ବ୍ରହ୍ମାଙ୍କ କଥାକୁ ଶ୍ରୀରାମ ଅନୁମୋଦନ କଲେ । ବ୍ରହ୍ମା ନିଜ ସଙ୍ଗରେ ଅସଂଖ୍ୟ ବିମାନ ଆଣିଥିଲେ । ଯେଉଁମାନେ ସରଯୂରେ ଦେହତ୍ୟାଗ କରୁଥିଲେ, ସେମାନେ ଯାଇ ଦିବ୍ୟବିମାନରେ ଆରୋହଣ କରୁଥିଲେ ।

ସେ ସମୟର ଦୃଶ୍ୟ ଥିଲା—ଅତ୍ୟନ୍ତ ମନୋରମ ତଥା କରୁଣାପୂର୍ଣ୍ଣ । ଲୋକମାନେ ଶ୍ରୀରାମଙ୍କ ନାମ ମୁଖରେ ଉଚ୍ଚାରଣ କରି, ଆଖିରୁ ପ୍ରେମାଶ୍ରୁ ଝରାଇବା ସଙ୍ଗେ ସଙ୍ଗେ, ଆଗ୍ରହରେ ସରଯୂରେ ଡ଼ିଆଁ ଦେଉଥିଲେ । ସେମାନଙ୍କର ପାର୍ଥିବ ଶରୀର ପ୍ରାଣହୀନ ହୋଇ ସରଯୂରେ ଭାସୁଥିଲା ଏବଂ ସେମାନଙ୍କ ଆତ୍ମା ଦିବ୍ୟବିମାନରେ ବସି ପରମଧାମକୁ ଚାଲିଯାଉଥିଲେ । ଏହିପରି ଭାବରେ ଅଯୋଧ୍ୟାର ଲୋକମାନେ ପରମପଦ ପାଇଥିଲେ ।

ଏହାପରେ ଶୌନକ ପଚାରିଲେ—"ସୂତ ମହର୍ଷି ! ଅଯୋଧ୍ୟାରେ ସେତେବେଳେ ଲବକୁଶ କାହାକୁ ନେଇ ରାଜତ୍ୱ କଲେ ? ଆପଣଙ୍କ କହିବା ଅନୁସାରେ ଯଦି ସମସ୍ତେ ସରଯୂରେ ଝାସଦେଲେ, ତେବେ ଆଉ ଅଯୋଧ୍ୟାରେ ରହିଲେ କେଉଁମାନେ ?"

ଏହାଶୁଣି ସୂତମୁନି କହିଲେ—"ହେ ମୁନିଗଣ ! ରାମଚନ୍ଦ୍ର ସର୍ବଜ୍ଞ । ସେ ପୂର୍ବରୁ କୁଶକୁ କୋଶଳ ଦେଶର ରାଜା କରି ବସାଇ ଦେଇଥିଲେ । ସେହି ନଗରୀର ରାଜଧାନୀ ଥିଲା—ବିନ୍ଧ୍ୟପର୍ବତର ପାଦଦେଶରେ ଥିବା କୁଶାବତୀ । କୁଶ ଶ୍ରୀରାମଙ୍କ ଆଜ୍ଞା ମାନି କୁଶାବତୀ ନଗରୀକୁ ଚାଲିଗଲେ ଏବଂ ସେଠାରେ ମନ୍ତ୍ରୀ ଓ ପୁରୋହିତଙ୍କ ଗହଣରେ ରହିଥିଲେ । ସେହିପରି ଭାବରେ ଲବକୁ ଶ୍ରୀରାମ ଉତ୍ତର କୋଶଳରେ ରାଜା କରାଇଥିଲେ । ଉତ୍ତର କୋଶଳର ରାଜଧାନୀ ଥିଲା—ଶ୍ରୀବସ୍ତୀ । ସେ ମଧ୍ୟ ଶ୍ରୀବସ୍ତୀ ନଗରୀରେ ରହୁଥିଲେ । ଶ୍ରୀରାମ ଆହୁରି ମଧ୍ୟ ଆଜ୍ଞା ଦେଇଥିଲେ ଯେ, ତାଙ୍କ ମହାପ୍ରୟାଣ ସମୟରେ ଅଯୋଧ୍ୟାରେ କେହି ରହିବେ ନାହିଁ । ତେଣୁ କୁଶ ଲବ ଆଦି ଆଠଜଣଙ୍କ ମଧ୍ୟରୁ କେହି ଜଣେହେଲେ ପୁଣି ସେତେବେଳେ ଅଯୋଧ୍ୟାରେ ନଥିଲେ । ଶ୍ରୀରାମଚନ୍ଦ୍ର ସମଗ୍ର ଅଯୋଧ୍ୟାପୁରୀକୁ ଶୂନ୍ୟ କରି ପରମଧାମକୁ ଯାତ୍ରା କରିଥିଲେ । ଅନେକ ଦିନ ପର୍ଯ୍ୟନ୍ତ ଅଯୋଧ୍ୟାପୁରୀ ଶ୍ରୀରାମଙ୍କ ବିୟୋଗ ପରେ ଶୂନ୍ୟ ହୋଇ ପଡ଼ିଥିଲା । ସେଠାରେ ଘୋର ଜଙ୍ଗଲ ସୃଷ୍ଟି ହୋଇଗଲା । ତା'ପରେ ରଘୁବଂଶୀୟ ରାଜାମାନେ ଆସି ତା'ର ପୁନରୁଦ୍ଧାର କରିଥିଲେ । ଏହିପରି ଭାବରେ ଶ୍ରୀରାମଚନ୍ଦ୍ର ତେରହଜାର ବର୍ଷ ପର୍ଯ୍ୟନ୍ତ ଲୀଳା ଶେଷ କରି, 'ନରନାଟ୍ୟ' ଶେଷ ପୂର୍ବକ ପରମଧାମକୁ ଯାତ୍ରା କରିଥିଲେ ।

ଏହାଶୁଣି ଶୌନକ କହିଲେ—"ସୂତ ମହୋଦୟ ! ଆପଣ ଆଖ୍ୟାନ ଶେଷରେ ମୁନିମାନଙ୍କ ସମ୍ବନ୍ଧରେ କିଛି କହିଲେ ନାହିଁ । ଆମର ପରମ୍ପରା ରହିଛି—ପରିସମାପ୍ତି ଅଧ୍ୟାୟ ଯେତେ କରୁଣରସ ପୂର୍ଣ୍ଣ ହେଉନା କାହିଁକି, ଶେଷରେ ସୁଖମୟ ବୃତ୍ତାନ୍ତର ଆଲୋଚନା କରାଯାଏ । ନାୟକଙ୍କ ବିୟୋଗ ବର୍ଣ୍ଣନା କରିବା ପରେ ମଧ୍ୟ କୌଣସି ସୂତ୍ରରେ ତାଙ୍କର ସଂଯୋଗ ବର୍ଣ୍ଣନା କରିବା ଉଚିତ ହେବ । କାରଣ, ଆମ ଭାରତୀୟ କାବ୍ୟ ଓ ନାଟକର ପରମ୍ପରାରେ କୌଣସି ବିଷୟ ବିୟୋଗାନ୍ତ ହେବା ଆଦୌ ଉଚିତ ନୁହେଁ । କିନ୍ତୁ ଆପଣ ଏହି ଆଖ୍ୟାନଟିକୁ ଅତ୍ୟନ୍ତ କରୁଣରସରେ ଆପ୍ଳୁତ କରାଇ ପରିସମାପ୍ତି ଦେଖାଇ ଅଛନ୍ତି ।"

ଏହାଶୁଣି ସୂତମୁନି କହିଲେ—"ମହର୍ଷିବୃନ୍ଦ ! ଶ୍ରୀରାମ ସାଧାରଣ ନାୟକ ଓ ସୀତାଦେବୀ ସାଧାରଣ ନାୟିକା ନଥିଲେ । ସେ ଥିଲେ—ଜଗନ୍ନିୟନ୍ତା ! ସେ ଏହି ଚରାଚର ଜଗତରେ ଏକମାତ୍ର ସୂତ୍ରଧର ଅଟନ୍ତି । ସୀତାଦେବୀ ମଧ୍ୟ ନିତ୍ୟାଶକ୍ତି ତଥା ସେ ସର୍ବଦା ଶ୍ରୀରାମଙ୍କ ପାଖେ ପାଖେ ଥାଆନ୍ତି । ସେ କେବେହେଲେ ଶ୍ରୀରାମଙ୍କଠାରୁ ପୃଥକ୍ ହୁଅନ୍ତି ନାହିଁ । ଅଯୋଧ୍ୟାପୁରୀ ମଧ୍ୟ କେବେହେଲେ ଶୂନ୍ୟ ହୋଇନାହିଁ କିମ୍ବା ହେବନାହିଁ । ପ୍ରଭୁ ତାଙ୍କ ଧାମକୁ କେବେହେଲେ ପରିତ୍ୟାଗ କରିପାରିବେ ନାହିଁ । ତ୍ରେତୟାଯୁଗର ଚୈତ୍ର ଶୁକ୍ଳ ନବମୀରେ ଶ୍ରୀରାମ ଜନ୍ମ ହୋଇଥିଲେ ତା'ନୁହେଁ; ପ୍ରତ୍ୟେକ ତ୍ରେତାଯୁଗରେ ସେ ଅବତାର ଗ୍ରହଣ କରୁଛନ୍ତି ଏବଂ ତା' ବ୍ୟତୀତ

ଧରାଧାମରେ ଯେତେବେଳେ ଚୈତ୍ର ଶୁକ୍ଳ ନବମୀ ହେଉଛି ସେଦିନ ଶ୍ରୀରାମ ସ୍ୱରୂପ ଧାରଣ କରି ଅବତୀର୍ଣ୍ଣ ହେଉଛନ୍ତି । ତାଙ୍କ ଜନ୍ମ, ବାଲଲୀଳା, ବିବାହ ଆଦି ସମସ୍ତ ଚରିତ ନିତ୍ୟ । ଶ୍ରୀରାମ କେବେହେଲେ ବୃଦ୍ଧତ୍ୱ ଲାଭ କରି ନାହାନ୍ତି । ସେ ଚିର ସୁନ୍ଦର ! ଚିର ଶ୍ୟାମଳ !! ତାଙ୍କ ଅବସ୍ଥାରେ କେବେହେଲେ କୌଣସି ପ୍ରକାର ପରିବର୍ତ୍ତନ ହୁଏ ନାହିଁ । କାରଣ, ତାଙ୍କ ଶରୀର ଅପ୍ରାକୃତ ଉପାଦାନରେ ଗଠିତ । ତେଣୁ ସେ ଚିନ୍ମୟ ! ତେଣୁ ତାଙ୍କ ନାମ ଓ ଲୀଳା ପରି ତାଙ୍କ ରୂପ ମଧ୍ୟ ନିତ୍ୟ । ସେହିପରି ସୀତାଦେବୀ ମଧ୍ୟ ନିତ୍ୟ କିଶୋରୀ । ଏହି ଯୁଗଲମୂର୍ତ୍ତି ଅଯୋଧ୍ୟାର କମନୀୟ କନକ ମହଲରେ ସଦା ମନୋରମ କ୍ରୀଡ଼ାରେ ମଗ୍ନ । ସେବିକାମାନେ ସଦାସର୍ବଦା ତାଙ୍କ ସେବାରେ ଲାଗିରହିଛନ୍ତି । ସେହି ନିତ୍ୟସଖୀ ଓ ସେବିକାମାନେ ଧନ୍ୟ ! ଧନ୍ୟ ସେମାନଙ୍କ ସୌଭାଗ୍ୟ !!!

ତହୁଁ ଶୌନକ କହିଲେ—"ହେ ମହାଭାଗ ! ଏହି 'ଗୁପ୍ତଗୋଷ୍ଠଲୀଳା' ଶୁଣିବା ପରେ ଆମେମାନେ ଉଦ୍‌ବିଗ୍ନ ହୋଇ ଉଠିଛୁ । ଆପଣ ପୁଣିଥରେ ସେହି ଚରିତ ଆମ ଆଗରେ ସଂକ୍ଷେପରେ ବର୍ଣ୍ଣନା କରନ୍ତୁ ।"

ଏହାଶୁଣି ସୂତମୁନି କହିଲେ—"ଏହାପରେ ମୁଁ ସୁଖାନ୍ତ ରାମଚରିତ ବର୍ଣ୍ଣନା କରି ଏହି ଆଖ୍ୟାନ ଶେଷ କରିବି ।"

## ଛପ୍‌ପୟ

**"ବିରହମାହିଁ ଅବସାନ ଚରିତ ରଘୁନନ୍ଦନ କୋ ସୁନି ।**
**ଶୌନକ ଅତି ଇ ଦୁଃଖିତ ସୂତଜୀ ତେଂ ବୋଲେ ପୁନି ॥**
**ସୂତ ! ଚରିତ ଦୁଃଖାନ୍ତ ନେକ ନହିଁ ହମହିଁ ସୁହାଓେ ।**
**ସୁମିରି ରାମ ନିର୍ବାଣ ହୃଦୟ ପୁନି ପୁନି ଭରି ଆଓେ ॥**
**ସବ ସୁନି ବୋଲେ ସୁତଜୀ, ମୁନିବର ! ରାମ ଅଖଣ୍ଡ ଅଜ ।**
**ଜନକୀ ଆଦ୍ୟାଶକ୍ତି ହିୟ, କାହୁଁ କବହୁଁ ନହୁଁ ତନହୁଁ ତଜ ॥"**



# ସୁଖାନ୍ତ ରାମଚରିତ

"ଧୂପଦୀପୈଃ ସୁରଭିଭିର୍ମଣ୍ଡିତଂ ପୁଷ୍ପମଣ୍ଡନୈଃ ।
ସ୍ତ୍ରୀପୁଂଭିଃ ସୁରସଙ୍କାଶୈର୍ଜୁଷ୍ଟଂ ଭୂଷଣ ଭୂଷଣୈଃ ॥
ତସ୍ମିନ୍ ସ ଭଗବାନ୍ ରାମ ସ୍ନିଗ୍ଧୟା ପ୍ରିୟୟେଷ୍ଟୟା ।
ରେମେ ସ୍ୱାରାମଧୀରାଣାମୃଷଭଃ ସୀତୟା କିଲ ॥"

(ଶ୍ରୀଭା. ୯ସ୍କ, ୧୧ଅ, ୩୪,୩୫ ଶ୍ଲୋକ)

## ଛପ୍ପୟ

"ସୁନହୁ ସୁଖାନ୍ତ ଚରିତ୍ର ରାମ ସ୍ୱାମୀ ତ୍ରିଭୁବନ କେ ।
ଭରତ ଲଖନ ରିପୁଦଲନ ରହେ ଆଜ୍ଞାମହଁ ଜିନକେ ॥
ଜିନ୍ହକୁଁ ସରବସୁ ସମୁଝି ସଦା ସୀୟା ସୁଖ ପାୱେ ॥
ରାମ ନିରଖି ସୀୟ କମଲ ବଦନ ଛିନ ଛିନ ହରଷାୱେ ॥
କନକ ଭବନ ଅତିହି ସୁଘର, ସବ ସାମଗ୍ରୀ ସୁଖଦ ଜହଁ ।
ହରଷିତ ହ୍ୱୈ ରଘୁବଂଶମଣି, ରମନ କରହିଁ ସୀୟ ସଙ୍ଗ ତହଁ ॥"

ଅର୍ଥାତ୍ ଶ୍ରୀ ଶୁକଦେବ କହିଲେ—ହେ ରାଜନ୍ ! ଶ୍ରୀରାମଙ୍କ କନକ ମଣ୍ଡିତ ଭବନକୁ ସେବକମାନେ ଧୂପଦୀପ, ପୁଷ୍ପ ତଥା ବିବିଧ ଆଭୂଷଣରେ ସଜାଇଥିଲେ । ଆଭୂଷଣ ଗୁଡ଼ିକ ଶ୍ରୀରାମଙ୍କ ପାଇଁ ସ୍ୱୟଂ ଅଭୂଷିତ ହୋଇଥିଲେ । ସେଠାରେ ରହୁଥିବା ଦାସ ଦାସୀଗଣ ଦେବତାଙ୍କ ପରି ସୁନ୍ଦରି ଥିଲେ । ସେହି ଭବ୍ୟ ଭବନରେ ପୁରୁଷଶ୍ରେଷ୍ଠ ଆତ୍ମାରାମ ଜିତେନ୍ଦ୍ରିୟ ଭଗବାନ ରାମ ନିଜର ପ୍ରିୟତମା ପତ୍ନୀଙ୍କ ସହିତ କ୍ରୀଡ଼ା କରୁଥିଲେ ।

ମନୁଷ୍ୟ ଯାହା ଖାଇବାକୁ ଭଲ ପାଏ, ତାହାକୁ ପରମେଶ୍ୱରଙ୍କୁ ନୈବେଦ୍ୟ ରୂପେ ଅର୍ପଣ କରେ । ଯେଉଁ ସମ୍ବନ୍ଧ ତା'ର ପ୍ରିୟ, ସେ ସେହି ସମ୍ବନ୍ଧ ପରମେଶ୍ୱରଙ୍କ-ଠାରେ ସ୍ଥାପିତ କରଥାଏ, ଭଗବାନ ସନ୍ତଙ୍କର ସ୍ୱାମୀ । ସଂସାରରେ ପାଞ୍ଚପ୍ରକାର

ସମ୍ବନ୍ଧ ରହିଛି । ତା' ହେଉଛି—ଈଶ୍ବର ଓ ଜୀବର ସମ୍ବନ୍ଧ, ମିତ୍ରର ସମ୍ବନ୍ଧ, ସ୍ବାମୀ ଓ ସେବକ ସମ୍ବନ୍ଧ, ପୁତ୍ର ଓ ପିତା ସମ୍ବନ୍ଧ ତଥା ପତି ପତ୍ନୀ ସମ୍ବନ୍ଧ । ସାଂସାରିକ ସମ୍ବନ୍ଧ ଶରୀର ସହିତ ନଷ୍ଟ ହୋଇଯାଏ; କିନ୍ତୁ ଭଗବାନଙ୍କର ଶ୍ରୀବିଗ୍ରହ ଚିନ୍ମୟ ଅଟେ । ତାହା କେବେହେଲେ ନଷ୍ଟ ହୁଏ ନାହିଁ । ତେଣୁ ଭଗବାନ୍‌ଙ୍କ ସହିତ ଯେଉଁ ସମ୍ବନ୍ଧ, ତାହା ଚିରସ୍ଥାୟୀ ଅଟେ । ଯେ ଭଗବାନ୍‌ଙ୍କୁ ଯେଉଁ ଭାବରେ ଭଜନା କରେ, ପ୍ରଭୁ ତାହାକୁ ସେହି ଭାବରେ ଗ୍ରହଣ କରନ୍ତି ।

ସୂତ କହିଲେ—"ହେ ମୁନିଗଣ ! ଶ୍ରୀରାମ ଅଯୋଧ୍ୟାରେ ବାଳକ ରୂପେ ଜନ୍ମିଥିବାରୁ, ଆପଣମାନେ କେହିହୁଏ ଭାବୁଥିବେ, ସେ ଆଗରୁ ଅଯୋଧ୍ୟାରେ ନଥିଲେ, ଦଶରଥ ଓ କୌଶଲ୍ୟାଙ୍କ କୋଳ ମଣ୍ଡନ କରି ସର୍ବପ୍ରଥମେ ସେଠାରେ ଅବତୀର୍ଣ୍ଣ ହେଲେ । ତାହା ଠିକ୍ ନୁହେଁ ! ସେ ସଦା ଅଯୋଧ୍ୟାରେ ନିବାସ କରୁଥିଲେ । ଆବିର୍ଭାବ ଓ ତିରୋଭାବ କେବଳ ଅଭିବ୍ୟକ୍ତି ମାତ୍ର । ସେ ମହାରାଜ ଦଶରଥଙ୍କ ପାଟରାଣୀ କୌଶଲ୍ୟାଙ୍କ ଗର୍ଭରୁ ଉତ୍ପନ୍ନ ହୋଇଥିଲେ । ଶେଷ ତିନି ଅଂଶ କୈକେୟୀ ଓ ସୁମିତ୍ରାଙ୍କ ଗର୍ଭରୁ ଜାତ ହୋଇଥିଲେ । ବାଳଲୀଳା ସମୟରେ ଶ୍ରୀରାମ ଆଦି ଭ୍ରାତୃଗଣ କୌତୁକର ସହିତ ଏଣେତେଣେ ଖେଳିବାକୁ ଲାଗିଲେ । ସେ ହସି, ଖେଳି, କୁଦି, ନାଚି, କାନ୍ଦି ନିଜର ସମସ୍ତ ଲୀଳା କରିବାକୁ ଲାଗିଲେ । ଏ କୋଳରୁ ସେ କୋଳ, ଏ' କାନ୍ଧରୁ ସେ କାନ୍ଧ ହୋଇ ସେ ସମସ୍ତଙ୍କ ମନୋରଞ୍ଜନ କରୁଥିଲେ । ସେ ବାଳଲୀଳା କରୁଥିବା ସମୟରେ ମାତାଙ୍କୁ ଅନେକ ହଇରାଣ କରୁଥିଲେ । ବେଳେ ବେଳେ ଖାଇବା ସମୟରେ ସେ ମାତାଙ୍କୁ ଆଦୌ ଧରି ଦେଉ ନଥିଲେ । ଦୂରରେ ଥାଇ ହାତ ବଢ଼ାଇ ଧରି ଦେବା ଭଳି ଛଳନା କରୁଥିଲେ କିନ୍ତୁ ମାତା କୌଶଲ୍ୟା ପାଖକୁ ଗଲେ ସେ ପୁଣି ଦୌଡ଼ି ପଳାଉଥିଲେ । ସେ ଭରତ ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କୁ ତାଙ୍କ ଖେଳରେ ମାତି ଯାଉଥିଲେ ।"

ଶୌନକ ପଚାରିଲେ—"ମୁନିବର ! ସେ ଭଗବାନ୍ ହୋଇ ଏପରି କାହିଁକି କରୁଥିଲେ ?"

ଏହା ଉତ୍ତର ଦେଇ ସୂତ ମୁନି କହିଲେ—"ପରମେଶ୍ବରଙ୍କର ସବୁକାମ ସୁନ୍ଦର ! ସେ ଯାହା କରିବେ, ତାହା ହିଁ କରି ପାରିବେ । ତାଙ୍କର ହସ, ଖେଳ, କୌତୁକ, ରଙ୍ଗ, ରହସ୍ୟ ସବୁକିଛି ମନକୁ ମୋହିନିଏ । ଲୀଳା ହିସାବରେ ଯାହା କିଛି ପଡ଼ିଯାଏ, ସବୁକିଛି ଲୀଳାବସ୍ତୁ ଦେଖାଯାଏ । ସେହିପରି ଭଗବାନଙ୍କ ପ୍ରତ୍ୟେକ ଲୀଳା ସୁନ୍ଦର, ପ୍ରତ୍ୟେକ କାର୍ଯ୍ୟ ମନମୋହକ । ସେ ଶିବ, ସେ ମଙ୍ଗଳକର । ତାଙ୍କର ପ୍ରତ୍ୟେକ କାର୍ଯ୍ୟ ଜୀବଜଗତର ମଙ୍ଗଳ ପାଇଁ ଉଦ୍ଦିଷ୍ଟ । ସେ ମୁହଁରେ କଳାବୋଳି ଦେଲେ ହେଁ ତାହା ଅପୂର୍ବ ଶୋଭା ଧାରଣ କରେ, ସେ ଶରୀରକୁ ଧୂଳି ଧୂସର କରି ଦେଲେ, ତାହା ଭକ୍ତ

ମନରେ ପରମ ଶୋଭାଦାୟକ ହୋଇଯାଏ । ସେ ଯାହା କିଛି କରନ୍ତି ବା କରୁଛନ୍ତି, ତାହା ଭକ୍ତମାନଙ୍କ ପରମ ଆନନ୍ଦ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ । କେହି ଏହାକୁ ସତ୍ୟ ବୋଲି ସ୍ୱୀକାର କରି ନପାରେ, କିନ୍ତୁ ଏହା ଶାଶ୍ୱତ ସତ୍ୟ । କାରଣ, ସେ ସତ୍ୟ ସ୍ୱରୂପ ଅଟନ୍ତି । ଅସତ୍ୟ କେବେହେଲେ ତାଙ୍କ ପାଖ ମାଡ଼େ ନାହିଁ । ତୁମେ ବୁଝ—ସେ ଯଦି ଶ୍ରେଷ୍ଠ ପିଲଟିଏ ହୋଇ ଲୀଳାଖେଳା କରି ନ ଥାନ୍ତେ, ତେବେ ଦଶରଥ ଓ କୌଶଲ୍ୟା ତାଙ୍କ ବାଲ୍ୟଲୀଳା ଦେଖି ମୁଗ୍ଧ ହୋଇଥାନ୍ତେ କିପରି ? ପିତାମାତାଙ୍କ ସୁଖପାଇଁ ସେ ଶ୍ରେଷ୍ଠ ପିଲଟିଏ ହୋଇଥିଲେ ଏବଂ ନାନାପ୍ରକାର ଲୀଳା ପ୍ରକଟ କରୁଥିଲେ । ମାଆ କ୍ଷୀରପାନ କରାଇବାବେଳେ ସେ କେତେ ଢଙ୍ଗରେ ରଙ୍ଗିଆ ସାଜି ଖେଳୁଥିଲେ । ପୁଣି ଭୋକ ଲାଗିବାବେଳେ ସେ ସାଧାରଣ ପିଲାଙ୍କ ପରି କାନ୍ଦୁଥିଲେ । ଖାଇବାବେଳେ ଅଝଟ କରୁଥିଲେ । କେତେବେଳେ ମାଆର ସ୍ତନତରେ ସେ ଲାଗି ରହୁଥିଲେ ଓ କେତେବେଳେ ହସି ହସି ମାତାଙ୍କ କୋଳରେ ଲୋଟି ପଡ଼ୁଥିଲେ । ଆଉ କେତେବେଳେ ସେ ମାଆଙ୍କ ଲୁଗାକାନି ଧରି ଗୁଡ଼ୁ ଗୁଡ଼ୁ ହୋଇ ଚାଲୁଥିଲେ । ମାଆ ତାଙ୍କର ରଙ୍ଗ, ରହସ୍ୟ ଓ କୌତୁକ ଦେଖି ଆନନ୍ଦରେ ଅଧୀର ହୋଇ ଉଠୁଥିଲେ । ସେ ତାଙ୍କ ଆଖିରେ କଜଳ ଲଗାଇ ଦେଉଥିଲେ ଏବଂ କପାଳରେ କଳାଟିପା ଲଗାଇ ଦେଇ ଆନନ୍ଦରେ ଅଧୀର ହୋଇ ଉଠୁଥିଲେ । ପୁଅକୁ କାଳେ କାହାର ନଜର ଲାଗିଯିବ, ସେଥିପାଇଁ ମାତା କୌଶଲ୍ୟା ବାଳକ ଶ୍ରୀରାମଙ୍କୁ ନାନାପ୍ରକାର ଉପାୟରେ ରକ୍ଷା କରିବାକୁ ଚେଷ୍ଟା କରୁଥିଲେ । ନାନାପ୍ରକାର ଗୁଣିଗାରେଡ଼ି, ମନ୍ତ୍ରଯନ୍ତ୍ର, ଝାଡ଼ଫୁଙ୍କା କରୁଥିଲେ । ତାଙ୍କ ହାତରେ ତେଉଁରିଆ ଓ ବେକରେ ବାଘନଖ ପିନ୍ଧାଇ ଦେଉଥିଲେ ।

ହାୟ... ! ଯେ ଚରାଚର ନାଥ, ଯାହାଙ୍କ ଇଙ୍ଗିତରେ ଜଗତ ଆତଯାତ ହେଉଛି, ଯେ ସକଳ ପ୍ରାଣୀର ସ୍ରଷ୍ଟା, ତାଙ୍କର ସୁରକ୍ଷାପାଇଁ ମାତା କୌଶଲ୍ୟା ବ୍ୟସ୍ତ ହୋଇ ଉଠୁଛନ୍ତି । ଏହା ସବୁ ପ୍ରଭୁଙ୍କର ବାଲ୍ୟଲୀଳା । ପିତାମାତାଙ୍କୁ ସୁଖ ଦେବାଲାଗି ସେ ବାଲ୍ୟଲୀଳା କରୁଥିଲେ । ପିତାମାତାଙ୍କୁ ଆନନ୍ଦ ଦେଇ ସାରିବାପରେ, ସେ ସଖାମାନଙ୍କୁ ଆନନ୍ଦ ଦେବାକୁ ଇଚ୍ଛା କଲେ । ସଖ୍ୟ ଭାବକୁ ପ୍ରକଟ କରିବା ଥିଲା—ପ୍ରଭୁଙ୍କର ଅନ୍ୟତମ ଲୀଳା । ସଖାମାନଙ୍କ ସହିତ ସେ ଏପରି ମିଶିଯାଇଥିଲେ ଯେ, ସମସ୍ତେ ଭାବୁଥିଲେ ସେ କେବଳ ତାଙ୍କର ପ୍ରିୟତମ ସଖା । ସଖାମାନଙ୍କ ପ୍ରାଣରେ ରସ ସଞ୍ଚାର କରାଇ ସେ ଶୈଶବ ଲୀଳାରେ ମାତିଗଲେ । ଖେଳ,କୁଦ, ଝରି ଗୁଳିକା, ଘୋଡ଼ା ଚଢ଼ା ଆଦି ଶୁବସୁଲଭ ଖେଳରେ ସେ ସର୍ବଦା ମଗ୍ନ ରହୁଥିଲେ । ତାଙ୍କ ଚତୁରତା ଓ ବୁଦ୍ଧିମତ୍ତାରେ କେବଳ ଯେ ବନ୍ଧୁମାନେ ମୁଗ୍ଧ ହୋଇ ଯାଉଥିଲେ ତା'ନୁହେଁ, ସମାଜର ପ୍ରତ୍ୟେକ ଶ୍ରେଣୀର ଲୋକେ ତାଙ୍କ ଉପରେ ସନ୍ତୁଷ୍ଟ ରହୁଥିଲେ । ତାହା ହିଁ ହେଉଛି—ପ୍ରଭୁଙ୍କର ଶୈଶବଲୀଳା ।

ତା'ପରେ ତାଙ୍କର ଯୁବଲୀଳା ମଧ୍ୟ ଅନୁରୂପ ବୃଦ୍ଧି ପାଇବାକୁ ଲାଗିଲା । ବଳ ପ୍ରଦର୍ଶନ କରିବା, ଅସ୍ତ୍ରଶସ୍ତ୍ରରେ ଯୋଗ୍ୟତା ଦେଖାଇବା, ଯୁବସୁଲଭ ଗୁଣରେ ସମସ୍ତଙ୍କୁ ମୁଗ୍ଧ କରିବା ଥିଲା—ପ୍ରଭୁଙ୍କ ଯୁବଲୀଳାର ଉଦ୍ଦେଶ୍ୟ ।

ତାଙ୍କର ନିତ୍ୟାଶକ୍ତି ଜନକ ରାଜାଙ୍କ ପୁରରେ ବଢ଼ୁଥିଲେ । ସେ ତାଙ୍କୁ ପାଇବେ କିପରି ? ବରବେଶ ସାଜି ଯେ ମିଥିଳା ନ ଗଲେ, ସୀତାଙ୍କୁ ପାଇବେ କିପରି ? ତେଣୁ ସେ ବରବେଶ ସାଜିବା ଆଗରୁ ଅଦ୍ଭୁତ କାର୍ଯ୍ୟମାନ କରି ସମାଜକୁ ଚମତ୍କୃତ କଲେ । ତାଡ଼କା ଓ ସୁବାହୁଙ୍କୁ ମାରି ବଳପ୍ରଦର୍ଶନ କଲେ । ଗୌତମଙ୍କ ପତ୍ନୀ ଅହଲ୍ୟାଙ୍କୁ 'ପାଷାଣୀ ଅହଲ୍ୟା'ରୁ ମୁକ୍ତ କରାଇ 'ପତିବ୍ରତା ଅହଲ୍ୟା'ରେ ପରିଣତ କରି, ନିଜ ପ୍ରଭୁପଣର ଜୟଘୋଷ କରାଇଲେ ଏବଂ ଶିବଧନୁ ଭଙ୍ଗ କରି ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନରେ ସଫଳ ହେଲେ ।

ଧନୁଭଙ୍ଗ କରିବା ପରେ ଶ୍ରୀରାମ ଶ୍ୱଶୁର ଘରେ ରହିଗଲେ । ପାରମ୍ପରିକ ବିବାହ ପୂର୍ବରୁ ମାଳା ବଦଳ କରି ଜାନକୀଙ୍କ ସହିତ ତାଙ୍କର ବିବାହ ହୋଇଗଲା । ସେ ଶ୍ୱଶୁରଘରେ ରହିଲେ ।

ଏହା କିପରି ହେବ ? ପ୍ରଭୁ ଚରାଚର ସ୍ୱାମୀ ଘରଜୋଇଁଆ ହୋଇ ରହିବେ ? ଏହା କିପରି ସମ୍ଭବ ? ଅସମ୍ଭବ କିଛି ନୁହେଁ । ଆଗରୁ ପ୍ରଭୁ ଏପରି ଉଦାହରଣ ରଖିଯାଇଛନ୍ତି ।

ସେ ବରୁଣଙ୍କ କନ୍ୟା ଲକ୍ଷ୍ମୀଙ୍କୁ ବିବାହ କରି ସମୁଦ୍ରରେ ବାସ କରୁଥିଲେ । ଶିବ ସ୍ୱରୂପ ଧାରଣ କରି ପର୍ବତ ପୁତ୍ରୀ ପାର୍ବତୀଙ୍କୁ ବିବାହ କରି ହିମାଳୟରେ ବାସ କଲେ । ଏହା କ'ଣ ଯଥେଷ୍ଟ ଉଦାହରଣ ନୁହେଁ ?

ତେଣୁ ସେ କିଛିକାଳ ଶ୍ୱଶୁରଘରେ ଆନନ୍ଦରେ ରହିବାରେ ଆପତ୍ତି କ'ଣ ? ଶ୍ୱଶୁର ଘରକୁ ସ୍ୱର୍ଗ ବୋଲି ଆମ ସମାଜପତିମାନେ ଆଗରୁ ବ୍ୟାଖ୍ୟା କରି ଯାଇଛନ୍ତି । ତେଣୁ କିଛିଦିନ ଶ୍ରୀରାମ ଜନକଙ୍କ ଆଦର ଅଭ୍ୟର୍ଥନା ଗ୍ରହଣ କରିଛନ୍ତି । ହାସ ଖୁସିରେ ତାଙ୍କର ଦିନଗୁଡ଼ିକ କଟିଯାଇଛି । ଶାଳୀମାନଙ୍କ ଥଟ୍ଟା ପରିହାସରେ ସେ ମନକୁ ସରସ କରିଛନ୍ତି, ଭକ୍ତଜନଙ୍କୁ ମୋଦମଗ୍ନ କରାଇଛନ୍ତି ଏବଂ ଜନସମାଜକୁ ପ୍ରମୁଦିତ କରାଇଛନ୍ତି ।

ସେହି ଦୃଷ୍ଟିରୁ ଦେଖିବାକୁ ଗଲେ—ମିଥିଳାର ରାମଭକ୍ତମାନେ ରାମାୟଣର ମିଥିଳାଲୀଳା ପର୍ଯ୍ୟନ୍ତ କେବଳ ପାଠ କରିଥାଆନ୍ତି । ସେମାନଙ୍କ ଦୃଷ୍ଟିରେ ତାହା ହିଁ ହେଉଛି—ପ୍ରକୃତ ରାମଲୀଳା । ସେ ଲୀଳା ମଧ୍ୟରେ ରହିଛି, ଆନନ୍ଦର ଉତ୍ସ ।

ଯେଉଁ ଭକ୍ତମାନେ ଶ୍ରୀରାମଙ୍କ ମହିମାକୁ ପ୍ରଖ୍ୟାପନ କରିବାକୁ ଚାହୁଁଥିଲେ ସେମାନେ ଯୁକ୍ତି କଲେ—ବିବାହ କ'ଣ ଜୀବନର ଶେଷ ଲକ୍ଷ୍ୟ ? ବିବାହ କରିବା ପୁତ୍ରର ଅଧିକାର ନୁହେଁ । ସେ ଅଧିକାର ହେଉଛି—ପିତାଙ୍କର । ଦଶରଥ ନ ଆସିଲେ ଶ୍ରୀରାମଙ୍କ ବିବାହ ହେବ କିପରି ? ତା'ପରେ ସେ କ'ଣ ସ୍ୱେଚ୍ଛାକୃତ ଭାବରେ ସୀତାଙ୍କୁ ବିବାହ କରିବାପାଇଁ ଜନକ ପୁରକୁ ଯାଇଥିଲେ ? ନା···! ଶ୍ରୀରାମ ସେପରି ଉଦ୍ଦଣ୍ଡ ଯୁବକ ନୁହନ୍ତି । ସେ ନିଜ ଇଚ୍ଛାରେ ଜନକପୁରକୁ ଯାଇ ନଥିଲେ । ତେଣୁ ଗଲେ କିପରି ? ସୀତାଙ୍କ ସହିତ ତାଙ୍କ ବିବାହର ଗୋଟିଏ ମାଧ୍ୟମ ଥିଲେ ବିଶ୍ୱାମିତ୍ର ।

ଋଷି ବିଶ୍ୱାମିତ୍ର ଦିନେ ତାଙ୍କୁ ମିଥିଳାର ଯଜ୍ଞ ସମ୍ବନ୍ଧରେ ଧାରଣା ଦେଇ କହିଲେ—"ବତ୍ସ ! ତୁମେ ଜନକପୁରରେ ଚାଲିଥିବା 'ଧନୁଯଜ୍ଞ' ଦେଖିବାକୁ ଯିବ କି ?"

ଶ୍ରୀରାମ ଏଥିପାଇଁ ଆପତ୍ତି କରନ୍ତେ କିପରି ? ତାଙ୍କ ମନରେ ଯୁବ ଉଦ୍ଦୀପନା ଉର୍କି ମାରୁଥିଲା । ସେ ନିଜର କୌତୂହଳକୁ ଦବାଇ ଦେଇଥାନ୍ତେ କିପରି ? କିନ୍ତୁ ସେ କ'ଣ ଜାଣିଥିଲେ ଯେ, ତାଙ୍କ ମିଥିଳାଯାତ୍ରା ମୂଳରେ ଏତେ ରହସ୍ୟ ଅଛି !

ଯେପରି ପିଲାମାନଙ୍କୁ ବାହାବା ଦେବାଲାଗି କୁହାଯାଏ—"ତୁମେ ଏହି କାମଟି କରିଦେଲେ, ତୁମକୁ ଏହି ପୁରସ୍କାର ମିଳିବ ।" ପିଲାମାନେ ଉତ୍ସାହିତ ହୋଇ ସେ କାମଟି କରି ଦିଅନ୍ତି । ସେହିପରି ଶ୍ରୀରାମଙ୍କୁ ଉତ୍ସାହିତ କରିବା ଲାଗି ବିଶ୍ୱାମିତ୍ର କହିଲେ—"ରାମ ତୁମେ ଶିବଧନୁରେ ଗୁଣ ଚଢ଼ାଇ ପାରିବ ?"

ଶ୍ରୀରାମ ଯୁବସୁଲଭ ଉଦ୍ଦୀପନାରେ ଉତ୍ସାହିତ ହୋଇ କହିଥିଲେ—"ଗୁରୁଦେବ ! ଆପଣ କେବଳ ଗୁଣ ଦେବା କଥା କାହିଁକି କହୁଛନ୍ତି ? ମୁଁ ସେଥିରେ ଗୁଣ ଚଢ଼ାଇପାରେ, ତାକୁ ଭାଙ୍ଗି ଦେଇପାରେ । ମୋଡ଼ାମୋଡ଼ି କରି ଅକାମି କରି ଦେଇପାରେ !"

ତହୁଁ ବିଶ୍ୱାମିତ୍ର କହିଲେ—"ଆଚ୍ଛା, ଦେଖାଇଲ ତୁମ ବୀରତ୍ୱ ?"

ଶ୍ରୀରାମ ଧନୁରେ ଗୁଣ ଚଢ଼ାଇବାମାତ୍ରେ ଅସୁବିଧାରେ ପଡ଼ିଗଲେ । ତା'ପରେ ଦଶରଥଙ୍କୁ ଡକାଇ ଅଣାଗଲା । ତା'ପରେ ଜନକ ଦଶରଥଙ୍କ ସହିତ ମନ୍ତ୍ରଣା କରି ଶ୍ରୀରାମଙ୍କ ଶିରରେ ଗୋଟିଏ ମୋହର ଲଗାଇ ଦେଲେ । ଶ୍ରୀରାମ ଶିର ନୁଆଁଇ ଗୁରୁଜନଙ୍କ ଆଦେଶ ମାନିନେଇ, ବର ବେଶରେ ସଜ୍ଜିତ ହୋଇଗଲେ । ତାଙ୍କ ବେକରେ ଜାନକୀଙ୍କୁ ବାନ୍ଧି ଦିଆଗଲା । ତା'ପରେ ଶ୍ରୀରାମ ଭାବିଲେ"—କେତେଦିନ କେଜାଣି, ଏଠାରେ ରହିବାକୁ ପଡ଼ିବ ? କିଏ ଜାଣେ ବାବା ! ଦମ୍ପତ୍ତି ସମ୍ମୁଖ ବସି ସେ

ବନ୍ଧନରେ ବିଚାର କରିବେ ! ଯିବା ଆସିବା ବିଷୟରେ ଜାଣିବା ପରର ଅଧିକାର କାହିଁ ଆସିବ ?”

ହଠାତ୍ ଦିନେ ଆଦେଶ ମିଳିଲା । ସେ ରଥ ଉପରେ ବସି ବୋହୂକୁ ସାଥିରେ ନେଇ ଚାଲିଲେ । ଅଯୋଧ୍ୟାର ରାଜମହଲରେ ପ୍ରବେଶ କଲେ । ମାଆମାନଙ୍କ ଆନନ୍ଦ କହିଲେ ନ ସରେ । ତା’ପରେ ସମସ୍ତ ପ୍ରକାର ପୂଜା ଆରାଧନା କରାଗଲା— ଦୁହିଁଙ୍କୁ ପାଖାପାଖି ବସାଇ । କୁହାଯାଏ—ତା’ ଫଳରେ ବର-ବଧୂଙ୍କର ପରସ୍ପର ପ୍ରତି ସ୍ନେହ ଅନୁରାଗ ବୃଦ୍ଧି ପାଇଥାଏ । ତାହା ହିଁ ହେଲା । ଶ୍ରୀରାମ ସୀତାଙ୍କୁ ଭଲ ପାଇଲେ । ତା’ପରେ ସେ ଦୁହିଁଙ୍କ ମଧ୍ୟରେ ଏପରି ସ୍ନେହ ବୃଦ୍ଧି ପାଇଲା ଯେ, ଜଣେ ଜଣକୁ ଛାଡ଼ି ରହିପାରିଲେ ନାହିଁ । ବୁଢ଼ା ହେଲେ, ସାଥିହୋଇ ଗଲେ ।

ଦୁଇଟି ବାସନ ଏକାସାଥିରେ ରହିଲେ ପରସ୍ପର ବାଜିଯାଏ । ଖଡ଼୍‌ଖାଡ଼ ହୋଇଥାଏ । ତାହା ବିଚାର କରି ଶ୍ରୀରାମ ସୀତାଙ୍କୁ ନେଇ ବନକୁ ଚାଲିଗଲେ । ସେଥିରେ କେତେକ ରାଜନୈତିକ ଚକ୍ରାନ୍ତ ମଧ୍ୟ ଥିଲା । ରାବଣ ଆଦି ଦୁଷ୍ଟମାନେ ସାଧାରଣ ପ୍ରଜାଙ୍କ ଉପରେ ଅତ୍ୟାଚାର କରୁଥିଲେ । ସେମାନଙ୍କୁ ବଧ କରି ଦେଶରେ ଶାନ୍ତି ସ୍ଥାପନ ଲାଗି ଶ୍ରୀରାମ ବିଚାର କଲେ । ତେଣୁ ସେ ରାବଣକୁ ବଧକରି ଫେରି ଆସିଲେ । ସେଠାରୁ ଫେରି ଅଯୋଧ୍ୟାର ସିଂହାସନରେ ବସି ପଡ଼ିଲେ । ତା’ପରେ ଭାଇମାନଙ୍କୁ ଶ୍ରୀରାମ ଆଦେଶ ଦେଲେ—“ଯାଅ, ଦିଗ୍‌ବିଜୟ କରି ଆସ । ମୁଁ ଏହିଠାରେ ରହି ପୁରର ସୁରକ୍ଷା ସହିତ ପ୍ରଜାପାଳନ କରୁଛି ।” ତାଙ୍କ ଆଜ୍ଞା ପାଇବା ମାତ୍ରେ ଭାଇମାନେ ଅତି ଆଡ଼ମ୍ବରର ସହିତ ଦିଗ୍‌ବିଜୟରେ ବାହାରି ପଡ଼ିଲେ ।

ତା’ପରେ ଶ୍ରୀରାମ ପ୍ରତିଦିନ ପ୍ରଜାମାନଙ୍କୁ ଦର୍ଶନ ଦେଲେ । ପ୍ରଜାମାନେ ତାଙ୍କ ରାଜୀବନୟନ ଦେଖିବାକୁ ବ୍ୟାକୁଳ ହେଲେ । ସାରାରାତି ସେମାନେ ଭାବୁଥିଲେ —“କେତେବେଳେ ରାତିପାହି ସକାଳ ହେବ ? ରାଜା ରାମ ସଦଳବଳେ ବାହାରିବେ ? ସକାଳ ହେବାମାତ୍ରେ ଅଯୋଧ୍ୟାବାସୀ ନିଜନିଜର ଘରଦୁଆର ସଜାଇବାରେ ଲାଗିପଡ଼ିଲେ । ବଶିଷ୍ଟ ଲୋକମାନେ ସେମାନଙ୍କ ପ୍ରାସାଦ ଉପରେ ସ୍ୱର୍ଣ୍ଣ କଳସ ସ୍ଥାପନ କରି ଶ୍ରୀରାମଙ୍କ ସ୍ୱାଗତ ଲାଗି ପ୍ରସ୍ତୁତ ହୋଇ ଯାଉଥିଲେ । ସମସ୍ତ ଅଯୋଧ୍ୟାପୁରୀର ପୁର, ଦ୍ୱାର, ଚୈତ୍ୟ ଓ ଗୋପୁରରେ ନୂତନତା ବିରାଜମାନ କଲା । ସଡ଼କଗୁଡ଼ିକୁ ପରିଷ୍କାର କରି ଦୁଇପାଖରେ ତୋରଣ ସଜାଇ ଦିଆ ଯାଉଥିଲା । ଆଉ ମଧ୍ୟ କେତେକ ସ୍ଥାନରେ ନୂତନ କଦଳୀବୃକ୍ଷ ରୋପଣ କରାଗଲା । ଏତଦ୍‌ବ୍ୟତୀତ ଅଯୋଧ୍ୟାର ରାଜମାର୍ଗର ଦୁଇ ପାଖରେ ନଡ଼ିଆ, ଗୁଆ, ଆମ୍ବ, ପଣସ ଆଦି ବୃକ୍ଷ ସୁଶୋଭିତ ହେଉଥିଲା । ଅଧିକର ମଧ୍ୟ କେତେକ ସ୍ଥାନରେ ନୂଆ ଲୁଗା ଟଙ୍ଗାଯାଇ

ନୂତନ ଭାବରେ ମାର୍ଗକୁ ସଜାଇ ଦିଆ ଯାଉଥିଲା । ଏହିପରି ଆଡ଼ମ୍ବରର ସହିତ ଶ୍ରୀରାମଙ୍କ ନଗର ଯାତ୍ରା ପ୍ରତିଦିନ ସମ୍ପନ୍ନ ହେବାକୁ ଲାଗିଲା । ଶ୍ରୀରାମ ନଗର ପ୍ରଦକ୍ଷିଣ ଶେଷକରି ରାଜପ୍ରାସାଦକୁ ଫେରି ଆସୁଥିଲେ । ସେ ରାଜମହଲର ଅପୂର୍ବ ଶୋଭା ବର୍ଣ୍ଣନ କରିବାର ଶକ୍ତି କାହାର ଅଛି ? ତଥାପି ଏତିକି କୁହାଯାଇ ପାରେ—ରଘୁବଂଶର ସ୍ୱନାମଧନ୍ୟ ରାଜାମାନଙ୍କ ଦ୍ୱାରା ସୁଶୋଭିତ ଅଯୋଧ୍ୟାର ରାଜପ୍ରାସାଦ ଇନ୍ଦ୍ରଙ୍କ ଅମରାବତୀ ପୁରୀକୁ ଲଜ୍ଜିତ କରାଉଥିଲା । ସେଠାକାର ସମସ୍ତ ସାଜସଜ୍ଜାରେ ଚମତ୍କାରିତା ପୂରି ରହିଥିଲା । ପ୍ରତ୍ୟେକ ସ୍ଥାନର ବୈଶିଷ୍ଟ୍ୟ ଥିଲା । ପ୍ରତ୍ୟେକ ପ୍ରକୋଷ୍ଠରେ ନୂତନତା ତଥା ମନୋରମତା ବିରାଜମାନ କରୁଥିଲା । ପ୍ରାସାଦର ସେବକ ସେବିକା ମଧ୍ୟ ଥିଲେ—ଅତ୍ୟନ୍ତ ସୁନ୍ଦର, ସଭ୍ୟ ତଥା ସୁସଂସ୍କୃତ । ସେହିମାନଙ୍କ ଗହଣରେ ଶ୍ରୀରାମ ସଦା ସାକେତ ପୁରୀରେ ବାସ କରୁଥିଲେ ।

ଶ୍ରୀରାମ ହେଉଛନ୍ତି—ଆତ୍ମାରାମ । ସେ ନିଜ ଆତ୍ମାରେ ରମଣ କରୁଥିଲେ । ତାଙ୍କ ଆତ୍ମା ଥିଲେ ବିଦେହତନୟା ସୀତା । ସେ ତାହାଙ୍କୁ ପ୍ରାଣଠାରୁ ଅଧିକ ସ୍ନେହ କରୁଥିଲେ । ସେ ଗୋଟିଏ ମୁହୂର୍ତ୍ତ ତାଙ୍କ ବିୟୋଗ ସହ୍ୟ କରି ପାରୁ ନଥିଲେ । ସେ ପ୍ରତି ମୁହୂର୍ତ୍ତରେ ସୀତାଙ୍କୁ ନିତ୍ୟ-ନୂତନ ରୂପରେ ଦେଖୁଥିଲେ । ଏହି ଅବତାରରେ ପ୍ରଭୁ ସୀତାଙ୍କୁ ପ୍ରାଧାନ୍ୟ ଦେଇଥିଲେ । ତାଙ୍କପାଇଁ ସମସ୍ତ ଦୁଃଖ ବରଣ କରିନେଇ-ଥିଲେ । ସେ ଏକପତ୍ନୀବ୍ରତ ଶେଷ ପର୍ଯ୍ୟନ୍ତ ପାଳନ କରିଥିଲେ ।

ସୀତାଦେବୀଙ୍କ ସତୀତ୍ୱ ସମ୍ବନ୍ଧରେ ଆଉ ଅଧିକ କ'ଣ କହିବି ? ସ୍ତ୍ରୀର ସତୀତ୍ୱ ସମ୍ଭବ, କିନ୍ତୁ ବହୁମୁଖୀ ପୁରୁଷମାନଙ୍କ ପକ୍ଷରେ ଏକପତ୍ନୀବ୍ରତ ଅତ୍ୟନ୍ତ ପ୍ରଶଂସନୀୟ । ସେହି ନିୟମକୁ ଶ୍ରୀରାମ ଅତ୍ୟନ୍ତ କଠୋରତାର ସହିତ ପାଳନ କରିଥିଲେ । ସେ କେବଳ ସେଇଥିପାଇଁ ସାକେତପୁରୀ ତ୍ୟାଗ କରି କେଉଁଆଡ଼େ ଯାଉ ନଥିଲେ । ଯାଆନ୍ତେ ବା କୁଆଡ଼େ ? ସାକେତପୁରୀଠାରୁ ସୁନ୍ଦର ନଗରୀ ଆଉ କେଉଁଠି ଅଛି କି ? ତେଣୁ ସେ ସୀତାଙ୍କ ସହିତ ଅଯୋଧ୍ୟାପୁରୀରେ ନିତ୍ୟନୂତନ ଲୀଳାରେ ବିତାଉଥିଲେ ।

ତାଙ୍କର ପବିତ୍ର ରାମନାମ, ଅଯୋଧ୍ୟାଧାମ, ବିବାହାଦି ଲୀଳା, ଅତସୀକୁସୁମ ତଥା ଦୂର୍ବାଦଳ ପରି ଦ୍ୟୁତିମାନ୍ ଶ୍ୟାମ୍ ସ୍ୱରୂପ ଶାଶ୍ୱତ ! ସେଥିରେ ପରିବର୍ତ୍ତନ ନାହିଁ । ବର୍ତ୍ତମାନ ସୁଦ୍ଧା ଭାଗ୍ୟବାନ୍ ଭକ୍ତମାନେ କନକଭବନରେ ତାଙ୍କ ନିତ୍ୟନୂତନ ଲୀଳା ଅବଲୋକନ କରୁଛନ୍ତି ।

ସୂତ କହିଲେ—"ହେ ମୁନିଗଣ ! ରାମଚରିତ ଅନନ୍ତ ! ସେଥିରେ ସମାପ୍ତି ନାହିଁ । ତଥାପି ରାମ ତାଙ୍କର କୃଷ୍ଣ ଅବତାରରେ ମର୍ଯ୍ୟାଦାର ଯବନିକା ସମ୍ପୂର୍ଣ୍ଣ

ଭାବରେ ଠିକ୍‌ଠିକ୍ କରି ଦେଇଥିଲେ । ସେହି ଅବତାରରେ ସେ ଅନନ୍ତ ସୌନ୍ଦର୍ଯ୍ୟ, ପରମ ମାଧୁର୍ଯ୍ୟ, ଅପାର ଲାବଣ୍ୟ ତଥା ଅନୁପମ ଭୁବନମୋହନ ରୂପ ଦେଖାଇଥିଲେ । ସେହି ଜଗତମୋହନ—ଲୀଳାର ବର୍ଣ୍ଣନା କରିବାପାଇଁ ମୁଁ ଏବେ ନବମ ସ୍କନ୍ଧର ଭୂମିକା ଶେଷ କରିବାକୁ ଯାଉଛି । ଆପଣମାନେ ନବମ ସ୍କନ୍ଧର ସମୁଦାୟ ଚରିତ ଶୁଣି ନିଅନ୍ତୁ । ତା’ପରେ ମୁଁ ଦଶମ ସ୍କନ୍ଧର ଚରିତ ଶୁଣାଇବି ।”

ଶୌନକ କହିଲେ—“ସୂତ ମହୋଦୟ ! ଆପଣ ଶ୍ରୀରାମଙ୍କ ଚରିତର ମାହାତ୍ମ୍ୟ କହି ନାହାନ୍ତି । ଆପଣ ପ୍ରଥମରୁ ରାମଚରିତ ମାହାତ୍ମ୍ୟ ଶୁଣାଇ ଦେଇଥିଲେ ଭଲ ହୋଇଥା’ନ୍ତା ! ହେଉ, ଏବେ ମାହାତ୍ମ୍ୟ କହିବା ହୁଅନ୍ତୁ । ଯେଉଁ ମାହାତ୍ମ୍ୟ ଶୁଣିବା ଫଳରେ ଶ୍ରୀରାମ ଚରିତ ପଢ଼ିବା ଓ କୀର୍ତ୍ତନ କରିବାପାଇଁ ବାରମ୍ବାର ପ୍ରବୃତ୍ତି ଜାତ ହେବ ।”

ତାହା ଶୁଣି ସୂତ ମୁନି କହିଲେ—“ଠିକ୍ ଅଛି; ମୁଁ ଏବେ ଶ୍ରୀରାମଚରିତ ଶ୍ରବଣର ମାହାତ୍ମ୍ୟ ଶୁଣାଉଛି । ଆପଣମାନେ ସାବଧାନ ହୋଇ ଶୁଣନ୍ତୁ ।”

## ଛପ୍ପୟ

“ରାମ ମାତୁ ପିତୁ ସୁହୃଦ ସଖା ସ୍ୱାମୀ ବନି ଜାୱେ ।
ପତି, ପରମେଶ୍ୱର, ପୁତ୍ର ରୂପ ଧରି ସବହି କହାୱେ ।।
ଜୋ ଜୈସେ ହୀ ଭଜୈଂ ଭଜେଂ ୱେ ତାହୀ ତୈସେଂ ।
କ୍ରୀଡ଼ା ଅନୁପମ କରେ ଭକ୍ତ ପାୱେ ସୁଖ ଜୈସେଂ ।।
ମନ ବିଷୟନି ତେଂ ମୋଡ଼କେ, ପ୍ରଭୁ ସେବା ସଂଲଗ୍ନ କରୁ ।
ତେ ରଘୁବର ଲୀଳା ଲଖହିଁ, ଜନକଭବନ ମହଁ ହୋତ ଜନ ।।”



# ଶ୍ରୀରାମ ଚରିତ ମାହାତ୍ମ୍ୟ

ପୁରୁଷା ରାମଚରିତ ଶ୍ରବଣୈରୁପଧାରୟନ୍
ଆନୃଶଂସ୍ୟପରୋ ରାଜନ୍ କର୍ମବନ୍ଧୈର୍ବିମୁଚ୍ୟତେ ।।

(ଶ୍ରୀଭାଗ ୯-୧୧ଅ-୨୩ଶ୍ଳୋ)

## ଛପ୍ପୟ

"ରାମଚରିତ ଜେ ଭୃରୁଷ ପ୍ରେମ ତେଂ ପଢ଼େଂ ପଢ଼ାଏଂ ।
ତନକେ ଛୁଟେଂ ବନ୍ଧ ପରମ ପଦବୀ ତେ ପାଏଂ ।।
ଶ୍ରବନ ପୁଟନତେଂ ପଯ୍ୟେ ହୃଦୟେ ଅଏଂ କୋମଲତା ।
ମିଟହିଁ କଠିନତା ଜଖିଲ ହୋହି ଜୀଓ୍ ନମହଁ ମୃଦୁତା ।।
ଜତ ପ୍ରତ ନବାଦନ କସୁମତେଂ, ରାମାୟଣ ଜେ ନର ସୁନହିଁ ।
ତେ ନ ଭୂଲ ଭବଜାଲ ମହଁ, ଛବନ ରସିକ କବହୁଁ ଫଁସ ହିଁ ।।"

ଅର୍ଥାତ୍—ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ! ଏହି ରାମଚରିତକୁ ଶ୍ରବଣପୁଟରେ ପାନ କରୁଥିବା ଲୋକ ରୂଢ଼ତା, ମୃଦୁତା ଆଦି ଗୁଣରୁ ମୁକ୍ତ ହୋଇ କର୍ମ ବନ୍ଧନରୁ ଉଦ୍ଧାର ପାଇଥାଏ ।"

ମାହାତ୍ମ୍ୟ ନ ଶୁଣିଲେ ବିଷୟବସ୍ତୁ ପ୍ରତି ଅନୁରକ୍ତି ଜାତ ହୁଏ ନାହିଁ । ଆଗରେ ଅମୃତ ଥୁଆ ହୋଇଥିଲେ ମଧ୍ୟ ଆମେ ଯଦି ତା'ର ମହତ୍ତ୍ୱ ଜାଣି ନଥିବା, ତେବେ ତାହା ଆମ ପକ୍ଷରେ ନିରର୍ଥକ ବସ୍ତୁ । ଜଣେ ବିଶିଷ୍ଟ ମହାତ୍ମା ଆମରି ଆଗରେ ଚାଲି ଯାଉଛନ୍ତି; ଯଦି ଆମେ ତାହାଙ୍କ ମାହାତ୍ମ୍ୟ ସମ୍ବନ୍ଧରେ ଜାଣି ନ ଥିବା, ତେବେ ତାଙ୍କୁ ଆମେ ପ୍ରଣାମ ସୁଦ୍ଧା ନିବେଦନ କରି ପାରିବା ନାହିଁ । ମନ୍ତ୍ର ଓ ଔଷଧି ଆଦି ବିଷୟରେ ମାହାତ୍ମ୍ୟ ଜାଣିବା ପରେ ହିଁ ସେଥିପ୍ରତି ଅଭିରୁଚି ବୃଦ୍ଧି ପାଇଥାଏ ।

ସୂତ କହିଲେ—"ହେ ମୁନିଗଣ, ମୁଁ ତୁମମାନଙ୍କୁ ରାମଚରିତର ମାହାତ୍ମ୍ୟ ସଂକ୍ଷେପରେ କହିବି । 'ରାମ' ଏହି ଦୁଇଟି ଅକ୍ଷରରେ ଏତେ ଶକ୍ତି ଅଛି ଯେ, ମହାପାପୀ ମଧ୍ୟ ପୁଣ୍ୟବାନ ହୋଇ ଯାଇପାରେ ! ମୁଖରେ ଉଚ୍ଚାରଣ ନ କରି କେବଳ କାନରେ ଶୁଣିଲେ ମଧ୍ୟ ଅଶେଷ ପୁଣ୍ୟ ହୋଇଥାଏ । ଔଷଧ ଖାଇଲେ କିମ୍ବା ଅନ୍ୟ କୌଣସି ଉପାୟରେ ସେ ଔଷଧକୁ ରକ୍ତରେ ମିଶାଇ ଦେଲେ ଉପକାର ହୋଇଥାଏ । କିନ୍ତୁ ରାମନାମ ରୂପକ ଔଷଧର ନାମ ଶୁଣିବା ମାତ୍ରେ ପାପତାପ ରୂପକ ରୋଗ ଦୂର ହୋଇଯାଏ । ରାମଚରିତ ଚିତ୍ତାକର୍ଷକ, ଶ୍ରବଣ ସୁଖଦାୟକ, ଏଥିରେ ସନ୍ଦେହ ନାହିଁ । ଯଦି ଅର୍ଥ ବୁଝି ଏବଂ ଭାବ ହୃଦୟଙ୍ଗମ କରି ତାହାକୁ ପଢ଼ାଯାଏ, ତେବେ ତା'ର ମହତ୍ତ୍ୱ ଆଉ କହିବା କଅଣ ? ନ ବୁଝି ଶୁଝି ପାଠ କଲେ କିମ୍ବା ଶ୍ରବଣ କଲେ ଅଶେଷ ଫଳ ମିଳିଥାଏ । ଯେପରି ଜଳ ବିଶୁଦ୍ଧକାରୀ ଔଷଧ ଜଳରେ ପଡ଼ିଲେ ତାହା ସେଥିରୁ ପଙ୍କ ବା ଅନ୍ୟାନ୍ୟ ଅଶୁଦ୍ଧି ଦୂର କରିଦିଏ, ସେହିପରି ରାମନାମ କାନରେ ପଡ଼ିବା ମାତ୍ରେ, ଶରୀରର ସମସ୍ତ ପ୍ରକାର ପାପ ଦୂରୀଭୂତ ହୋଇଯାଏ । ମୁଁ ଆପଣ-ମାନଙ୍କୁ ଗୋଟିଏ ପ୍ରାଚୀନ ଆଖ୍ୟାୟିକା ଶୁଣାଇବି । ସେହି କାହାଣୀଟି ମହର୍ଷି ନାରଦ ସନତ୍ କୁମାରଙ୍କୁ ଶୁଣାଇଥିଲେ । ରାଜା ସୌଦାମାଗୌତମ ଶିବଙ୍କ ଅଭିଶାପ ଫଳରେ ରାକ୍ଷସ ହୋଇ ଯାଇଥିଲେ । ସେ ରାମାୟଣ ଶୁଣିବା ଦ୍ୱାରା ଉତ୍ତମ ଗତିକୁ ଲାଭ କରିଥିଲେ । ମୁଁ ସେହି ଆଖ୍ୟାୟିକାଟି ଆପଣମାନଙ୍କୁ ଶୁଣାଉଛି ।"

ଦିନେ ସନକ, ସନନ୍ଦନ, ସନତ୍ କୁମାର ଓ ସନାତନ ଚାରିଆଡ଼େ ବୁଲି ବୁଲି ପିତାମହଙ୍କ ଦର୍ଶନପାଇଁ ସୁମେରୁ ଶିଖରରେ ଉପସ୍ଥିତ ହେଲେ । ସେତେବେଳେ ସେ 'ବ୍ରହ୍ମସଭା'ରେ ଉପସ୍ଥିତ ଥିଲେ । ସେହିଠାରୁ ଭଗବତୀ ତ୍ରିପଥଗାମିନୀ ଗଙ୍ଗା ବାହାରି ଅଛନ୍ତି । ସେହି ଗଙ୍ଗା ସ୍ୱର୍ଗରେ ମନ୍ଦାକିନୀ, ପାତାଳରେ ଭୋଗବତୀ ଓ ମର୍ତ୍ତ୍ୟରେ ଅଳକନନ୍ଦା ନାମରେ ବିଖ୍ୟାତ ହୋଇଛନ୍ତି ।

ସେହି ଚାରିଜଣ ମହର୍ଷି ସର୍ବଦା ପାଞ୍ଚବର୍ଷର ବାଳକଙ୍କ ପରି ଚିରକାଳ ରହିଛନ୍ତି । ସେମାନେ କେବେହେଲେ ବସ୍ତ୍ର ଧାରଣ କରନ୍ତି ନାହିଁ ଏବଂ କାମ, କ୍ରୋଧ, ଲୋଭ, ମଦ, ମୋହ ଓ ମାତ୍ସର୍ଯ୍ୟ ଆଦି ଦୁର୍ଗୁଣରୁ ରହିତ ଅଟନ୍ତି । ସେମାନେ ସର୍ବଦା ମୁଖରେ 'ଶ୍ରୀହରି ଶରଣମ୍' ବୋଲି ଉଚ୍ଚାରଣ କରୁ ଥାଆନ୍ତି । ସେମାନେ ସେଠାରେ ପହଞ୍ଚି ମନ୍ଦାକିନୀରେ ସ୍ନାନ କଲେ ।

ଏହି ସମୟରେ ସେଠାରେ ଆସି ଦେବର୍ଷି ନାରଦ ପହଞ୍ଚି ଗଲେ । ନାରଦଙ୍କୁ ଦେଖି କୁମାରମାନେ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଲେ । ସେମାନେ ଆନନ୍ଦରେ ଜଳରୁ ଉଠି ଆସି ନାରଦଙ୍କୁ ଅନୁରୋଧ କରି କହିଲେ—"ନାରଦ ! ତୁମେ ଆମକୁ କୌଣସି ଗୋଟିଏ 'ହରି କଥା' ଶୁଣାଅ ।"

ତହୁଁ ନାରଦ କହିଲେ—"ପ୍ରାଚୀନ କାଳରେ ଗଙ୍ଗାତଟରେ ମହାମୁନି ଗୌତମ ନିବାସ କରୁଥିଲେ । ସେଠାରେ ସୋମଦତ୍ତ ନାମକ ଜଣେ ବ୍ରହ୍ମଚାରୀ ରହି ତାଙ୍କୁ ସେବା କରୁଥିଲେ । ସେ ମୁନିଙ୍କଠାରୁ ସମସ୍ତ ଶାସ୍ତ୍ର ଓ ବିଦ୍ୟା ଅଧ୍ୟୟନ କରି ମନେ ମନେ ଅଭିମାନୀ ହୋଇ ଉଠିଲେ ।

ଦିନେ ସେ ଶିବଙ୍କ ପୂଜା କରୁଥିଲେ । ସେହି ସମୟରେ ତାଙ୍କ ଗୁରୁ ଗୌତମ ଆସି ପହଞ୍ଚିଗଲେ । କିନ୍ତୁ ସୋମଦତ୍ତ ପୂଜା ସ୍ଥାନରୁ ଉଠି ଗୁରୁଙ୍କୁ ସ୍ୱାଗତ ଜଣାଇଲେ ନାହିଁ କିମ୍ବା ପ୍ରଣାମ କଲେ ନାହିଁ । ଏଥିରେ ଗୁରୁଦେବ ଅବଶ୍ୟ କିଛି କହିଲେ ନାହିଁ । କିନ୍ତୁ ଦେବାଧିଦେବ ଶିବ ଅତ୍ୟନ୍ତ କ୍ଷୁବ୍ଧ ହୋଇ ତାଙ୍କୁ ଅଭିଶାପ ଦେଇ କହିଲେ—"ଯାଃ, ତୁ ରାକ୍ଷସ ହୋଇଯାଆ ।"

ଏହା ଫଳରେ ସୋମଦତ୍ତର ଅଭିମାନ ଚୂର୍ଣ୍ଣ ହୋଇଗଲା । ସେ ଧାଇଁଯାଇ ଗୁରୁଙ୍କ ପାଦଧରି ପଡ଼ିଗଲେ । ତହୁଁ ଗୁରୁଦେବ କହିଲେ—"ଶିବଙ୍କ ଅଭିଶାପକୁ ବ୍ୟର୍ଥ କରି ଦେବାର ଶକ୍ତି କାହାର ନାହିଁ । ତଥାପି ମୁଁ ତୋତେ ବରଦାନ ଦେଉଛି । ଏ' ଅଭିଶାପ ବାରବର୍ଷ ପର୍ଯ୍ୟନ୍ତ ରହିବ । ତା'ପରେ ତୁ ରାମନାମ ଶ୍ରବଣ କରି ଅଭିଶାପରୁ ମୁକ୍ତିଲାଭ କରିବୁ ।"

ଏହା ଶୁଣି ସୋମଦତ୍ତ ମନେ ମନେ ଆଶ୍ୱସ୍ତ ହେଲା । ଶିବଙ୍କ ଅଭିଶାପ ଅନୁସାରେ ସେ ରାକ୍ଷସ ହୋଇ ବନରେ ବୁଲିଲା । ରାକ୍ଷସ ସ୍ୱଭାବ ଅନୁସାରେ ସେ ମନୁଷ୍ୟ, ପଶୁ ଆଦିଙ୍କୁ ସଂହାର କରି ଭୋଜନ କଲା ।

ଦିନେ ଜଣେ ବ୍ରାହ୍ମଣ ଆସି ସେଠାରେ ଉପସ୍ଥିତ ହେଲେ । ସେ ପ୍ରୟାଗରେ ସ୍ନାନସାରି ଆସୁଥିଲେ । ତାଙ୍କ ହାତରେ ଗଙ୍ଗାଜଳ ଥିଲା । ତାହାଙ୍କୁ ଦେଖି ରାକ୍ଷସ-ରୂପୀ ସୋମଦତ୍ତ ମନେ ମନେ ଖୁସି ହୋଇ ତାଙ୍କ ଆଡ଼କୁ ଆଗେଇ ଗଲା । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ସେ ପାଦେ ଦୁଇପାଦ ଆଗେଇବା ପରେ ଅଉ ଯାଇ ପାରିଲା ନାହିଁ । ସେ ବ୍ରାହ୍ମଣଙ୍କ ପ୍ରଭାବରେ ପ୍ରଭାବିତ ହୋଇ ବିନୟର ସହିତ କହିଲା—"ବିପ୍ରବର, ଆପଣ ଧନ୍ୟ ! ଆପଣଙ୍କ ତପସ୍ୟା ମଧ୍ୟ ଧନ୍ୟ ! ଯାହାଫଳରେ ମୁଁ ଆପଣଙ୍କର ଅନିଷ୍ଟ କରିବାକୁ ଚାହୁଁଥିଲେ ମଧ୍ୟ କିଛି କରିପାରୁ ନାହିଁ । ମୁଁ ଆଜିଯାଏ ଅନେକ ବ୍ରାହ୍ମଣଙ୍କୁ ବଧ କରି ଭକ୍ଷଣ କରିଛି । ଆପଣ କେଉଁ ମନ୍ତ୍ର ଜପ କରୁଛନ୍ତି ଯେ, ଯାହାଫଳରେ ଗୋଟିଏ ନୃଶଂସ ରାକ୍ଷସ ଆପଣଙ୍କର କିଛି କରିପାରୁନାହିଁ ଆପଣ ଅତ୍ୟନ୍ତ ସୌଭାଗ୍ୟବାନ୍ ଅଟନ୍ତି ।"

ବ୍ରାହ୍ମଣ ଗର୍ଗ, ରାକ୍ଷସର ବଚନ ଶୁଣି କହିଲେ—"ହେ ରାକ୍ଷସ, ତୁମେ ମୋ'ଠାରେ ଯାହା କିଛି ଶକ୍ତି ଦେଖୁଛ, ସବୁ କିଛି ରାମନାମର ପ୍ରଭାବ ।"

ରାକ୍ଷସରୂପୀ ସୋମଦତ୍ତ କହିଲେ—"ହେ ବିପ୍ର ! ଆପଣ ମୋତେ ଭଲକଥା ସ୍ମରଣ କରାଇ ଦେଲେ । ମୁଁ ପୂର୍ବରୁ ବ୍ରାହ୍ମଣ ଥିଲି । କିନ୍ତୁ ଗୁରୁଙ୍କୁ ଅପମାନ ଦେବା ଫଳରେ ଶିବ ମୋତେ ଅଭିଶାପ ଦେଇଥିଲେ । ତା'ଫଳରେ ମୁଁ ରାକ୍ଷସ ହୋଇ ଯାଇଛି । ମୋ' ଗୁରୁଦେବ କହିଛନ୍ତି—'ରାମନାମ' ଶ୍ରବଣରେ ମୋ' ଅଭିଶାପ ଦୂର ହୋଇଯିବ । ହେ ବିପ୍ରବର ! ଆପଣ ଦୟାକରି ଆଗାମୀ କାର୍ତ୍ତିକମାସ ଶୁକ୍ଳପକ୍ଷରେ ମୋତେ ରାମଚରିତ ଶୁଣାଇ ଦିଅନ୍ତୁ ।"

ବୈଷ୍ଣବମାନଙ୍କୁ ଯଦି କେହି ରାମଚରିତ ଶୁଣାଇବାକୁ କହେ, ତେବେ ସେ ସବୁ କିଛି ଭୁଲିଯାଆନ୍ତି । ଗର୍ଗ ବ୍ରାହ୍ମଣ ବିଧି ବିଧାନର ସହିତ ରାକ୍ଷସକୁ ରାମଚରିତ ଶୁଣାଇ ଦେଲେ । ତହୁଁ ସୋମଦତ୍ତ ଦିବ୍ୟରୂପ ଧାରଣ କରି, ଗର୍ଗଙ୍କ ପାଦରେ ପ୍ରଣାମ ନିବେଦନ ପୂର୍ବକ ବୈକୁଣ୍ଠଧାମକୁ ଚାଲିଗଲେ ।

ସୂତ କହିଲେ—ହେ ମୁନିଗଣ, ନାରଦ ଏହିପରି ଭାବରେ ସନକାଦି ମୁନି-ମାନଙ୍କୁ ରାମଚରିତ ମାହାତ୍ମ୍ୟ ବ୍ୟାଖ୍ୟା କରିଥିଲେ । ରାମରସ ହୃଦୟରେ ସଞ୍ଚରିଲେ ସଂସାରର ସମସ୍ତ ରୋଗାଦି ଭୁକ୍ତ ହୋଇଯାଏ । ଜଣେ ପାପାଗ୍ରସ୍ତ ଶୂଦ୍ର ମଧ୍ୟ ଶ୍ରୀରାମଚରିତ ମାହାତ୍ମ୍ୟରେ ପରମପଦର ଅଧିକାରୀ ହୋଇଥିଲା ।

ଶୌନକାଦି ମୁନିମାନେ ସେହି ଶୂଦ୍ରର ଆଖ୍ୟାୟିକା ଶୁଣିବାକୁ ଆଗ୍ରହ ପ୍ରକାଶ କରନ୍ତେ ସୂତ ମୁନି କହିଲେ—"ଏହି ଆଖ୍ୟାୟିକାଟିକୁ ମଧ୍ୟ ନାରଦ ସନକାଦି ମୁନିମାନଙ୍କୁ ଶୁଣାଇଥିଲେ । ପୂର୍ବ କାଳରେ ସୁମତି ନାମରେ ଜଣେ ରାଜା ଥିଲେ । ସେ ଅତ୍ୟନ୍ତ ଧାର୍ମିକ, ସତ୍ୟନିଷ୍ଠ ପରାୟଣ ତଥା ବ୍ରାହ୍ମଣ୍ୟଧର୍ମର ପ୍ରତିପାଳକ ଥିଲେ । ତାଙ୍କ ପତ୍ନୀଙ୍କ ନାମ ଥିଲା—ସତ୍ୟବତୀ । ସେ ମଧ୍ୟ ସ୍ୱାମୀଙ୍କ ପରି ଗୁଣବତୀ ଥିଲେ । ସେ ଦୁହେଁ ମିଶି ପ୍ରତିଦିନ ରାମଚରିତ ଶ୍ରବଣ କରୁଥିଲେ । ଦିନେ ବିଭାଣ୍ଡକ ଋଷି ବୁଲି ବୁଲି ଶିଷ୍ୟ-ମାନଙ୍କ ସହିତ ରାଜା ସୁମତିଙ୍କ ରାଜଭବନରେ ଉପସ୍ଥିତ ହେଲେ । ରାଜା ମୁନିବରଙ୍କୁ ପାଦ୍ୟ, ଅର୍ଘ୍ୟ ତଥା ଆସନ ଦେଇ ଅଭ୍ୟର୍ଥନା ଜଣାଇଲେ । ତହୁଁ ମୁନିବର ପଚାରିଲେ—"ରାଜନ୍, ତୁମେ ପ୍ରତିଦିନ ଶ୍ରୀରାମଙ୍କ ଚରିତ କାହିଁକି ଶ୍ରବଣ କରୁଛ ? ସଂସାରରେ ଆହୁରି ଅନେକ ଶାସ୍ତ୍ର ପୁରାଣ ରହିଛି । ତୁମେ ଅନ୍ୟାନ୍ୟ ପୁରାଣକୁ ଛାଡ଼ି କେବଳ ରାମାୟଣ ପାଠରେ କାହିଁକି ମନ ବଳାଇଛ ?"

ଏହା ଶୁଣି ରାଜା କହିଲେ—"ଭଗବନ୍, ସଂସାରରେ ଯେଉଁଥିରେ ଯାହାର କାମ ଚଳେ, ସେ ସେଇଥିରେ ମାତିରହେ । ସଂସାରରେ ଅସଂଖ୍ୟ ସୁନ୍ଦର ପୁରୁଷ ଅଛନ୍ତି, କିନ୍ତୁ ସତୀ ବାଛିଲେ ଦିଗମ୍ବର ଶିବଙ୍କୁ । ଆମର ଉଦ୍ଦେଶ୍ୟ ଯେଉଁଥିରେ ସଫଳ ହେବ, ଆମେ ସେଇଥିରେ ମାତିବା ଉଚିତ । ମହୋଦୟ, ରାମାୟଣ ଶ୍ରବଣରେ ମୋର

ଅଟେ ପରମ ଉପକାର ହୋଇଛି । ମୁଁ ତେଣୁ ରାମାୟଣ ପଠନ ପାଠନରେ ମନ ବଳାଇଛି ।”

ତହୁଁ ବିଭାଣ୍ଡକଙ୍କ ଜିଜ୍ଞାସାମତେ ରାଜା କହିଲେ—“ବ୍ରହ୍ମନ୍, ମୁଁ ପୂର୍ବ ଜନ୍ମରେ ମାଳିନ ନାମକ ଜଣେ ଶୂଦ୍ର ଥିଲି । ବ୍ରତଭ୍ରଂଶୀ ପରସ୍ୱଗ୍ରହଣ ହୋଇ ଅନେକପ୍ରାଣୀଙ୍କୁ ହତ୍ୟା କରିଥିଲି । ଅଖାଦ୍ୟ ଖାଇଛି, ଅପେୟ ପିଇଛି । ଜାତିଦ୍ରୋହ, ସମାଜଦ୍ରୋହ ଏପରିକି, ଆତ୍ମଦ୍ରୋହ ମଧ୍ୟ କରିଛି । କେତେ ହତ୍ୟାକାଣ୍ଡ ମୁଁ ଘଟାଇଛି, ତା'ର ଠିକଣା ନାହିଁ । ଶେଷରେ ମୋ' ଜାତି ଭାଇ, ଆତ୍ମୀୟ ସ୍ୱଜନ ମୋତେ ନଗରରୁ ବାହାର କରିଦେଲେ । ମୁଁ ଦେଶ ପରିତ୍ୟକ୍ତ ହୋଇ ଜଙ୍ଗଲ ଓ ପାହାଡ଼ ବୁଲିବାକୁ ଲାଗିଲି ।”

ଶେଷକୁ ଚଉଆଡ଼େ ବୁଲିବୁଲି କରି, ମୁଁ ଯାଇ ବଶିଷ୍ଠ ଋଷିଙ୍କ ଆଶ୍ରମ ନିକଟରେ ପହଞ୍ଚିଲି । ସେହି ଆଶ୍ରମ ପାଖରେ ଖଣ୍ଡିଏ କୁଡ଼ିଆ କରି ରହିଲି । ମୁଁ ସେଠାରେ ରହି ବଣରୁ ପଶୁପକ୍ଷୀ ଶିକାର କରି ଆଣି ପେଟ ପାଳିଲି । ଏହିପରି ଭାବରେ କୋଡ଼ିଏ ବର୍ଷ ବ୍ୟତୀତ ହୋଇଗଲା ।

ଦିନେ ମୁଁ ମୋ' କୁଡ଼ିଆରେ ବସିଛି—କେହି ଜଣେ କାନ୍ଦୁଥିବାର ମୁଁ ଶୁଣି ପାରିଲି । ମୁଁ ସେହି ଶବ୍ଦକୁ କାନ ଡେରି ଆଗେଇ ଗଲି । ଦେଖିଲି, ଜଣେ ଯୁବତୀ ସ୍ତ୍ରୀ ଗଛମୂଳେ ବସି କାନ୍ଦୁଛି । ମୁଁ ତାକୁ ସାନ୍ତ୍ୱନା ଦେଇ ପଚାରିବାରୁ ସେ କହିଲା—“ମୁଁ ବଡ଼ ପାପିନୀ । ବ୍ୟଭିଚାର କରି ଦିନ କାଟୁଥିଲି । ଦିନେ ପରପୁରୁଷଙ୍କ କଥାରେ ପଡ଼ି ମୁଁ ମୋ' ସ୍ୱାମୀଙ୍କୁ ହତ୍ୟା କରିଦେଲି । ମୋ' ଜାତି ଭାଇଙ୍କ ଆଗରେ କଥା ପଡ଼ିଲା । ସେମାନେ ମୋତେ କୁଳରୁ ବାହାର କରିଦେଲେ । ମୁଁ ଆଶ୍ରୟହୀନା ହୋଇ ବଣରେ ବୁଲୁଛି ।”

ମୁଁ ମନେ ମନେ ଖୁସି ହୋଇଗଲି । ଏକୁଟିଆ ରହି ରହି ମୁଁ ବ୍ୟସ୍ତ ହୋଇ ପଡ଼ିଥିଲି । ତେଣୁ ସେ ସ୍ତ୍ରୀଲୋକଟିକୁ ମୋ' କୁଡ଼ିଆକୁ ନେଇ ଆସିଲି । ଆମେ ସ୍ୱାମୀ ସ୍ତ୍ରୀ ଭାବରେ କାଳକାଟିଲୁ ।

ଦିନେ ଆମେ ଦେଖିଲୁ ବଶିଷ୍ଠ ମୁନିଙ୍କ ଆଶ୍ରମରେ ଋଷି ମୁନିମାନଙ୍କ ଗହଳି ଲାଗିଛି । ଖିଆ ପିଆରେ ଧୂମ୍ ଉଡ଼ୁଛି । ଆମେ ଯାଇ ଆଶ୍ରମ ଦୁଆରେ ବସିଲୁ । ମୁନି ଋଷିମାନେ ଖାଇସାରି ଯେଉଁ ଅଇଁଠା ପତ୍ର ଫିଙ୍ଗି ଦେଲେ, ଆମେ ତାକୁ ଗୋଟାଇ ଆଣି ଖାଇଲୁ । ଦୁଇଦିନ ପରେ ସେଠାରେ ରାମାୟଣ ପାଠ ହେଲା । ଆମେ ଦୁହେଁ ଦୂରରେ ବସି ନଅ ଦିନଯାଏ ରାମାୟଣ ଶୁଣିଲୁ । ରାମାୟଣ ପାଠ ଯେଉଁ ଦିନ ଶେଷ ହେଲା, ସେହିଦିନ ଆମ ଦୁହିଙ୍କର ମୃତ୍ୟୁ ହେଲା । ଆମେ ଦୁହେଁ ଆସି ରାଜାଘରେ ଜନ୍ମ ହେଲୁ ! ଏ' ଜନ୍ମରେ ମଧ୍ୟ ଆମେ ପତିପତ୍ନୀ ହୋଇଛୁ । ପ୍ରଭୁଙ୍କ ଦୟାରୁ ଆମେ ଜାତିସ୍ମର ହୋଇଛୁ । ପୂର୍ବ ଜନ୍ମର କଥା ଆମର ମନେ ଅଛି । ଆମେ ରାମାୟଣ ବ୍ୟତୀତ

ଅଉ କିଛି ପାଠ କରୁନାହୁଁ । ଆମେ ମୋକ୍ଷ କାମନା କରୁଛୁ । ଯଦି ଆମ ଭାଗ୍ୟରେ ଥାଏ, ତେବେ ହୁଏତ ଆମକୁ ଆଉ ସଂସାରକୁ ଆସିବାକୁ ପଡ଼ିବ ନାହିଁ ।

ମୁନି ବାଁଭାଣ୍ଡିକ ରାଜାଙ୍କ ମୁଖରୁ ରାମାୟଣର ପ୍ରଶଂସା ଶୁଣି ଖୁସି ହେଲେ । ସେ ରାଜାଙ୍କ ଦ୍ୱାରା ସତ୍କୃତ ହୋଇ ଶିଷ୍ୟଙ୍କ ସହିତ ଅନ୍ୟତ୍ର ଚାଲିଗଲେ ।

ସୂତ ମୁନି କହିଲେ—"ଋଷିଗଣ, ରାମନାମର ମହିମା କେତେ ବଖାଣିବି ? ମହା ମହା ପାପୀମାନେ ରାମନାମର ପ୍ରଭାବରୁ ମୁକ୍ତି ପାଇଛନ୍ତି । ଏପରି ଅନେକ ଘଟଣା ରହିଛି ।

ରାମ ନାମ ପ୍ରଭାବରୁ ଗୋଟିଏ ଚୋର ସାଧୁରେ ପରିଣତ ହେବାର ଘଟଣା ମୁଁ ଜାଣେ ।

ଯେ ଯାହା ମନରେ ବାଞ୍ଛା କରି ରାମଚରିତ ପାଠ କରେ ବା ଶୁଣେ ତା'ର ମନୋବାଞ୍ଛା ସିଦ୍ଧ ହୁଏ । ଅପୁତ୍ରୀ ପୁତ୍ରବତୀ, ନିର୍ଦ୍ଧନ ଧନବାନ୍, ଜନ୍ମମୂର୍ଖ ବିଦ୍ୱାନ୍, ଅବିବାହିତ ସୁନ୍ଦର ସୁଶୀଳା ପତ୍ନୀ, ଅବିବାହିତା କନ୍ୟା ମନୋନୁକୂଳ ପତି ପାଇଥାଏ ।

ସୂତ ରାଜା ଦଶରଥଙ୍କ ବଂଶାବଳୀ ବର୍ଣ୍ଣନ ପ୍ରସଙ୍ଗରେ ସମ୍ପୂର୍ଣ୍ଣ ରାମଚରିତ ଶୁଣାଇ ଦେଲେ । ତହୁଁ ମୁନିମାନେ କହିଲେ—"ହେ ସୂତ ମୁନିବର, ଆମେମାନେ ସୂର୍ଯ୍ୟବଂଶର ଅନ୍ୟାନ୍ୟ ପ୍ରଖ୍ୟାତଯଶା ରାଜାମାନଙ୍କ ଚରିତ ଶୁଣିବାକୁ ଇଚ୍ଛା କରୁଛୁ ।"

ଏହା ଶୁଣି ସୂତମୁନି କହିଲେ—"ହେ ମୁନିଗଣ, ମୁଁ ଅତି ସଂକ୍ଷେପରେ ସୂର୍ଯ୍ୟବଂଶ ରାଜାମାନଙ୍କ ଚରିତ ଶୁଣାଇବା ପରେ ଚନ୍ଦ୍ରବଂଶର ବର୍ଣ୍ଣନା କରିବି । ଭଗବାନ୍ ଶ୍ରୀକୃଷ୍ଣ ଚନ୍ଦ୍ରବଂଶରେ ଅବତାର ଗ୍ରହଣ କରି ଯାହା ଯାହା କରିଥିଲେ, ତାହା ଆପଣମାନେ ଶୁଣିବେ । ହେଉ, ଏଥର ଆପଣମାନେ ସୂର୍ଯ୍ୟବଂଶର ଅନ୍ୟାନ୍ୟ ରାଜାମାନଙ୍କ ଚରିତ ଶ୍ରବଣ କରନ୍ତୁ । ଶ୍ରୀରାମଙ୍କ ବଡ଼ପୁଅ ଥିଲେ କୁଶ । ତାଙ୍କ ପରବର୍ତ୍ତୀ ରାଜାମାନଙ୍କ ଚରିତ ବର୍ଣ୍ଣନା କରୁଛି ଆପଣମାନେ ଶ୍ରବଣ କରନ୍ତୁ ।

## ଛପ୍ପୟ

"ଗ୍ରାମ୍ୟ କଥା ମହି ବ୍ୟର୍ଥ ଜୀବ ଜୀବନ ସବ ଖୋୱେଁ
ଅନ୍ତ ସମୟ ଯମଦୂତ କରଖି ତର ପୁନି ପୁନି ରୋୱେଁ ॥
ରାମ କଥା ଯଦି ସୁନହିଁ ଦୁଃଖ କାହୁ କୁଁ ପାୱେଁ ।
ଦେଖେ ନହିଁ ଯମ ସଦନ ନିତ୍ୟ ବୈକୁଣ୍ଠ ସିଧାୱେଁ ॥
ଚିନ୍ତା ଦୁଃଖ ଭୟ ଶୋକଯୁତ, ନୀରସ ଯହ ସଂସାର ହୈ ।
ହୈ ଯଦି ଜାମେଁ ତତ୍ତ୍ୱ ତୋ, ରାମଚରିତ ହୀ ସାର ହୈ ॥



# ଇକ୍ଷ୍ୱାକୁ ବଂଶର ଅନ୍ୟ ରାଜାଗଣ

"ଇକ୍ଷ୍ୱାକୂଣାମୟଂ ବଂଶଃ ସୁମିତ୍ରାନ୍ତୋ ଭବିଷ୍ୟତି ।
ଯତସ୍ତଂ ପ୍ରାପ୍ୟ ରାଜାନଂ ସଂସ୍ଥାଂ ପ୍ରାପ୍ସ୍ୟତି ବୈ କଲୌ ॥
(ଶ୍ରୀ ଭା. ୯ । ୧୨ । ୧୬)

## ଛପ୍‌ପୟ

କୁଶ ତେଜ ସୁତ ନୃପ ଅତିଥି ନିଷଧ ନୃପ ତନକେ ନଭ ସୁତ
ହିରଣ୍ୟନାଭ ନୃପ ଦଶମ ପୀଢ଼ିମହଁ ଭୟେ ଯୋଗଯୁତ ॥
ଜୈମିନି ମୁନି ତେଂ ଯୋଗ ସୀଖି କୀରତ ବହୁ ପାଈ ।
ଯାଜ୍ଞବଲ୍‌କ୍ୟ କହଁ ଜିନନ ଯୋଗ ବିଧି ସରଲ ସିଖାଈ ॥
ତିନକୀ ଛଟମୀ ପୀଢ଼ିମହଁ, ଭୂପ ବଂଶଧର ମରୁ ଭୟେ ।
ବଂଶ ବର୍ଦ୍ଧନ ତେ ନମିଉ, ଅଜର ଅମର ନୃପ ହ୍ୱୈ ଗୟେ ।"

ଅର୍ଥାତ୍, ଶ୍ରୀ ଶୁକଦେବ କହୁଛନ୍ତି—ହେ ରାଜନ୍ ! ଇକ୍ଷ୍ୱାକୁ ବଂଶୀୟ ରାଜାମାନଙ୍କ ବଂଶ ସୁମିତ୍ର ପର୍ଯ୍ୟନ୍ତ ଅବ୍ୟାହତ ରହିଛି । କଳିଯୁଗରେ ସେହି ରାଜାଙ୍କ ପରେ ଇକ୍ଷ୍ୱାକୁ ବଂଶ ବୁଡ଼ିଯିବ ।"

ସଂସାରରେ କୌଣସି ବସ୍ତୁର ବୀଜ ନଷ୍ଟ ହେଉନାହିଁ । ଧର୍ମ ଓ ଅଧର୍ମ ଦୁଇଟିଯାକ ଭଗବାନଙ୍କ ଅଂଶରୁ ଜାତ । ସତ୍ୟଯୁଗରେ ଧର୍ମ ଚାରିପାଦରେ ରହିଥିଲା । କଳିଯୁଗରେ ଅଧର୍ମ ବ୍ୟାପି ଯାଇଥିଲେ ହେଁ, ଧର୍ମର ଗୋଟିଏ ପାଦ ରହିଥିଲା । ତେଣୁ ସୃଷ୍ଟିରେ ବୀଜ ଲୋପ ହୁଏ ନାହିଁ ।

ଯୁଗର ଅନ୍ତ ସମୟରେ ଭଗବାନ୍ ଅବତାର ଗ୍ରହଣ କରନ୍ତି । ସତ୍ୟଯୁଗର ଲୋକମାନଙ୍କର ଜ୍ଞାନର ବିକାଶ ଅତ୍ୟଧିକ ହୋଇଥାଏ । ବିନା ଶିକ୍ଷାରେ ଲୋକ-

ମାନଙ୍କର ଜ୍ଞାନ ଉଦୟ ହୁଏ । ଉତ୍ଥାନ ପରେ ପତନ ହୋଇଥାଏ । ସ୍ୱାଭାବତଃ ପ୍ରକୃତି ପତନ ଆଡ଼କୁ ଅଗ୍ରସର ହୁଏ । ସତ୍ୟଯୁଗରେ ଧର୍ମଭାବର ମାତ୍ରା ପୂର୍ଣ୍ଣ ଭାବରେ ବିଦ୍ୟମାନ ରହିଥାଏ । ତା'ପରେ ଧୀରେ ଧୀରେ ଧର୍ମ ଲୋପପାଇ କଳିଯୁଗରେ ଧର୍ମ ପୂର୍ଣ୍ଣମାତ୍ରାରେ ଲୋପ ହୋଇଯାଏ ।

ଏହିପରି ଭାବରେ ଧର୍ମ ହ୍ରାସ ପାଇଯାଏ । ତା'ପରେ ଭଗବାନ ଅବତାର ଗ୍ରହଣ କରି ଧର୍ମର ଅଭିବୃଦ୍ଧି କରିଥା'ନ୍ତି । ସେଇଥିପାଇଁ କୁହାଯାଇଛି—ଯୁଗାନ୍ତ କାଳରେ ଭଗବାନ ଅବତାର ଗ୍ରହଣ କରନ୍ତି । ତା'ପରେ ଭଗବାନ କପିଳ ଅବତାର ଗ୍ରହଣ କରି ଜ୍ଞାନର ପ୍ରସାର କରାଇଲେ ।

ତ୍ରେତାରେ ଜ୍ଞାନ ସହିତ ଯାଗଯଜ୍ଞର ଅଭ୍ୟୁତ୍ଥାନ ହୁଏ । ସେହି ଜ୍ଞାନ ଓ ଯଜ୍ଞର ହ୍ରାସ ହେବାମାତ୍ରେ ଭଗବାନ୍ ଶ୍ରୀରାମ ଆବିର୍ଭୂତ ହେଲେ । ଶ୍ରୀରାମଙ୍କ ବଂଶଧରମାନେ ତ୍ରେତାଯୁଗର ଶେଷ ପର୍ଯ୍ୟନ୍ତ ପୃଥିବୀର ସୁରକ୍ଷାରେ ଲାଗିରହିଲେ । ଦ୍ୱାପର ଯୁଗ ଶେଷରେ ଭଗବାନ୍ ଶ୍ରୀକୃଷ୍ଣ ଜାତ ହୋଇ ସେହି ଧର୍ମର ପ୍ରତିପାଳନ କଲେ ।

କଳିଯୁଗରେ କ୍ଷତ୍ରିୟମାନେ ଭ୍ରଷ୍ଟ ହୋଇ ଯାଆନ୍ତି । ତା'ପରେ ଧର୍ମର ବୀଜ ନଷ୍ଟ ହୋଇଯାଏ । ସେତେବେଳେ ସୂର୍ଯ୍ୟବଂଶୀୟ ରାଜାମାନେ ଦିବ୍ୟ ଦେହ ଧାରଣ କରି ଗନ୍ଧମାଦନ ପର୍ବତ ଉପରେ ତପସ୍ୟାରେ ଲୀନ ରହିଥା'ନ୍ତି । କଳିଯୁଗ ଶେଷ ହେବାପରେ ସେମାନେ ପୁଣି ବିବାହ ସମ୍ପର୍କ ଦ୍ୱାରା ପୃଥିବୀରେ ସୂର୍ଯ୍ୟ ଓ ଚନ୍ଦ୍ର ବଂଶର ସ୍ଥାପନ କରନ୍ତି ।

ସୂତ କହିଲେ—"ହେ ମୁନିଗଣ, ମୁଁ ବର୍ତ୍ତମାନ ସୁଦ୍ଧା ଇକ୍ଷ୍ୱାକୁ ବଂଶର ଶ୍ରୀରାମଙ୍କ ପର୍ଯ୍ୟନ୍ତ ବର୍ଣ୍ଣନା କଲି । ଶ୍ରୀରାମଙ୍କ ଜ୍ୟେଷ୍ଠପୁତ୍ର କୁଶ କୁଶାବତୀରେ ରାଜା ହୋଇଥିଲେ । କୁଶଙ୍କ ପୁତ୍ର ଅତିଥି ହୋଇଥିଲେ । ଅତିଥିଙ୍କଠାରୁ ନିଷଧ ଓ ତାଙ୍କଠାରୁ ନଭ ଜାତ ହୋଇଥିଲେ । ନଭଙ୍କ ପୁତ୍ର ପୁଣ୍ଡରୀକ ଓ ପୁଣ୍ଡରୀକଙ୍କ ପୁତ୍ର କ୍ଷେମଧନ୍ୱାଙ୍କ ପୁତ୍ର ଦେବାନୀକ, ତାଙ୍କ ପୁତ୍ର ଅନୀହ ଓ ଅନୀହଙ୍କ ପୁତ୍ର ପରମ ଯଶସ୍ୱୀ ପାରିଯାତ୍ର ହୋଇଥିଲେ । ପାରିଯାତ୍ରଙ୍କ ପୁତ୍ର ବଳସ୍ଥଳ ଏବଂ ତାଙ୍କ ପୁତ୍ର ବଜ୍ରନାଭ ହୋଇଥିଲେ । ବଜ୍ରନାଭ ଥିଲେ—ପରମ ତେଜସ୍ୱୀ । ସୂର୍ଯ୍ୟଙ୍କ ପରି ସେ ତେଜସ୍ୱୀ ହୋଇଥିଲେ । ବଜ୍ରନାଭଙ୍କ ପୁତ୍ର ଥିଲେ ଖଗଣ ଓ ତାଙ୍କ ପୁତ୍ର ବିଧୃତି ହୋଇଥିଲେ । ବିଧୃତିଙ୍କ ପୁତ୍ର ହିରଣ୍ୟନାଭ । ଏହି ରାଜା ଯୋଗାଚାର୍ଯ୍ୟ ରୂପେ ସଂସାରରେ ପ୍ରସିଦ୍ଧ ହୋଇଥିଲେ । ଭଗବାନ୍ ଜୈମିନିଙ୍କଠାରୁ ଏହିରାଜା ଯୋଗଶିକ୍ଷା କରିଥିଲେ । ଏହି ଯୋଗୀ ଏତେ ପ୍ରଭାବଶାଳୀ ହୋଇଥିଲେ ଯେ, କୋଶଳ ଦେଶବାସୀ ଯାଜ୍ଞବଲ୍କ୍ୟ ଋଷି ଏହାଙ୍କ ଶିଷ୍ୟ

ହୋଇଥିଲେ । କ୍ଷତ୍ରିୟ ହୋଇଥିଲେ ମଧ୍ୟ ସେ ବ୍ରାହ୍ମଣଙ୍କର ଗୁରୁ ହୋଇଥିଲେ ଏବଂ ମହର୍ଷି ଯାଜ୍ଞବଲ୍କ୍ୟନ୍ ଏହାଙ୍କଠାରୁ ଅଧ୍ୟାତ୍ମ ଯୋଗ ଶିକ୍ଷା କରିଥିଲେ ।

ରାଜା ହିରଣ୍ୟନାଭଙ୍କ ପୁତ୍ର ପୁଷ୍ୟ ଓ ପୁଷ୍ୟଙ୍କ ପୁତ୍ର ଧ୍ରୁବସନ୍ଧି ହୋଇଥିଲେ । ଧ୍ରୁବସନ୍ଧିଙ୍କ ପୁତ୍ର ସୁଦର୍ଶନ ଓ ତାଙ୍କ ପୁତ୍ର ଥିଲେ—ପରମ ତେଜସ୍ୱୀ ଅଗ୍ନିବର୍ଣ୍ଣ । ତାଙ୍କ ପୁତ୍ର ଶୀଘ୍ର ଓ ଶୀଘ୍ରଙ୍କ ପୁତ୍ର ଥିଲେ ଚରଜୀବୀ ମରୁ ।

ମହାରାଜ ମରୁ ପରମ ଯୋଗୀ ଥିଲେ । ଏହି ରାଜାଙ୍କର ଗୋଟିଏ ପୁତ୍ର ହେବା ପରେ, ସେ ରାଜ୍ୟପଦ ଛାଡ଼ି ଦେଇ ଗନ୍ଧମାଦନ ପର୍ବତର ବଦରୀବନ ନିକଟରେ କଳାପ ନାମକ ଗ୍ରାମରେ ତପସ୍ୟା କରିଥିଲେ । ସେ ବର୍ତ୍ତମାନ ସୁଦ୍ଧା କଳାପ ଗ୍ରାମରେ ତପସ୍ୟା କରୁଛନ୍ତି ଏବଂ କଳିଯୁଗର ଶେଷ ପର୍ଯ୍ୟନ୍ତ ସେ ତପସ୍ୟା କରିବେ । କଳିଯୁଗରେ ସୂର୍ଯ୍ୟବଂଶ ନଷ୍ଟ ହୋଇଯିବ । ତା'ପରେ ସତ୍ୟଯୁଗ ଆସିଲେ ଧର୍ମପ୍ରତି ଲୋକମାନଙ୍କର ରୁଚି ଜାତ ହେବ । ତା'ପରେ ଧର୍ମ ଚାରିପାଦରେ ପ୍ରତିଷ୍ଠିତ ହୋଇଯିବ । ସେତେବେଳେ ସୂର୍ଯ୍ୟବଂଶୀୟ ରାଜାମାନେ ପୁଣି ବଂଶ ସ୍ଥାପନା କରିବେ । ଆଗାମୀ ଦ୍ୱାପରରେ ଯେଉଁ ବ୍ୟାସ ହେବେ, ସେ ସୂର୍ଯ୍ୟବଂଶୀୟ ରାଜାମାନଙ୍କ ବର୍ଣ୍ଣନା କରିବେ । ତା'ପରେ ରାଜା ମରୁଙ୍କ ପରେ ଯେଉଁ ରାଜାମାନେ ହେଲେ, ସେମାନେ ନିତାନ୍ତ ସାଧାରଣ ରାଜା ରୂପେ ପ୍ରଖ୍ୟାତ ହୋଇଥିଲେ । ସେମାନଙ୍କଠାରେ ଭଗବାନ୍‌ଙ୍କ ଅଂଶ ବିଶେଷ ଭାବରେ ନଥିଲା ।

ପ୍ରଥମ ଯୁଗରେ ରାଜାମାନେ ଲକ୍ଷେ ବର୍ଷ ପର୍ଯ୍ୟନ୍ତ ବଞ୍ଚି ରହୁଥିଲେ । କିନ୍ତୁ କଳିଯୁଗର ରାଜାମାନେ ଅଳ୍ପଦିନ ମଧ୍ୟରେ ପଞ୍ଚତ୍ୱ ପ୍ରାପ୍ତ ହେବେ ।

ମରୁଙ୍କ ପୁତ୍ର ପ୍ରସୁଶ୍ରୁତ, ତାଙ୍କର ପୁତ୍ର ସନ୍ଧି ଓ ସନ୍ଧିଙ୍କ ପୁତ୍ର ଅମର୍ଷଣ ହୋଇଥିଲେ । ମହାରାଜ ଅମର୍ଷଣଙ୍କ ପୁତ୍ର ମହସ୍ୱାନ୍ ଓ ମହସ୍ୱାନ୍‌ଙ୍କ ପୁତ୍ର ବିଶ୍ୱସାହ୍ୱ, ତାଙ୍କ ପୁତ୍ର ପ୍ରସେନଜିତ୍ ଏବଂ ପ୍ରସେନଜିତ୍‌ଙ୍କ ପୁତ୍ର ତକ୍ଷକ ହୋଇଥିଲେ । କୋଶଳାଧିପ ମହାରାଜ ତକ୍ଷକ ମହାଭାରତ ଯୁଦ୍ଧ ପର୍ଯ୍ୟନ୍ତ ରହିଥିଲେ । ତାଙ୍କ ପୁତ୍ର ବୃହଦ୍‌ବଳ ଶୂରବୀର ଥିଲେ । ତାଙ୍କ ପୁତ୍ର ଥିଲେ ବୃହଦ୍‌ରଣ । ଏହି ପିତା ପୁତ୍ର ଦୁହେଁ ମହାଭାରତ ଯୁଦ୍ଧରେ ମୃତ୍ୟୁ ବରଣ କରିଥିଲେ । ମହାରାଜ ବୃହଦ୍‌ବଳଙ୍କୁ ଅର୍ଜୁନଙ୍କ ପୁତ୍ର ଅଭିମନ୍ୟୁ ବଧ କରିଥିଲେ । ତା'ପରେ ଅନ୍ୟାନ୍ୟ ରାଜାମାନେ ମିଶି ଅଭିମନ୍ୟୁଙ୍କୁ ଅଧର୍ମ ଯୁଦ୍ଧରେ ସଂହାର କରିଥିଲେ ।

ଏହାପରେ ଶୌନକ ପଚାରିଲେ—ହେ ସୂତ ମହର୍ଷି, କୋଶଳରାଜ ବୃହଦ୍‌ବଳଙ୍କୁ ଅଭିମନ୍ୟୁ କିପରି ବଧ କଲେ ଏବଂ ପୁଣି ଅନ୍ୟାନ୍ୟମାନେ ମିଶି କିପରି

ଅଭିମନ୍ୟୁଙ୍କୁ ମୃତ୍ୟୁମୁଖରେ ପକାଇଥିଲେ, ସେହି ବୃତ୍ତାନ୍ତ ଆପଣ ଆମମାନଙ୍କୁ ଶୁଣାଇ କୃତାର୍ଥ କରନ୍ତୁ ।

ସୂତ ମୁନି ସେହି ଆଖ୍ୟାନ ସଂକ୍ଷେପରେ ଶୁଣାଇ କହିଲେ—ଭୀଷ୍ମଙ୍କ ପରେ ଦୁର୍ଯ୍ୟୋଧନ ଗୁରୁଦ୍ରୋଣଙ୍କୁ ସେନାପତି ପଦରେ ବରଣ କରିଥିଲେ । ଦ୍ରୋଣ ଗୋଟିଏ ଚକ୍ରବ୍ୟୂହ ନିର୍ମାଣ କରିଥିଲେ । ଅର୍ଜୁନଙ୍କ ଅନୁପସ୍ଥିତିରେ ମହାରାଜ ଯୁଧିଷ୍ଠିରଙ୍କ ଭାଳେଣି ପଡ଼ିଲା । ସେ ପଚାରିଲେ—"ଚକ୍ରବ୍ୟୂହକୁ କିଏ ଭେଦନ କରିବ ?" ବୀର ଅଭିମନ୍ୟୁ ଏଥିପାଇଁ ପ୍ରସ୍ତୁତ ହୋଇଗଲେ । ବୀର ଅଭିମନ୍ୟୁ ମାତୃଗର୍ଭରେ ଥିବା ବେଳେ ଚକ୍ରବ୍ୟୂହର ଯୁଦ୍ଧ ବୃତ୍ତାନ୍ତ ଶୁଣିଥିଲେ । ତେଣୁ ସେ ସିଂହନାଦ କରି କରି ଚକ୍ରବ୍ୟୂହ ଭିତରକୁ ପଶିଗଲେ ଏବଂ ଅନେକ ସୈନ୍ୟଙ୍କୁ ସଂହାର କରି ବଡ଼ ବଡ଼ ଯୋଦ୍ଧା-ମାନଙ୍କୁ ଆହ୍ୱାନ କରିଥିଲେ । ସେ ସମସ୍ତ ବୀରଙ୍କୁ ଯୁଦ୍ଧରେ ପରାସ୍ତ କରି ବ୍ୟୂହଭେଦ କରିବାରେ ଅଗ୍ରସର ହେଲେ । ତେଣୁ ଛଅଜଣ ମହାରଥୀ ମିଶି ଘେରି ଅଭିମନ୍ୟୁଙ୍କ ସହିତ ଯୁଦ୍ଧ କରିଥିଲେ । ଏହି ଛଅଜଣ ମହାରଥୀ ହେଲେ—ଦ୍ରୋଣାଚାର୍ଯ୍ୟ, ଅଶ୍ୱତ୍ଥାମା, କୃପାଚାର୍ଯ୍ୟ, ହାର୍ଦ୍ଦିକ, କୃତବର୍ମ୍ମା, ପ୍ରଥମରୂ ବୃହଦ୍ବଳ ନିଧନ ହୋଇଥିଲେ ।

ପ୍ରଥମେ ବୀର ଅଭିମନ୍ୟୁ ସମସ୍ତଙ୍କୁ ଅସ୍ତବ୍ୟସ୍ତ କରିଦେଲେ । ଏହି ସମୟରେ ସେଠାରେ ଯୁଦ୍ଧ କରୁ ନଥିବା କୋଶଳ ଦେଶର ରାଜା ତକ୍ଷକ ଅଭିମନ୍ୟୁଙ୍କୁ 'କର୍ଣ୍ଣି' ନାମକ ଗୋଟିଏ ତୀକ୍ଷ୍ଣଶର ମାରିଥିଲେ । ଏହା ଥିଲା—ଧର୍ମ ବିରୁଦ୍ଧ ଯୁଦ୍ଧ, ଅଭିମନ୍ୟୁ ଏହା ଫଳରେ କ୍ଷୁବ୍ଧ ହୋଇଗଲେ । ସେ ଗୋଟିଏ ବାଣମାରି କୋଶଳ ରାଜାଙ୍କ ରଥ, ଘୋଡ଼ା ଓ ଧ୍ୱଜକୁ କାଟି ଦେଇ ତାଙ୍କୁ ବିରଥ କରି ଦେଲେ । ତହୁଁ କୋଶଳ ରାଜ ଢାଲ ଓ ତରବାରି ଧରି ଅଭିମନ୍ୟୁଙ୍କୁ ଆକ୍ରମଣ କଲେ । ତାଙ୍କୁ ସାହାଯ୍ୟ କରିବାପାଇଁ ଅନ୍ୟାନ୍ୟ ଯୋଦ୍ଧାମାନେ ଘେରିଗଲେ ।

ଯା' ହେଉ, ସେ ଯୁଦ୍ଧରେ ଅଭିମନ୍ୟୁଙ୍କ ମୃତ୍ୟୁ ହୋଇଥିଲେ ମଧ୍ୟ ମହାଭାରତ ଯୁଦ୍ଧରେ ପାଣ୍ଡବମାନେ ବିଜୟୀ ହୋଇଥିଲେ । ତକ୍ଷକ ଓ ବୃହଦ୍ବଳ ମହାଭାରତ ଯୁଦ୍ଧରେ ପ୍ରାଣ ହରାଇବା ପରେ ବୃହଦ୍ବଳଙ୍କ ପୁତ୍ର ବୃହଦ୍ରଣ ରାଜା ହୋଇଥିଲେ । ବୃହଦ୍ରଣଙ୍କ ପୁତ୍ର ଥିଲେ ଉରୁକ୍ରିୟ, ତାଙ୍କ ପୁତ୍ର ବତ୍ସବୃଦ୍ଧ, ତାଙ୍କ ପୁତ୍ର ପ୍ରତିବ୍ୟୋମ, ପ୍ରତିବ୍ୟୋମଙ୍କ ପୁତ୍ର ଭାନୁ, ଭାନୁଙ୍କ ପୁତ୍ର ଦିବାକ, ତାଙ୍କ ପୁତ୍ର ସହଦେବ, ତାଙ୍କ ପୁତ୍ର ବୃହଦଶ୍ୱ, ତାଙ୍କ ପୁତ୍ର ଭାନୁମାନ୍, ଭାନୁମାନ୍ଙ୍କ ପୁତ୍ର ପ୍ରତୀକାଶ୍ୱ ଏବଂ ତାଙ୍କ ପୁତ୍ର ପରମ ତେଜସ୍ୱୀ ସୁପ୍ରତୀକ ହୋଇଥିଲେ । ତା'ପରେ ଯଥାକ୍ରମେ ମରୁଦେବ, ସୁନକ୍ଷତ୍ର, ପୁଷ୍କର, ଅନ୍ତରୀକ୍ଷ, ସୁତପା, ଅମିତ୍ରଜିତ୍, ବୃହଦ୍ରାଜ, ବର୍ହି, କୃତଞ୍ଜୟ, ରଣଞ୍ଜୟ ଓ ସଞ୍ଜୟ ରାଜା ହୋଇଥିଲେ । ସଞ୍ଜୟଙ୍କ ପୁତ୍ର ଶାକ୍ୟ ଏବଂ ତାଙ୍କ ପରେ ପୁତ୍ର ପରମ୍ପରାରେ ଶୁଦ୍ଧୋଦ,

ଲାଙ୍ଗଲ, ପ୍ରସେନଜିତ୍, କ୍ଷୁଦ୍ରକ, ରଣକ, ସୁରଥ ଓ ସୁମିତ୍ର ରାଜା ହୋଇଥିଲେ । ସୁମିତ୍ର ଥିଲେ—ସେହି ବଂଶର ଶେଷରାଜା । ତାଙ୍କ ପରେ କୋଶଳରେ ଆଉ କେହି ସୂର୍ଯ୍ୟ-ବଂଶୀୟ ରାଜା ସିଂହାସନରେ ବସି ନଥିଲେ ।

ଏହା ଶୁଣି ଶୌନକ କହିଲେ—"ହେ ମୁନିବର ! ବର୍ତ୍ତମାନ ଆର୍ଯ୍ୟାବର୍ତ୍ତରେ ଅନେକ ସୂର୍ଯ୍ୟବଂଶୀ ରାଜା ଅଛନ୍ତି । ଆପଣ କପରି କହୁଛନ୍ତି ଯେ, ସୁମିତ୍ରଙ୍କ ପରେ ସୂର୍ଯ୍ୟବଂଶ ବୁଡ଼ି ଯାଇଥିଲା !"

ତା' ଶୁଣି ସୂତ ମୁନି କହିଲେ—"କହିବାକୁ ଗଲେ, ଆଜିକାଲି ବହୁ ବଂଶ ରହିଛି । କିନ୍ତୁ ପ୍ରକୃତରେ ଦେଖିବାକୁ ଗଲେ, ବିଶୁଦ୍ଧ ବଂଶ ପରମ୍ପରା ଆଉ ରହିଲା ନାହିଁ । ଏଥିରେ କାହାରି ଦୋଷ ନାହିଁ । ଏହା ହେଉଛି—କଳିଯୁଗର ସ୍ୱଭାବ । କଳିଯୁଗର ଲୋକମାନେ ଅଧର୍ମକୁ ଉନ୍ନତିର ସୋପାନ ବୋଲି ମନେ କରନ୍ତି । ସେମାନେ ଅଜ୍ଞାନରେ ବଶୀଭୂତ ହୋଇ ପଶୁପରି ଆଚରଣ କରିବେ । ଏବେ ବର୍ଣ୍ଣାଶ୍ରମ ଧର୍ମ ସଂସାରରେ ନାହିଁ । ବ୍ରହ୍ମଚର୍ଯ୍ୟ ଶବ୍ଦ କେବଳ ଶବ୍ଦ ଭଣ୍ଡାରର ଶୋଭାବର୍ଦ୍ଧନ କରୁଛି । ଶୁଦ୍ଧ ଆଚରଣ, ବିଶୁଦ୍ଧ ଚିନ୍ତା ଓ ଭଦ୍ର ବ୍ୟବହାର ସମାଜରୁ ଲୋପ ପାଇଗଲାଣି । ଚାରିବର୍ଣ୍ଣ ସେମାନଙ୍କ ଆଚାର ବିଚାର ଭୁଲି ଗଲେଣି ଏବଂ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ମଧ୍ୟରେ ବର୍ତ୍ତମାନ ବର୍ଣ୍ଣସଙ୍କରତ୍ୱ ବୃଦ୍ଧି ପାଇଗଲାଣି ।"

କୁଳରକ୍ଷାର ଦାୟିତ୍ୱ ସ୍ତ୍ରୀମାନଙ୍କର । ସ୍ତ୍ରୀମାନେ ନିର୍ମଳ ଚରିତ୍ର ହେଲେ, ବଂଶର ବିଶୁଦ୍ଧତା ରହିଥାଏ । ସ୍ତ୍ରୀମାନେ ଦୂଷିତା ହେଲେ ବଂଶ ଦୂଷିତ ହୋଇଯାଏ । ବର୍ଣ୍ଣସଙ୍କର ସମାଜରେ ବୃଦ୍ଧି ପାଇଲେ, ଧର୍ମ ଭାବନା ଲୋପ ପାଇଥାଏ । ଲୋକମାନେ ଧର୍ମାଧର୍ମ ବିଚାର ନ କରି କେବଳ ବୈଷୟିକ ଅଭିବୃଦ୍ଧିରେ ମାତି ଥାଆନ୍ତି । ପୁରୁଷମାନେ ପାପ କର୍ମରେ ମାତି ଯାଆନ୍ତି ଏବଂ ପ୍ରତ୍ୟେକ କାମରେ କପଟତା ରହିଥାଏ । କଳିଯୁଗର ସ୍ତ୍ରୀମାନେ ସନ୍ତାନ ଉତ୍ପାଦନକୁ ଭାର ସ୍ୱରୂପ ମଣି ଥାଆନ୍ତି । ତା'ଫଳରେ ବର୍ଣ୍ଣସଙ୍କର ସନ୍ତାନ ଉତ୍ପନ୍ନ ହୋଇ ଜନ୍ମର ବିଶୁଦ୍ଧତା ନଷ୍ଟ ହୋଇଯାଏ । ହେ ମୁନିଗଣ ! ତା'ଫଳରେ ବିଶୁଦ୍ଧ କ୍ଷତ୍ରିୟ ବଂଶ ନଷ୍ଟ ହୋଇ ଯାଇଥାଏ । ଏଥିରେ କାହାରି କିଛି କରିବାର ନାହିଁ । ଯାହା କିଛି ହେଉଛି ବା ହେବ; ସବୁ କିଛି ଈଶ୍ୱରଙ୍କ ଇଚ୍ଛାନୁସାରେ ଘଟିବ ।

ତହୁଁ ଶୌନକ ପଚାରିଲେ—"ସୂତ ମହୋଦୟ ! ଆପଣ କହୁଛନ୍ତି, ସବୁ କିଛି ଈଶ୍ୱରଙ୍କ ଇଚ୍ଛାନୁସାରେ ଘଟୁଛି ଏବଂ ଯୁଗଧର୍ମର ପ୍ରଭାବରେ ସବୁକିଛି ହେଉଛି । କିନ୍ତୁ ଶାସ୍ତ୍ରରେ ସେ ବିଷୟ ବର୍ଣ୍ଣନା କରାଯାଇ ବାରମ୍ବାର ତା'ର ନିନ୍ଦା କରା ଯାଉଛି । କାହିଁକି ?"

ସୂତ ମହର୍ଷି କହିଲେ—"ଆପଣ ସତ କଥା ପଚାରିଛନ୍ତି ଯେ···ଶାସ୍ତ୍ର ସେ ବିଷୟରେ ବର୍ଣ୍ଣନା କରିବାର ଉଦ୍ଦେଶ୍ୟ ହେଉଛି—ଯାହାକୁ ତୁମେ ଉନ୍ନତି ବୋଲି

କହୁଛ, ପ୍ରକୃତରେ ତାହା ଉନ୍ନତ ନୁହେଁ ବରଂ ତାହା ଅବନତ । ତୁମେମାନେ ଯାହାକୁ ଧର୍ମ ବୋଲି ଡେଙ୍ଗୁରା ପିଟୁଛ, ତାହା ପ୍ରକୃତରେ ଅଧର୍ମ ଅଟେ ।"

ଶୌନକ ପଚାରିଲେ—"ତା' ହେଲେ ମୁନିବର ! କଳିଯୁଗର ଲୋକମାନେ ଉଦ୍ଧାର ପାଇବେ କପରି ?"

"କଳିଯୁଗର ଲୋକମାନେ ଭଗବନ୍ତ ନାମ କୀର୍ତ୍ତନ ଫଳରେ ଉଦ୍ଧାର ପାଇ ପାରିବେ । ସେମାନଙ୍କ ପକ୍ଷରେ କେବଳ 'ରାମନାମ' ହେବ ଉଦ୍ଧାର ପାଇବାର ମୂଳମନ୍ତ୍ର । ଯେଉଁ ବ୍ୟକ୍ତି 'ରାମନାମ'କୁ ଗଣ୍ଠିଧନ କରି ଜପ ଓ କୀର୍ତ୍ତନରେ କାଳ ବିତାଇବେ, ସେମାନେ କଳିଯୁଗରେ ଉଦ୍ଧାର ପାଇବେ ।"

ସୂତ ମହର୍ଷି କହିଲେ—"ହେ ଶୌନକ ! ମୁଁ ତୁମମାନଙ୍କ ଆଗରେ ମନୁଙ୍କଠାରୁ ଆରମ୍ଭ କରି ସୁମିତ୍ର ପର୍ଯ୍ୟନ୍ତ ରାଜାମାନଙ୍କ ବର୍ଣ୍ଣନା କଲି । ଏଥର ଆଉ ଆପଣମାନେ କ'ଣ ଶୁଣିବାକୁ ଚାହୁଁଛନ୍ତି ?"

ତହୁଁ ଶୌନକ ପଚାରିଲେ—"ସୂତ ମହୋଦୟ ! ଆପଣ ବୈବସ୍ଵତ ମନୁଙ୍କର ଇକ୍ଷ୍ଵାକୁ, ନୃଗ, ଶର୍ଯ୍ୟାତି, ଦିଷ୍ଟ ଆଦି ଦଶ ଜଣ ପୁତ୍ରଙ୍କ ନାମ କହିଥିଲେ । ଏମାନଙ୍କ ମଧ୍ୟରେ ପୃଷଧ୍ର ଆଦି ରାଜାମାନଙ୍କ ବିଷୟରେ ବର୍ଣ୍ଣନା କରିଗଲେ । କିନ୍ତୁ ଆପଣ ସେମାନଙ୍କ ବଂଶଲତାର ବର୍ଣ୍ଣନା ପ୍ରସଙ୍ଗରେ କହିଥିଲେ । ବର୍ତ୍ତମାନ ଆପଣ ନିମି ଓ ଦଣ୍ଡକଙ୍କ ବଂଶ ସମ୍ବନ୍ଧରେ ବର୍ଣ୍ଣନା କରନ୍ତୁ ।"

ସୂତ ମହର୍ଷି କହିଲେ—"ହେ ଶୌନକ ! ମହାରାଜ ନିମିଙ୍କ ବଂଶ ଅତ୍ୟନ୍ତ ପବିତ୍ର ଅଟେ । ପ୍ରଥମେ ମୁଁ ସେହି ବଂଶ ବିଷୟରେ ଶୁଣାଇ ତା'ପରେ ଦଣ୍ଡକଙ୍କ ବଂଶ ସମ୍ବନ୍ଧରେ ଶୁଣାଇବି ।"

## **ଛପ୍ପୟ**

**"ମରୁତେଁ ଅଷ୍ଟମ ପୀଢ଼ିମାଁହି ନୃପ ଭୟେ ବୃହଦ୍‌ବଲ ।**
**ଜିନକୀ ଦ୍ଵାପର ମାଁହି ଭଈ କୀରତି ଅତି ଉଜ୍ଜଲ ॥**
**ଭାରତମହଁ ଅଭିମନ୍ୟୁ ସଙ୍ଗ ଲଢ଼ି ସ୍ଵର୍ଗ ସିଧାରେ ।**
**କୁମର ବୃହଦ୍‌ରଣ ବଚେ ବନେ ରାଜା ଅତି ବାରେ ॥**
**ପୀଢ଼ୀ ଉନ୍ତସମହଁ ଭୟେ, ଅନ୍ତିମ ନୃପତି ସୁମିତ୍ର ବର ।**
**ଫିର୍ କଲିମହଁ ଇକ୍ଷ୍ଵାକୁ କେ, ରହେଂ ବଞ୍ଚୁଷ ନ ବଂଶଧର ॥"**

●

# ନିମି ବଂଶ ବର୍ଣ୍ଣନ

"ନିମିରିକ୍ଷ୍ୱାକୁତନୟୋ ବଶିଷ୍ଠମବୃତର୍ତ୍ୱିଜମ୍ ।
ଆରଭ୍ୟ ସତ୍ରଂ ସୋଽପ୍ୟାହ ଶକ୍ରେଣ ପ୍ରାଗ୍‌ବୃତୋଽସ୍ମି ଭୋଃ ॥
ତଂ ନିର୍ବର୍ତ୍ୟାଗମିଷ୍ୟାମି ତାବନ୍ମାଂ ପ୍ରତିପାଳୟ ।
ତୂଷ୍ଣୀମାସୀଦ୍ ଗୃହପତିଃ ସୋଽପୀନ୍ଦ୍ରସ୍ୟାକରୋନ୍ମଖମ୍ ॥"

(ଶ୍ରୀଭା. ୯ସ୍କ-୧୩ଅ, ୧-୨ଶ୍ଲୋ)

## ଛପ୍‌ପୟ

"ଅବ ଇକ୍ଷ୍ୱାକୁ କୁମାର ଦ୍ୱିତୀୟ ନିମିବଂଶ ସୁନାଉଁ ।
ଗୁରୁ ବଶିଷ୍ଠହିଂ କହ୍ୟୋ ନୃପତି, ହୌଂ ଯଜ୍ଞ କରାଉଁ ॥
ଋତ୍ୱିଜ ବନ ଗୁରୁଦେବ ! ଯଥା ବିଧି ମଖ କରଓ୍ୱାଓ୍ୱୈଂ ।
ବୋଲେ ଗୁରୁ-ସୁରରାଜ ବୁଲାୟୋ ତହଁ ହ୍ୱୈ ଆଓ୍ୱୈଂ ॥
ଭୟୋ ମୌନ ସୁନି ନିମି ନୃପତି, ଇନ୍ଦ୍ର ଯଜ୍ଞ ହିତ ଗୁରୁ ଗୟୋ ।
କ୍ଷଣ ଭଂଗୁର ଜୀବନ ନିରଖି, ଶାନ୍ତ ନୃପ ସୋଽବତ ଭୟୋ ॥"

ଅର୍ଥାତ୍—ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ! ମହାରାଜ ଇକ୍ଷ୍ୱାକୁଙ୍କ ପୁତ୍ର ନିମି ଗୋଟିଏ ଯଜ୍ଞ ଆରମ୍ଭ କରିଥିଲେ । ସେଥିରେ ସେ ବଶିଷ୍ଠଙ୍କୁ ଋତ୍ୱିକ ରୂପେ ବରଣ କରିଥିଲେ । ବଶିଷ୍ଠ କହିଲେ—ମୋତେ ପ୍ରଥମରୁ ଇନ୍ଦ୍ର ବରଣ କରି ସାରିଛନ୍ତି । ସେଠାରୁ ଯଜ୍ଞ ଶେଷ କରି ଆସିବା ପର୍ଯ୍ୟନ୍ତ ତୁମେ ମୋତେ ଅପେକ୍ଷା କରି ରୁହ । ଏହି ଶୁଣି ଗୃହପତି ରାଜା ନିମି ନୀରବ ହୋଇଗଲେ ଏବଂ ବଶିଷ୍ଠ ଇନ୍ଦ୍ରଙ୍କ ଯଜ୍ଞ କରିବାକୁ ଚାଲିଗଲେ ।"

'ଜୀବନଠାରୁ ଜୀବିକା ହେଉଛି ପ୍ରିୟତର' ବୋଲି ଗୋଟିଏ ଲୋକୋକ୍ତି ରହିଛି । ଜୀବିକାପାଇଁ ବ୍ୟକ୍ତି ଜୀବନକୁ ପାଣି ଛଡ଼ାଇ କାମରେ ଲାଗିଯାଏ । ପଦେ

ପରି ମୁଖ୍ୟରେ ଭଯ୍ ଥିଲେ ମଧ୍ୟ ମନୁଷ୍ୟ ସମୁଦ୍ରରେ ନୌକା ଚଳାଇ ଯାତ୍ରା କରେ । ଜୀବିକାପାଇଁ ମଣିଷ ହଜାର ହଜାର ହାତ ଗଭୀର ଖଣିରେ କାମ କରିଥାଏ । ଧୃତରାଷ୍ଟ୍ରଙ୍କ ପରୋକ୍ଷ ବିଧାନ କମିତ୍ତ ମନୁଷ୍ୟ ସିଂହ, ବ୍ୟାଘ୍ର, ଷଣ୍ଢ ଓ ହାତୀମାନଙ୍କ ସହିତ ଯୁଦ୍ଧ କରେ । ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ ଓ ଶୂଦ୍ର ସମସ୍ତେ ପରସ୍ପରର ଜୀବିକା ପାଇଁ ଲଢ଼େଇ କରିଥାଆନ୍ତି । ମନୁଷ୍ୟ ପଦପଦବୀ, ଧନ ଓ ପ୍ରତିଷ୍ଠା ଲାଭ ପାଇଁ ଲଢ଼େଇ କରିଥାଏ ।

ସୂତ କହିଲେ—"ମୁନିଗଣ ! ମୁଁ ଆପଣମାନଙ୍କ ଆଗରେ ବ୍ରହ୍ମାଙ୍କ ପୁତ୍ର ମନୁଙ୍କ ବିଷୟରେ କହୁଛି । ମନୁଙ୍କ ପୁତ୍ର ଇକ୍ଷ୍ୱାକୁ ଥିଲେ, ତାଙ୍କର ଶହେ ପୁତ୍ରଙ୍କ ମଧ୍ୟରେ ବିକୁକ୍ଷି (ଶଶାଦ) ନିମି ଓ ଦଣ୍ଡକ ପ୍ରଧାନ ଥିଲେ । ବିକୁକ୍ଷିଙ୍କ ବଂଶର ବର୍ଣ୍ଣନା ମୁଁ କରିସାରିଛି । ଏଥର ନିମିଙ୍କ ବଂଶ ବର୍ଣ୍ଣନା କରୁଛି, ଶୁଣନ୍ତୁ ।"

ମହାରାଜ ନିମି ଅତ୍ୟନ୍ତ ପ୍ରଜାବତ୍ସଳ ଓ ଧାର୍ମିକ ଥିଲେ । ସେ ସଦାସର୍ବଦା ଯାଗଯଜ୍ଞରେ ମନ ବଳାଇଥିଲେ । ମନୁବଂଶର ପୁରୋହିତ ଥିଲେ ବଶିଷ୍ଠ । ସେ ଦେବଂଶର ଯାଗଯଜ୍ଞ କରାଉଥିଲେ । ଥରେ ମହାରାଜ ନିମି ଗୋଟିଏ ବଡ଼ ଧରଣର ଯଜ୍ଞ କରିବାକୁ ଇଚ୍ଛା କଲେ ।

ସେ ସେଥିପାଇଁ ଯାଇ ବଶିଷ୍ଠଙ୍କ ନିକଟରେ ପହଞ୍ଚିଲେ । ବଶିଷ୍ଠ ନିମିରାଜାଙ୍କ ଆଗମନର କାରଣ ଜାଣିପାରି କହିଲେ—"ରାଜନ୍ ! ଦେବରାଜ ଇନ୍ଦ୍ର ସୁମେରୁ ପର୍ବତ ଉପରେ ଗୋଟିଏ ବଡ଼ ଯଜ୍ଞ କରିବାକୁ ଆୟୋଜନ କରିଛନ୍ତି । ଆପଣଙ୍କ ଆସିବା ପୂର୍ବରୁ ସେ ମୋତେ ସେହି ଯଜ୍ଞପାଇଁ ବରଣ କରି ସାରିଛନ୍ତି । ତେଣୁ ମୁଁ ବର୍ତ୍ତମାନ ଗୋଟିଏ ଧର୍ମସଙ୍କଟରେ ପଡ଼ିଛି ।"

ତହୁଁ ରାଜା ନିମି ହାତଯୋଡ଼ି କହିଲେ—"ଗୁରୁଦେବ ! ଇନ୍ଦ୍ର ହେଉଛନ୍ତି—ସ୍ୱର୍ଗର ଅଧିପତି । ସେ ଇଚ୍ଛା କଲେ ଯେ କୌଣସି ଋଷିଙ୍କ ଦ୍ୱାରା ଯଜ୍ଞ କରାଇ ପାରିବେ । କିନ୍ତୁ ଆପଣ ହେଉଛନ୍ତି ମୋର ଏକମାତ୍ର ଆଧାର । ତେଣୁ ଆପଣ ପ୍ରଥମେ ମୋ' ଯଜ୍ଞ କରାଇ ଦିଅନ୍ତୁ ।"

ବଶିଷ୍ଠ ରାଜା ନିମିଙ୍କୁ ବୁଝାଇ କହିଲେ—"ରାଜନ୍ ! ଯଜ୍ଞ କରିବାପାଇଁ ସ୍ୱୀକୃତ ପ୍ରଦାନ କରି ନ ଯିବା, ମହାନ୍ ପାପ । ମୁଁ ପ୍ରଥମରୁ ତାଙ୍କ ଯଜ୍ଞପାଇଁ ସ୍ୱୀକୃତ ଦେଇ ସାରିଛି । ତେଣୁ ସେଠାକୁ ଯିବା ମୋର ପ୍ରଥମ କର୍ତ୍ତବ୍ୟ । ମୁଁ ସେଠାରୁ ଫେରି ଆସି ଆପଣଙ୍କ ଯଜ୍ଞ କରାଇ ଦେବି । ଆପଣ ଅପେକ୍ଷା କରନ୍ତୁ ।"

ରାଜା ନିମି କିଛି ଉତ୍ତର ନ ଦେଇ ନୀରବ ରହିଲେ । ସେ ଭାବିଲେ—ମୁଁ ତ ଯଜ୍ଞ ନିଶ୍ଚୟ କରିବି । ଧର୍ମ କାର୍ଯ୍ୟରେ ବିଳମ୍ବ କରିବା ଉଚିତ ହେବ ନାହିଁ । କାରଣ ଧର୍ମକାର୍ଯ୍ୟ ଲାଗି ମନରେ ଇଚ୍ଛା ଜାତ ହେବାମାତ୍ରେ, ତାହା ସଙ୍ଗେ ସଙ୍ଗେ ପୂରଣ

କରିଦେବା ଉଚିତ । ଇନ୍ଦ୍ରଙ୍କ ଯଜ୍ଞ କେବେ ଶେଷ ହେବ କିଏ ଜାଣେ ? ଗୁରୁଦେବ ସେଠାରେ ବ୍ୟସ୍ତ ରହିବେ । ତେଣୁ ମୁଁ ଅନ୍ୟ କାହାର ଦ୍ୱାରା ଯଜ୍ଞ କରାଇ ନେଲେ କ୍ଷତି କ'ଣ ? ଏଥିରେ ଗୁରୁଦେବ ବଶିଷ୍ଠ ମଧ୍ୟ ଅସନ୍ତୁଷ୍ଟ ହେବେ ନାହିଁ । ଏହା ଭାବି ନମିରାଜା ନିଜ ଯଜ୍ଞ ଆରମ୍ଭ କରାଇ ଦେଲେ ।

ରାଜା ନମିଙ୍କ ନୀରବତାରୁ ବଶିଷ୍ଠ ଭାବିଲେ—"ଯଜମାନ ମୋ' କଥା ମାନି ଯଜ୍ଞ ସ୍ଥଗିତ ରଖିଲେ । ମୁଁ ଇନ୍ଦ୍ରଙ୍କ ଯଜ୍ଞ ଶେଷ କରି ଆସିବା ଯାଏଁ, ସେ ମୋତେ ଅପେକ୍ଷା କରି ରହିବେ ।"

ବଶିଷ୍ଠ ଇନ୍ଦ୍ରଙ୍କ ଯଜ୍ଞ ଶେଷ କରି ଶୀଘ୍ର ଫେରି ଆସିଲେ । ସେତେବେଳକୁ ନମି ରାଜାଙ୍କ ଯଜ୍ଞ ଆରମ୍ଭ ହୋଇ ସାରିଥିଲା । ଏହା ଦେଖି ବଶିଷ୍ଠ ରାଗରେ ଅଗ୍ନିଶର୍ମା ହୋଇଗଲେ ।

ବଶିଷ୍ଠଙ୍କୁ ନିଜ ଯଜ୍ଞଶାଳାରେ ଦେଖି ନମିରାଜା ଆସନରୁ ଉଠିପଡ଼ି ତାଙ୍କୁ ସ୍ୱାଗତ ଜଣାଇଲେ । ତହୁଁ ବଶିଷ୍ଠ ରାଜା ନମିଙ୍କ ପାଦ୍ୟ ଓ ଅର୍ଘ୍ୟ ଗ୍ରହଣ ନ କରି କହିଲେ—"ମୁଁ ତୁମକୁ ଅପେକ୍ଷା କରିବାପାଇଁ କହି ଇନ୍ଦ୍ରଙ୍କ ଯଜ୍ଞକୁ ଗଲି । ସେଠାରେ କାର୍ଯ୍ୟ ଶେଷ କରି ଶୀଘ୍ର କେବଳ ତୁମରି କାମପାଇଁ ଫେରି ଆସୁଛି । ତୁମେ ମୋ' ଆଜ୍ଞା ଉଲ୍ଲଂଘନ କରି ଅନ୍ୟଦ୍ୱାରା ଯଜ୍ଞ କରାଇ ନେଉଛ ! ମୁଁ ତୁମର କୁଳଗୁରୁ । ତୁମେ ମୋତେ ଅପମାନିତ କରିଛ ।"

ରାଜା ବିନୀତଭାବରେ ଉତ୍ତର ଦେଲେ—"ଗୁରୁଦେବ ! ମୁଁ ଭାବିଲି, ଧର୍ମ କାର୍ଯ୍ୟରେ ବିଳମ୍ବ କରିବା ଉଚିତ ନୁହେଁ । ତେଣୁ ଅନ୍ୟ ଆଚାର୍ଯ୍ୟଙ୍କ ଦ୍ୱାରା ମୁଁ ଯଜ୍ଞ ସମ୍ପାଦନ କରାଇ ନେଉଛି । ଆପଣଙ୍କ ଆଦେଶ ଲଙ୍ଘନ କରିବା ମୋ' ଉଦ୍ଦେଶ୍ୟ ନୁହେଁ ।"

ତହୁଁ ବଶିଷ୍ଠ କ୍ରୋଧରେ ଜଳିଯାଇ କହିଲେ—"ଆରେ ନରାଧମ, ତୁ ମୋତେ ପାଠ ଶିଖାଉଛୁ । ତୁ ମୋତେ ତୀବ୍ର ଅପମାନ ଦେଇଛୁ । ତୋର ବୋଧହୁଏ ଧାରଣା—ମାଗିଖିଆ ପୁରୋହିତମାନେ ମୋର କ'ଣ କରି ପାରିବେ ? ଦେଖ୍, ମୁଁ ତୋର କ'ଣ କରି ପାରୁଛି ! ତୁ ଯେଉଁ ଶରୀରର ଅଭିମାନରେ ମୋତେ ଅପମାନ ଦେଇଛୁ, ତୋର ସେହି ଶରୀର ଅଧଃପତିତ ହେଉ ! ତୁ ଏହିକ୍ଷଣି ମୃତ୍ୟୁମୁଖରେ ପଡ଼ି ତୋ' କୃତ କର୍ମର ଫଳ ଭୋଗ କର !"

ଏହା ଶୁଣିବା ମାତ୍ରେ ରାଜା ନମି ମଧ୍ୟ ଖୁବ୍ ରାଗିଗଲେ । ସେ ଅବଶ୍ୟ ଆତ୍ମଜ୍ଞାନୀ ଥିଲେ—କିନ୍ତୁ ସେତେବେଳେ ସେ ନିଜକୁ ଆୟତ୍ତ କରି ପାରିଲେ ନାହିଁ । ସେ

ହାତରେ ଜଳ ଧରି ବଶିଷ୍ଠଙ୍କୁ ଅଭିଶାପ ଦେଇ କହିଲେ—"ଆପଣଙ୍କର ଏହି ଶରୀର ଅଧଃପତିତ ହେଉ !"

ସୂତ ମୁନି କହିଲେ—"ହେ ମୁନିଗଣ ! କ୍ରୋଧର ବଶବର୍ତ୍ତୀ ହୋଇ ଦୁହେଁ ଦୁହିଁଙ୍କୁ ଅଭିଶାପ ଦେଲେ ଏବଂ ଦୁହେଁଯାକ ସେହି ଯଜ୍ଞ ମଣ୍ଡପରେ ନିଷ୍ପ୍ରାଣ ହୋଇ ପଡ଼ି ରହିଲେ । କିନ୍ତୁ ଯଜ୍ଞ ବନ୍ଦ ନ ହୋଇ ପୂର୍ବପରି ଚାଲିଲା ।"

## ଛପ୍ପୟ

"ହେଁ ଗୃହ ଦେହ ଅନିତ୍ୟ ଯଜ୍ଞ ଅବଲମ୍ବ କରାଉଁ ।
ଯଦି ଗୁରୁ ଅଚ୍ଛେ ନାହିଁ ଅନ୍ୟ ଆଚାର୍ଯ୍ୟ ବୁଲାଉଁ ॥
କରି ଦୃଢ଼ ନିଷ୍ଟୟ ତୁରିତ ଯଜ୍ଞ ଆରମ୍ଭ କରଯ୍ୟୋ ।
ମୁନି ବଶିଷ୍ଠ ପୁନି ଆଇ ନୃପତି ପ୍ରତି କ୍ରୋଧ ଦଖାଯ୍ୟୋ ॥
ଦେହ ପାତ କୋ ଶାପ ମୁନି, ଦୟ୍ୟୋ ଭୂପ କ୍ରୋଧିତ ଭୟ୍ୟୋ ।
ନୃପହୁ ଶାପ ମୁନିକୁଁ ଦୟ୍ୟୋ, ତନୁ ଦୋଉନି କେ ଗିରି ଗୟ୍ୟୋ ॥"



## ଆଦି ବିଦେହ ମହାରାଜ ଜନକ

"ଜନ୍ମନା ଜନକଃ ସୋଽଭୂଦ୍ ବୈଦେହସ୍ତୁ ବିଦେହକଃ
ମିଥିଲୋ ମଥନା ଜ୍ଜାତୋ ମିଥିଲା ଯେନ ନିର୍ମିତା ।।"

(ଶ୍ରୀଭା ୯ସ୍କ, ୧୩ଅ, ୧୩ଶ୍ଳୋକ)

### ଛପ୍‌ପୟ

"ତନୁ ତଜି ନିଭି ବରୁଣ ବୀର୍ଯ୍ୟତେଁ ପ୍ରକଟେ ମୁନି ପୁନ ।
ନିମିହୁ ନେତ୍ରନ ମାଁହି ବସହି ନତପଲକ ନିମିଷ ବନ ।।
ନିମିକୋ ମୃତକ ଶରୀର ମଥ୍ୟୋ ବୈଦେହ ଭୟେ ସୁତ ।
ଆଦ୍ୟ ଜନକ ମିଥିଲେଶ ମୁକ୍ତ ଜୀବନ ସମାଧିଯୁତ ।।
ତବତେଁ ନିମି ବଂଶୀ ନୃପତ, ଜନକ ବିଦେହ କହାହିଁ ସବ ।
କ୍ଷଣ ଭଂଗୁର ସମୁଝେଁ ସବହିଁ, ରାଜପାଟ ବାହନ ବିଭବ ।"

ଅର୍ଥାତ୍—ଶୁକଦେବ କହୁଛନ୍ତି—"ହେ ରାଜନ୍ ! ମୃତ ନିମିଙ୍କ ଦେହକୁ ମନ୍ଥନ କରିବା ପରେ ଯେଉଁ ପୁତ୍ରଜାତ ହୋଇଥିଲା, ସେ ଜନ୍ମ ହେବା ମାତ୍ରେ ଜନକ, ବିଦେହରୁ ଜାତ ହୋଇଥିବାରୁ ବୈଦେହ, ମନ୍ଥନରୁ ଉତ୍ପନ୍ନ ହୋଇଥିବାରୁ ମିଥିଲ ନାମରେ ପ୍ରସିଦ୍ଧ ହୋଇଥିଲେ । ସେ ମିଥିଲା ନାମକ ପୁରୀ ବସାଇଥିଲେ ।"

ଦେହର ବନ୍ଧନରେ ଜୀବ ବନ୍ଧା ହୋଇଥାଏ । ଅନିତ୍ୟ ଓ କ୍ଷଣଭଙ୍ଗୁର ଶରୀରରେ ଜୀବ ଏତେ ତନ୍ମୟ ହୋଇଯାଏ ଯେ, ଯାହା ଆଦୌ ଆତ୍ମା ପଦବାଚ୍ୟ ନୁହେଁ, ତାହାକୁ ଆତ୍ମା ବୋଲି ମନେ କରିଥାଏ । ଅସତ୍ୟକୁ ସତ୍ୟ ବୋଲି ଭାବେ । ତା'ର ମୋହରେ ସେ ନାନାପ୍ରକାର ପାପ କରିଥାଏ । କେବଳ ଜ୍ଞାନ ଦ୍ୱାରା ମନୁଷ୍ୟର ଏହି ମୋହ ଦୂର ହୋଇପାରେ । ମନରୁ ବିଷୟ ପ୍ରତି ଆସକ୍ତି ବୃତ୍ତି ନ ଗଲେ, ଘୋର ବନକୁ ଚାଲିଗଲେ ମଧ୍ୟ ସେହି ଧନ ସମ୍ପତ୍ତିଠାରେ ମନ ଅଟକି ରହିଥାଏ ଏବଂ ସମସ୍ତ

ଓ ସୁଯୋଗ ପାଇବା ମାତ୍ରେ ପୁଣି ସେହି ବିଷୟର ସଂଗ୍ରହ ଲାଗି ମନ ବଳାଥାଏ । କିନ୍ତୁ ବିଷୟ ପ୍ରତି ଯାହାର ମନରେ ବିରକ୍ତ ଭାବ ଆସିଯାଇଛି, ସେ ସମସ୍ତ ଧନ, ସମ୍ପତ୍ତି ଓ ପରିବାର ମଧ୍ୟରେ ରହି ମଧ୍ୟ 'ବିରକ୍ତ' ହୋଇଥାଏ । ସେ ସବୁକିଛି କରୁଥିଲେ ମଧ୍ୟ କିଛି କରୁନାହିଁ ଏବଂ 'ଅକିଂଚନ' ନାମରେ ନାମିତ ହୋଇଥାଏ ।

ଶ୍ରୀ ସୂତ ମୁନି କହିଲେ—"ହେ ମୁନିଗଣ ! ବଶିଷ୍ଠ ଓ ରାଜା ନିମି ପରସ୍ପରକୁ ଅଭିଶାପ ଦେଇ ଶରୀର ତ୍ୟାଗ କଲେ । ବଶିଷ୍ଠ ମହର୍ଷିଙ୍କ ସ୍ଥୂଳ ଶରୀର ସେଇଠି ପଡ଼ି ରହିଲା କିନ୍ତୁ ତାଙ୍କ ସୂକ୍ଷ୍ମ ଶରୀର ବ୍ରହ୍ମ ଲୋକରେ ପହଞ୍ଚି ପିତାମହଙ୍କୁ ସବୁ କଥା ଶୁଣାଇ ଦେଲା । ବଶିଷ୍ଠଙ୍କଠାରୁ ସବୁ ଶୁଣିସାରି ପିତାମହ କହିଲେ—"ବତ୍ସ, ପୃଥିବୀରେ ତୁମର ଅନେକ କାର୍ଯ୍ୟ ବାକି ରହିଛି । ଗୋଟିଏ ମନ୍ୱନ୍ତର ପର୍ଯ୍ୟନ୍ତ ତୁମକୁ ସପ୍ତର୍ଷିମାନଙ୍କ ମଧ୍ୟରେ ରହିବାକୁ ହେବ । ତେଣୁ ତୁମେ ପୁଣି ସ୍ଥୂଳ ସ୍ୱରୂପ ଧାରଣ କର ।"

ଏହାଶୁଣି ବଶିଷ୍ଠ କହିଲେ—"ପ୍ରଭୋ, ମୁଁ କୌଣସି ସ୍ତ୍ରୀର ଗର୍ଭରୁ ଉତ୍ପନ୍ନ ହେବାକୁ ଚାହୁଁ ନାହିଁ । ତେଣୁ ଆପଣ ଏପରି କିଛି ଉପାୟ କରନ୍ତୁ, ଯାହାଫଳରେ ମୁଁ ଗର୍ଭଯାତନା ଭୋଗ ନ କରି ସ୍ଥୂଳଶରୀର ଧାରଣ କରି ପାରିବି ।"

ତହୁଁ ବ୍ରହ୍ମା କହିଲେ—"ମୁଁ ତୁମକୁ ଗୋଟିଏ ଉପାୟ ବତାଇ ଦେଉଛି । ତୁମେ ସେହିଅନୁସାରେ କାମ କର । ଦିନେ ମିତ୍ରାବରୁଣ ଋଷିଦ୍ୱୟ ସ୍ୱର୍ଗ-ମାର୍ଗରେ ଆସୁଥିଲେ । ସେମାନେ ପଥ ମଧ୍ୟରେ ସୁନ୍ଦରୀ ଅପ୍‌ସରା ଉର୍ବଶୀଙ୍କୁ ଦେଖିଲେ । ତାଙ୍କ ରୂପରେ ମୋହିତ ହୋଇ ଋଷି ଦୁହିଙ୍କର ରେତ ସ୍ଖଳନ ହୋଇଗଲା । ସେ ଦୁହେଁ ତାକୁ ଗୋଟିଏ କୁମ୍ଭରେ ସାଇତି ରଖିଛନ୍ତି । ସେଥି ମଧ୍ୟରେ ଗୋଟିଏ ଜୀବ ପ୍ରବେଶ କରି ସାରିଛି । ସେ ସଂସାରରେ ଜଣେ ମହାନ୍ ଋଷି ହେବେ । ତାଙ୍କ ନାମ ହେବ—ଅଗସ୍ତି । ସେ କୁମ୍ଭରୁ ଜାତ ହେଉଥିବାରୁ, 'କୁମ୍ଭଜ' ନାମରେ ପ୍ରସିଦ୍ଧି ଅର୍ଜନ କରିବେ । ଅନ୍ୟ ଅଂଶରେ ତୁମେ ଯାଇ ପ୍ରବେଶ କର । ତା'ଫଳରେ ତୁମକୁ ଆଉ ଗର୍ଭଯାତନା ସହ୍ୟ କରିବାକୁ ପଡ଼ିବ ନାହିଁ । ତା'ର ଫଳରେ ବଶିଷ୍ଠ 'ଅଯୋନିଜ' ହୋଇ ଜନ୍ମ ହେଲେ ଏବଂ ପୁଣି ବଶିଷ୍ଠ ନାମ ଧାରଣ କରି ଇକ୍ଷ୍ୱାକୁ କୁଳର ପୁରୋହିତ ହୋଇ ରହିଲେ ।"

ନିମିଙ୍କ ମୃତ ଶରୀର ଯଜ୍ଞ ସ୍ଥଳରେ ପଡ଼ିଥିଲା । ଯାଜ୍ଞିକ ଋଦ୍ଧିମାନେ ତାହାକୁ ନଷ୍ଟ କରି ନ ଦେଇ, ନାନା ପ୍ରକାର ଔଷଧ ଲେପନ କରି ଶରୀରକୁ ସାଇତି ରଖିଲେ । ଯଜ୍ଞ ଶେଷ ହୋଇଯିବା ପରେ ଦେବଗଣ ସେଠାକୁ ଆସି ନିଜ ନିଜର ଯଜ୍ଞଭାଗ ଗ୍ରହଣ କରିନେଲେ । ଦେବଗଣ ସନ୍ତୁଷ୍ଟ ହୋଇ ବରମାଗିବାକୁ କହିଲେ । ତହୁଁ ଋଷିମାନେ କହିଲେ—"ହେ ଦେବଗଣ ! ନିମି ପୁଣି ବଞ୍ଚି ଉଠନ୍ତୁ ।"

ଦେବଗଣଙ୍କ ଆଶୀର୍ବାଦରେ ନିମି ବଞ୍ଚିଉଠି କହିଲେ—"ପ୍ରଭୋ, ମୁଁ ଅଉ ଏ' ଅନିତ୍ୟ ଶରୀରରେ ବଞ୍ଚିବାକୁ ଚାହେଁ ନାହିଁ ।"

ତହୁଁ ଦେବଗଣ କହିଲେ—"ରାଜନ୍ ! ତୁମେ ଆଜିଠାରୁ ଜନସାଧାରଣଙ୍କ 'ପଲକ' ମଧ୍ୟରେ ବାସ କରି ରୁହ । ଲୋକମାନଙ୍କ ପଲକକୁ ନିମିଷ କୁହାଯିବ । ତୁମେ ତା'ର ମାଧ୍ୟମରେ ବଞ୍ଚି ରହିବ ।"

ଏ ସମ୍ବନ୍ଧରେ ଶୌନକଙ୍କ ମନରେ ଶଙ୍କା ଜାତ ହେବାରୁ, ସୂତମୁନି ବୁଝାଇ କହିଲେ—"ପୂର୍ବ କଳ୍ପରେ ଲୋକମାନେ ଚକ୍ଷୁର ପଲକ ପକାଉ ନଥିଲେ । ନିମି ସମସ୍ତଙ୍କ ପଲକରେ ବାସ କରିବାରୁ ତାହା 'ନିମିଷ' ନାମରେ କଥିତ ହେଲା ।"

ତହୁଁ ଶୌନକ ପୁଣି ପ୍ରଶ୍ନ କଲେ—"ମୁନିବର ! ତା'ପରେ ନିମିଙ୍କ ବଂଶରକ୍ଷା ହେଲା କିପରି ?"

ସୂତ ମହର୍ଷି କହିଲେ—"ନିମିଙ୍କ ମୃତ୍ୟୁପରେ ରାଜ୍ୟରେ ଅରାଜକତା ବ୍ୟାପିଗଲା । ଧର୍ମ କାର୍ଯ୍ୟମାନ ବନ୍ଦ ହୋଇଗଲା । ତହୁଁ ମୁନିମାନେ ସାଇତି ରଖିଥିବା ତାଙ୍କ ଶରୀରକୁ ମନ୍ଥନ କରିବାକୁ ଲାଗିଲେ । ସେହି ମନ୍ଥନ ଫଳରେ ଗୋଟିଏ ତେଜସ୍ୱୀ ବାଳକ ଉତ୍ପନ୍ନ ହେଲା । ମନ୍ଥନରୁ ଜାତ ହୋଇଥିବାରୁ ତାଙ୍କ ନାମ ହେଲା—ମିଥିଳ । ବିଦେହରୁ ସେହି ବାଳକ ଜାତ ହୋଇଥିବାରୁ, ତାଙ୍କ ନାମ ବୈଦେହ ରଖାଯାଇଥିଲା । ମୃତ ଶରୀରରୁ ସେହି ପୁତ୍ର ଜାତ ହୋଇଥିବାରୁ ତାଙ୍କ ନାମ ଜନକ ହୋଇଥିଲା । ସେହି ପୁତ୍ରଙ୍କୁ ଦେଖି ଋଷି, ବ୍ରାହ୍ମଣ ଓ ପ୍ରଜାମାନେ ଆନନ୍ଦିତ ହୋଇଥିଲେ । ସେହି ରାଜା ମିଥିଳା ନାମରେ ଗୋଟିଏ ନଗର ବସାଇଥିଲେ । ଏହାଙ୍କ ପୁତ୍ର 'ଉଦାବସୁ ଜନକ' ନାମରେ ସଂସାରରେ ପ୍ରସିଦ୍ଧି ଅର୍ଜନ କରିଥିଲେ ।"

ଉଦାବସୁ ଜନକଙ୍କ ପୁତ୍ର ନନ୍ଦିବର୍ଦ୍ଧନ ହୋଇଥିଲେ । ନନ୍ଦିବର୍ଦ୍ଧନଙ୍କ ପୁତ୍ର ସୁକେତୁ ଏବଂ ତାଙ୍କ ପୁତ୍ର ଦେବରାତ ହୋଇଥିଲେ । ଦେବରାତଙ୍କଠାରୁ ମହାରାଜ ବୃହଦ୍‌ରଥ ହୋଇଥିଲେ । ସେ ବ୍ରହ୍ମର୍ଷି ଯାଜ୍ଞବଲ୍‌କ୍ୟ ମହୋଦୟଙ୍କୁ ଆତ୍ମଜ୍ଞାନ ସମ୍ବନ୍ଧରେ ଗୂଢ଼ ପ୍ରଶ୍ନମାନ ପଚାରିଥିଲେ । ଏହି ବ୍ରହ୍ମଜ୍ଞାନ ସମ୍ବନ୍ଧରେ ମହାଭାରତର 'ଶାନ୍ତିପର୍ବ'ରେ ଭୀଷ୍ମ ଯୁଧିଷ୍ଠିର ସମ୍ବାଦରେ କୁହାଯାଇଛି । ବୃହଦ୍‌ରଥଙ୍କ ପୁତ୍ର ଥିଲେ—ମହାବୀର୍ଯ୍ୟ । ମହାବୀର୍ଯ୍ୟଙ୍କଠାରୁ ସୁଧୃତି ଜାତ ହୋଇଥିଲେ । ସୁଧୃତିଙ୍କ ପୁତ୍ର ଥିଲେ—ଧୃଷ୍ଟକେତୁ । ତାଙ୍କ ପୁତ୍ର ହର୍ଯ୍ୟଶ୍ୱ ଏବଂ ହର୍ଯ୍ୟଶ୍ୱଙ୍କ ପୁତ୍ର ମରୁ ନାମରେ ଖ୍ୟାତ ହୋଇଥିଲେ । ମରୁଙ୍କଠାରୁ ପ୍ରତୀପକ ଓ ତାଙ୍କ ପୁତ୍ରଙ୍କ ନାମଥିଲା—କୃତରଥ । କୃତରଥଙ୍କ ପରେ ପୁତ୍ର ପରମ୍ପରା କ୍ରମରେ ଦେବମୀଢ଼, ବିଶ୍ରୁତ, ମହାଧୃତ, କୃତରାତ, ମହାରୋମା,

ହ୍ରସ୍ୱରୋମା ଓ ସୀରଧ୍ୱଜ ଜନକ ଜାତ ହୋଇଥିଲେ । ତାଙ୍କର ଦ୍ୱାରା ଅଯୋନିସମ୍ଭୂତା ସୀତା ପ୍ରତିପାଳିତା ହୋଇଥିଲେ ।

ମୁନିମାନଙ୍କ ଜିଜ୍ଞାସା ମତେ ସୂତମୁନି ଜଗନ୍ମାତା ସୀତାଙ୍କ ଜନ୍ମବୃତ୍ତାନ୍ତ ଶୁଣାଇଥିଲେ ।

## ଛପ୍‌ପୟ

"ଉନ୍ନିସ ପୀଢ଼ୀମାଁହିଁ ହ୍ରସ୍ୱରୋମା ଜନମେ ସୁତ ।
ସୀରଧ୍ୱଜ ତିନ ପୁତ୍ର ଜଗତମହିଁ ପରମକୀର୍ତ୍ତି ଯୁତ ।।
ଭୟେ ଯଶସ୍ୱୀ ପୁତ୍ର କୁଶଧ୍ୱଜ ତିନକେ ପ୍ୟାରେ ।
ପୁତ୍ରୀ ସୀତା ଭଈ ଉଭୟ କୁଳ ଜିନନେ ତାରେ ।।
ଜନକଦୁଲରୀ ମୈଥିଲୀ, ଜନକସୁତା ସୀତା ସତୀ ।
ବୈଦେହୀ ଜନକାତ୍ମଜା, ଜିନହିଁ, ଜପହିଁ ଯୋଗୀ ଜତୀ ।"



# ମହାରାଜ ସୀରଧ୍ୱଜ

"ତତଃ ସୀରଧ୍ୱଜୋ ଯଜ୍ଞେ ଯଜ୍ଞାର୍ଥଂ କର୍ଷତୋ ମହୀମ୍ ।
ସୀତା ସୀରାଗ୍ରତୋ ଜାତା ତସ୍ମାତ୍ ସୀରଧ୍ୱଜଃ ସ୍ମୃତଃ ।"

(ଶ୍ରୀଭାଗ ୯-୧୩ଅ-୧୮ଶ୍ଳୋ)

## ଛପ୍ପୟ

"ସୀରଧ୍ୱଜ ମଖ କରନ ଭୂମି ଶୋଧନ ହିତ ଆୟେ ।
ଋଷି ମୁନି ଜ୍ଞାନୀ ବିପ୍ର ଶୋଧିବେ ତହାଁ ବୁଲାୟେ ॥
ଶୋଧୀ ସବ୍ ନେ ଭୂମି ଜନକ ହଲ ତହାଁ ଚଲାୟୋ ।
ତବହୁଁ ଅବନୀ ତେଁ ପ୍ରକଟି ସୀୟ ନିଜ ରୂପ ଦିଖାୟୋ ॥
ସୀର ମାଁହି ସୀତା ଭଇଂ ଲଖି, କୃତାର୍ଥ ନୃପ ହ୍ୱେ ଗୟେ ।
ପାଲୀ ପୁତ୍ରୀ ମାନକେ, ସୀରଧ୍ୱଜ ତାତେଂ ଭୟେ ॥"

ଅର୍ଥାତ୍—ଶ୍ରୀ ଶୁକ କହୁଛନ୍ତି—"ହେ ରାଜନ୍ ! ମହାରାଜ ହ୍ରସ୍ୱରୋମାଙ୍କଠାରୁ ସୀରଧ୍ୱଜ ଉତ୍ପନ୍ନ ହୋଇଥିଲେ । ସେହି ମହାରାଜ ସୀରଧ୍ୱଜ ଏକଦା ଯଜ୍ଞ ନିମିତ୍ତ ପୃଥିବୀରେ ହଳ କରୁଥିଲେ । ସେହି ସମୟରେ ଲଙ୍ଗଳରେ ଲଗିଥିବା ଫାଳର ଅଗ୍ରଭାଗ (ସୀର)ରୁ ସୀତା ପୃଥିବୀରୁ ଜାତ ହୋଇଥିଲେ । ସେଇ କନ୍ୟାକୁ ପାଳିଥିବାରୁ ରାଜାଙ୍କ ନାମ ସୀରଧ୍ୱଜ ହୋଇଥିଲା ।"

ସାଧାରଣତଃ ଝିଅ ପୁଅଙ୍କ ନାମ ଜାଣିବା ସମୟରେ ସେମାନଙ୍କ ପିତାଙ୍କ ନାମ ବୁଝାଯାଇଥାଏ । କିନ୍ତୁ 'ଜନକ' କିଏ ବୋଲି ପ୍ରଶ୍ନ ହେବାମାତ୍ରେ ସେ ଜାନକୀଙ୍କ 'ପିତା' ବୋଲି ବୁଝାଯାଇଥାଏ । ମିଥିଳା ନରେଶଙ୍କ କୁମାରୀ ହୋଇଥିବାରୁ ସୀତାଙ୍କୁ ମୈଥିଳୀ, ବିଦେହଙ୍କ କନ୍ୟା ହୋଇଥିବାରୁ ତାଙ୍କୁ ବୈଦେହୀ କୁହାଯାଉଥିଲା । ତା'ବ୍ୟତୀତ ସୀତାଙ୍କର ଜନକନନ୍ଦିନୀ ଆଦି ବହୁ ନାମ ରହିଛି ।

ସୂତ କହିଲେ—"ହେ ମୁନିଗଣ ! ମହାରାଜ ଜନକ ଏକଦା ଯଜ୍ଞ କରିବାପାଇଁ ବିଚାର କଲେ । ସେ ବେଦଜ୍ଞ ବ୍ରାହ୍ମଣମାନଙ୍କୁ ଡକାଇ ଯଜ୍ଞପାଇଁ ଯୋଗ୍ୟ ଭୂମିର ସନ୍ଧାନ କରାଇଲେ । ସର୍ବଜ୍ଞ ଋଷିମାନେ ସବୁ ବିଚାର କରି ଖଣ୍ଡିଏ ଜମିକୁ ଯଜ୍ଞପାଇଁ ଉପଯୁକ୍ତ ବୋଲି ସ୍ଥିର କଲେ । ସେ ବିଧିବିଧାନର ସହିତ ପୂଜା କରି, ନିଜେ ସୁବର୍ଣ୍ଣ ଲଙ୍ଗଳରେ ସେହି ଜମିରେ ହଳ କଲେ । ସେ ହଳ କରୁଥିବା ସମୟରେ ତାଙ୍କ ଲଙ୍ଗଳ ଗୋଟିଏ ସ୍ଥାନରେ ଅଟକି ଗଲା । ସେହିଠାରୁ ଗୋଟିଏ ବଡ଼ ହାଣ୍ଡି ମିଳିଲା । ତାହା ମଝିରେ ଗୋଟିଏ ପରମ ସୁନ୍ଦରୀ କନ୍ୟା ଥିଲା । ରାଜା ସେହି କନ୍ୟାଟିକୁ ଦେଖି ଅତ୍ୟନ୍ତ ଆନନ୍ଦିତ ହେଲେ । କାରଣ, ସେପରି ସୁନ୍ଦରୀ କନ୍ୟାଟିଏ ସେ ଜୀବନରେ ଆଦୌ ଦେଖି ନ ଥିଲେ । ତାଙ୍କର ମନେ ହେଲା ସ୍ୱୟଂ 'ସିଦ୍ଧି' ଯଜ୍ଞ ପୂର୍ବରୁ କନ୍ୟା ରୂପରେ ଜାତ ହୋଇଛନ୍ତି । ମହାରାଜ ସେହି ପରମ ସୁନ୍ଦରୀ କନ୍ୟାଟିକୁ ପୃଥିବୀରୁ ଗ୍ରହଣ କରି ନିଜ ପତ୍ନୀ ସୁନୟନାଙ୍କୁ ଅର୍ପଣ କଲେ । ରାଣୀ ସୁନୟନା କନ୍ୟାଟିକୁ ପାଇ ଅତ୍ୟନ୍ତ ଆନନ୍ଦିତା ହେଲେ ।"

ଏହାଶୁଣି ଶୌନକ କହିଲେ—"ହେ ସୂତ ମୁନିବର ! ମାଟି ଭିତରେ କନ୍ୟାଟିଏ କିପରି ରହିଲା ?"

ଏହାର ଉତ୍ତର ଦେଇ ସୂତମୁନି କହିଲେ—"ଏ ସମ୍ବନ୍ଧରେ ଭିନ୍ନ ଭିନ୍ନ କଳ୍ପରେ ବିଭିନ୍ନ ଆଖ୍ୟାୟିକା ରହିଛି । ତନ୍ମଧ୍ୟରେ ଗୋଟିଏ କଥା ହେଉଛି—ରାବଣ ଦିଗ୍‌ବିଜୟ କରି ସମଗ୍ର ଦେଶକୁ ନିଜ ଆୟତ୍ତରେ ରଖିଲା । ସେ ସବୁ ଶ୍ରେଣୀର ଲୋକମାନଙ୍କଠାରୁ କର ଆଦାୟ କଲା । ମନୁଷ୍ୟର ମୃତ୍ୟୁ ସମୟ ନିକଟତର ହୋଇ ଆସିଲେ, ତା'ର ବୁଦ୍ଧିଭ୍ରଷ୍ଟ ହୋଇଯାଏ । ସେ ସେତେବେଳେ ସାଧୁ, ସନ୍ନ୍ୟାସୀ, ଗୋ'-ବ୍ରାହ୍ମଣ ଓ ଧର୍ମ ଆଦି ଉପରେ ଅତ୍ୟାଚାର ଆରମ୍ଭ କରିଦିଏ ।"

ରାବଣ ଭାବିଲା—ଏ' ଋଷିମୁନିମାନେ ବନରେ ରହି ବେଶ୍ ଆନନ୍ଦ ଉପଭୋଗ କରୁଛନ୍ତି । ସେମାନେ ରାଜାଙ୍କୁ ମଧ୍ୟ ଆଦର କରୁ ନାହାନ୍ତି । ସେମାନଙ୍କ ଉପରେ 'କର' ବସାଇଲେ ଖୁବ୍ ଭଲ ହେବ ।

ତହୁଁ ସେ ନିଜ କର୍ମଚାରୀମାନଙ୍କୁ ବନବାସୀ ଋଷିଙ୍କଠାରୁ 'କର' ଆଦାୟ କରିବା ଲାଗି ଆଦେଶ ଦେଲେ । ସେମାନେ ମୁନିମାନଙ୍କଠାରୁ କର ଆଦାୟପାଇଁ ଯିବାବେଳେ, ଋଷିମାନେ କହିଲେ—"ଆମେମାନେ ବଣର ଫଳମୂଳ ଖାଇ ଜୀବନ-ଯାପନ କରୁଛୁ । ଆମେ ଧନ କେଉଁଠୁ ଆଣି 'କର' ଦେବୁ ?"

କର୍ମଚାରୀମାନେ ଯାଇ ରାବଣକୁ ସେହି ସମ୍ବାଦ ଦିଅନ୍ତେ ଦୁର୍ଦ୍ଦାନ୍ତ ଅସୁର କହିଲା—"ମୁନିମାନଙ୍କୁ କୁହ, ସେମାନଙ୍କର ଧନ ନଥିଲେ ସୁଦ୍ଧା ସେମାନଙ୍କର ଶରୀର ଅଛି । ତେଣୁ ସେମାନେ ସେଥିରୁ ଆମ 'କର' ଭରଣା କରନ୍ତୁ ।"

ମୁନିମାନେ ଏହାଶୁଣି ନିଜ ଦେହରୁ ରକ୍ତ ବାହାର କରି ଗୋଟିଏ ହାଣ୍ଡିରେ ପୂରାଇ କହିଲେ—"ରାଜସେବକଗଣ, ତୁମେ ଏଇ ହାଣ୍ଡିକୁ ନେଇ ରାବଣକୁ ଦେଇ କହିବ—ଏଥିରେ ଆମମାନଙ୍କ ଦେହର ତପସ୍ୟା ଦ୍ୱାରା ପୂତ ରକ୍ତ ରହିଛି । ସେହି ରକ୍ତରୁ ସଂହାର ରୂପିଣୀ ଯୋଗମାୟା ଜାତ ହୋଇ ତୁମକୁ ବିନାଶ କରିବେ ।"

ରାବଣ ଏହା ଶୁଣି ଭୟଭୀତ ହୋଇ ଉଠିଲେ ଏବଂ ରାକ୍ଷସମାନଙ୍କୁ ସେହି ହାଣ୍ଡିଟି ସମର୍ପି ଦେଇ କହିଲେ—"ଏହି ହାଣ୍ଡିଟିକୁ ନେଇ ଦୂରସ୍ଥାନରେ ଗାତ ଖୋଳି ପୋତି ଦେଇ ଆସ ।"

ସେବକମାନେ ସେହି ହାଣ୍ଡିଟିକୁ ନେଇ ମିଥିଳା ରାଜ୍ୟର ଗୋଟିଏ ନିର୍ଜନ ସ୍ଥାନରେ ପୋତି ଦେଇ ଆସିଲେ । ଋଷିମାନଙ୍କର ସେହି ରକ୍ତରୁ ଯୋଗମାୟା ଜାତ ହୋଇ ରାବଣକୁ ବିନାଶ କରିଥିଲେ ।

ଏହାଶୁଣି ମୁନିମାନେ କହିଲେ—"ସୂତ ମହୋଦୟ ! ଆପଣ ଗୋଟିଏ ନୂଆ କଥା କହିଲେଣି । ଶ୍ରୀରାମଚନ୍ଦ୍ର ରାବଣକୁ ବଧ କରିଥିବାର ବୃତ୍ତାନ୍ତ ରାମାୟଣରେ ରହିଛି । ଆପଣ କିପରି କହୁଛନ୍ତି ଯେ, ଯୋଗମାୟା ଜାନକୀ ରୂପରେ ରାବଣକୁ ବଧ କରିଥିଲେ !"

ସେମାନଙ୍କୁ ଉତ୍ତର ଦେଇ ସୂତମୁନି କହିଲେ—"ପ୍ରଭୁଙ୍କ ଲୀଳା ବୁଝିବା ଆମମାନଙ୍କ ପକ୍ଷରେ ସମ୍ଭବ ନୁହେଁ । ସେ କେତେବେଳେ କାହାଦ୍ୱାରା କେଉଁ କାର୍ଯ୍ୟ କରାନ୍ତି, ତାହା ସେ ହିଁ ଜାଣନ୍ତି । ଯୋଗମାୟା ରୂପିଣୀ ଜାନକୀଙ୍କ ଶକ୍ତିଦ୍ୱାରା ରାବଣ ନିହତ ହୋଇଥିଲା । ପ୍ରଭୁ ପରମପୁରୁଷ ପରମେଶ୍ୱର ଯୋଗମାୟାଙ୍କୁ ସେହି ଶକ୍ତି ପ୍ରଦାନ କରିଥିଲେ ।"

ଏ' ସମ୍ବନ୍ଧରେ ଆପଣମାନେ ସହସ୍ରଶିର ରାବଣର ଆଖ୍ୟାନ ଶୁଣନ୍ତୁ ।

ଶ୍ରୀରାମ ରାବଣକୁ ବଧକରି ଅଯୋଧ୍ୟାକୁ ଫେରିଆସିଲେ । ସେଠାରେ ତାଙ୍କ ଅଭିଷେକର ଆୟୋଜନ କରାଗଲା । ଦିନେ ଶ୍ରୀରାମ ମୁନିମାନଙ୍କ ଆଗରେ ରାବଣ ବଧ ସମ୍ପର୍କୀୟ ଆଲୋଚନା କରୁଥିଲେ । ମୁନିମାନେ ଶ୍ରୀରାମଙ୍କୁ ରାବଣ ବଧ ପାଇଁ ଅନେକ ପ୍ରଶଂସା କଲେ । ଜାନକୀ ଦେବୀ ସେ ଆଲୋଚନାରେ ହସ୍ତକ୍ଷେପ କରି କହିଲେ—"ରାବଣ ଗୋଟିଏ କବା ଗ୍ରର ରାକ୍ଷସ । ତାକୁ ମୁଁ ମୋ' ଶକ୍ତିଦ୍ୱାରା ବଧ କରିଛି । ପ୍ରଭୁ ଶ୍ରୀରାମ ପ୍ରକୃତରେ ଯଦି ଶକ୍ତିମାନ୍ ହୋଇ ନଥା'ନ୍ତେ, ତେବେ ସେ କିପରି ରାକ୍ଷସ ବଧ କରିଥା'ନ୍ତେ । ବର୍ତ୍ତମାନ ଶକ୍ତି ବ୍ୟତିରେକେ ସେ ନିଜ ପୌରୁଷ ବଳରେ ସହସ୍ରଶିର ରାବଣକୁ ବଧ କଲେ ଜଣାଯିବ, ସେ ବଳବାନ୍ ବୀର ।"

ଏହାଶୁଣି ଶ୍ରୀରାମ ମନେ ମନେ ଖୁବ୍ ରାଗିଯାଇ ସହସ୍ରଶିର ରାବଣ ବିରୁଦ୍ଧରେ ଅଭିଯାନ ଚଳାଇଲେ । ଲକ୍ଷ୍ମଣ, ଭରତ, ଶତ୍ରୁଘ୍ନ ଓ ହନୁମାନଆଦି ଅଯୋଧ୍ୟାର ସେନାଙ୍କ ସହିତ ଶ୍ରୀରାମ ଯାଇ ସହସ୍ରଶିର ସହିତ ଯୁଦ୍ଧ କରି ପରାସ୍ତ ହେଲେ । ଶେଷରେ ଗୁରୁ ବଶିଷ୍ଠଙ୍କ ପରାମର୍ଶ ଅନୁସାରେ ସେ ଜଗଦମ୍ବା ରୂପିଣୀ ସୀତାଙ୍କୁ ସ୍ତୁତି କଲେ । ତହୁଁ ଦେବୀ ନିଜ ଶରୀରରୁ ଅସଂଖ୍ୟ ଶକ୍ତି ଜାତ କରାଇ ସହସ୍ରଶିରକୁ ଅନାୟାସରେ ବଧ କଲେ ।

ସୀତାଙ୍କ ଜନ୍ମ ସମ୍ବନ୍ଧରେ ଏହିପରି ଅଦ୍ଭୁତ ଗୋଟିଏ ଆଖ୍ୟାନ ରହିଛି । ତାହା ଆପଣମାନେ ଶୁଣନ୍ତୁ ।

ଏକଦା ରାବଣ ତ୍ରିଲୋକ ଜୟ କରିସାରି ହିମାଳୟର ପୁଣ୍ୟ ପ୍ରଦେଶରେ ପ୍ରବେଶ କଲା । ସେଠାରେ ସେ ଏକ ଉତ୍ତମ ଲକ୍ଷଣଯୁକ୍ତ ସୁନ୍ଦରୀ ନାରୀଙ୍କୁ ଦେଖିଲା । ସେ କନ୍ୟା ବିବାହ କରି ନଥିଲା । ସେହି ଲାବଣ୍ୟମୟୀ କନ୍ୟାଙ୍କୁ ଦେଖି ରାବଣ କାମବାଣରେ ମୋହିତ ହୋଇ ତାଙ୍କ ପାଖକୁ ଯାଇ କହିଲା—"ଦେବି ! ତୁମେ କିଏ ସେ ? ତୁମେ ମୋତେ ତୁମର ପରିଚୟ ପ୍ରଦାନ କର !"

ସେ କନ୍ୟା ସରଳ ଭାବରେ କହିଲେ—"ହେ ମହାଭାବ ! ଆପଣ ମୋର ଅର୍ଚ୍ଚନା ଗ୍ରହଣ କରନ୍ତୁ । ମୁଁ ମୋର ପରିଚୟ ଆପଣଙ୍କୁ ପ୍ରଦାନ କରୁଛି ।"

ରାବଣ ଅତ୍ୟନ୍ତ ପ୍ରୀତ ହୋଇ କହିଲା—"ଦେବି ! ତୁମ ମଧୁର ବଚନରେ ମୁଁ ମୁଗ୍ଧ ହୋଇ ଗଲିଣି । ତାହା ହିଁ ମୋର ଅର୍ଚ୍ଚନା । ତୁମେ ଶୀଘ୍ର ତୁମର ପରିଚୟ ପ୍ରଦାନ କର ।"

ତହୁଁ ସେ ସୁନ୍ଦରୀ କନ୍ୟାଟି କହିଲେ—"ଦେବଗୁରୁଙ୍କର କୁଶଧ୍ୱଜ ନାମରେ ଗୋଟିଏ ପୁତ୍ରଥିଲେ । ମୁଁ ତାଙ୍କର ପୁତ୍ରୀ ଏବଂ ମୋ' ନାମ ବେଦବତୀ । ମୋତେ ଦେବତା, ଗନ୍ଧର୍ବ ଓ ଯକ୍ଷ ଆଦି ବିବାହ କରିବାକୁ ଚାହୁଁଥିଲେ । କିନ୍ତୁ ପିତା ମୋତେ କାହାର ହସ୍ତରେ ଅର୍ପଣ କଲେ ନାହିଁ ।"

ତହୁଁ ରାବଣ ଅଧୀର ହୋଇ କହିଲା—"ଯୁବା କନ୍ୟାଙ୍କୁ ପିତା କାହାର ହସ୍ତରେ ଅର୍ପଣ କରିବା ଉଚିତ ।"

ତହୁଁ ସେ କନ୍ୟା କହିଲେ—"ମୋ' ପିତା ଚାହୁଁଥିଲେ—ସ୍ୱୟଂ ବିଷ୍ଣୁ ମୋର ବର ହୁଅନ୍ତୁ । ତେଣୁ ମୋତେ ସେ କାହାର ହସ୍ତରେ ଅର୍ପଣ କଲେ ନାହିଁ ।"

"ଥରେ ଶମ୍ଭୁ ଦୈତ୍ୟ ମୋତେ ବିବାହ କରିବା ଲାଗି ଇଚ୍ଛା କରି ମୋ' ପିତାଙ୍କ ଆଗରେ ପ୍ରାର୍ଥୀ ହେଲେ । କିନ୍ତୁ ମୋ' ପିତା ତାଙ୍କୁ ସ୍ପଷ୍ଟ ଭାବରେ ମନା

କରିଦେଲେ । ତହୁଁ   ସେ ଦୈତ୍ୟ  ଦିନେ ସୁଯୋଗ ଉଣ୍ଡି ମୋʼ ପିତାଙ୍କୁ ବଧ କରି-ଦେଲେ । ମୋʼ  ମାତା  ପିତାଙ୍କ ସହିତ ଅଗ୍ନିରେ  ପ୍ରବେଶ  କରିଗଲେ । ତେଣୁ ମୁଁ ବନକୁ ଚାଲିଆସି ଭଗବାନ୍  ବିଷ୍ଣୁଙ୍କୁ  ପତିରୂପେ  ପାଇବାପାଇଁ  ତପସ୍ୟା  କରୁଛି । ଏହା ହିଁ ମୋର ପରିଚୟ ।"

ଏହାଶୁଣି  ରାବଣ  ନିତାନ୍ତ  କାମୁକଙ୍କ ପରି  କହିଲା—"ଦେବି ! ତୁମେ ମୋତେ ବିବାହ  କର । ବିଷ୍ଣୁଙ୍କଠାରୁ  ମୁଁ  ବହୁଗୁଣରେ  ବଳଶାଳୀ  । ଆଜି  ତୁମ ତପସ୍ୟା ସଫଳ ହୋଇଛି ବୋଲି  ମନେକର ।"

ତହୁଁ  ବେଦମତୀ ଅତ୍ୟନ୍ତ ଗମ୍ଭୀର ହୋଇ କହିଲେ—"ରାକ୍ଷସାଧିପ ! ଆପଣ ନିଜର ମର୍ଯ୍ୟାଦା ଅନୁରୂପ ଆଗ୍ରହ ପ୍ରକାଶ  କରୁ ନାହାନ୍ତି । ମୁଁ ମୋର ଶରୀର ବିଷ୍ଣୁଙ୍କୁ ଅର୍ପଣ କରି ସାରିଛି । ତେଣୁ ଆପଣ  ଗୋଟିଏ ପରସ୍ତ୍ରୀ ପ୍ରତି କାମନା  ପ୍ରକାଶ କରିବା ଉଚିତ ନୁହେଁ ।"

ତହୁଁ ରାବଣ  ନିତାନ୍ତ ଔଦ୍ଧତ୍ୟ ପ୍ରକାଶ  କରି  କହିଲା—"ଦେବି ! ତୁମେ ନିତାନ୍ତ ଭୁଲ୍ କରୁଛ । ତୁମେ  ବିଷ୍ଣୁଙ୍କ ମୋହ ମନରୁ ତ୍ୟାଗ କରିଦିଅ ।  ସେ ନିତାନ୍ତ ଭୀରୁ ଓ ସ୍ୱାର୍ଥପର !  ତୁମେ  ତାଙ୍କପାଇଁ ଏତେ କଷ୍ଟ  ସହି  ତପସ୍ୟା  କରିବା ଉଚିତ ନୁହେଁ ।" ଏହା  କହି ରାବଣ  ବଳପୂର୍ବକ  ବେଦବତୀଙ୍କ କେଶ ଧାରଣ  କରି ତାଙ୍କୁ ଅପହରଣ କରିବାକୁ ଚେଷ୍ଟା କଲା ।

ବେଦବତୀ  ନିଜ  ତପସ୍ୟା ପ୍ରଭାବରେ ରାବଣ ହସ୍ତରୁ ନିଜକୁ  ମୁକ୍ତ କରିବା ସଙ୍ଗେ ସଙ୍ଗେ ଅଗ୍ନିରେ  ପ୍ରବେଶ କରିବା  ସମୟରେ  ରାବଣକୁ  ଅଭିଶାପ  ଦେଇ କହିଲେ—"ମୁଁ  ବିଷ୍ଣୁଙ୍କୁ ଧ୍ୟାନ କରି ଅଗ୍ନିରେ  ପ୍ରବେଶ କରୁଛି । ପର  ଜନ୍ମରେ ମୁଁ ଅଯୋନିଜା ହୋଇ ଜନ୍ମ ହେବି ଏବଂ ମୋରି ପାଇଁ ତୋର ସର୍ବନାଶ ହେବ ।"

ଏହି ଅଭିଶାପ  ଦେଇ ବେଦବତୀ  ଅଗ୍ନିରେ ପ୍ରବେଶ  କରିଗଲେ । ରାବଣ ସେଠାରୁ ଉଦାସ ମନରେ ଲଙ୍କାକୁ ପ୍ରସ୍ଥାନ କଲା ।

ଏହି ବେଦବତୀ  ପୃଥିବୀରୁ ଜାତ ହୋଇ ଜନକଙ୍କ  ଗୃହରେ  ପ୍ରତିପାଳିତା ହେଲେ । ସେ ସୀତା  ନାମ ଧାରଣ  କରି ଶ୍ରୀରାମଙ୍କୁ ବିବାହ କଲେ ଏବଂ  ନାରାୟଣ ଶ୍ରୀରାମ ସେହି ସତୀ ସୀତାଙ୍କ ଶକ୍ତିରେ ଶକ୍ତିମାନ୍ ହୋଇ ରାବଣକୁ ସଂହାର କଲେ ।"

ତହୁଁ ଶୌନକ  ପଚାରିଲେ—"ସୂତ  ମହୋଦୟ,  ଆମେମାନେ  ଦେବୀ ସୀତାଙ୍କ ଜନ୍ମ ଓ ରାଜା ସୀରଧ୍ୱଜଙ୍କ  ଆଖ୍ୟାନ ଶୁଣିଲୁ । ଏଥର ଆପଣ  ତାଙ୍କ ବଂଶର ଅନ୍ୟାନ୍ୟ ରାଜାମାନଙ୍କ ଚରିତ ଆମ ଆଗରେ ବ୍ୟାଖ୍ୟାନ କରନ୍ତୁ ।"

ସୂତ କହିଲେ—"ରାଜା ସୀରଧ୍ୱଜଙ୍କ ପୁତ୍ର ହେଲେ କୁଶଧ୍ୱଜ । ସେ ଜଣେ ପରମଜ୍ଞାନୀ ଥିଲେ । ତାଙ୍କ ପୁତ୍ର ଥିଲେ—ଧର୍ମଧ୍ୱଜ । ସୁଲଭା ନାମ୍ନୀ ଏକ ଯୋଗିନୀ ସହିତ ତାଙ୍କର ଅଧ୍ୟାତ୍ମ ବିଦ୍ୟା ସମ୍ବନ୍ଧରେ ବହୁ ଆଲୋଚନା ହୋଇଥିଲା । ମୁଁ ସେହି ସମ୍ବାଦ ଆପଣମାନଙ୍କୁ ଶୁଣାଉଛି ।"

## ଛପ୍ପୟ

"ସୀୟ ପିତା ବନି ଜଗତ ମାଁହି ଯଶ ବିପୁଲ କମାୟୋ ।
କହ୍ୟୋ ରାମ ସଁଗ ବ୍ୟାହ ନୃପତି ନିଜ ଭାଗ୍ୟ ସରାହ୍ୟୋ ॥
ଆଦି ଶକ୍ତି ହୈଁ ସୀୟ ଜଗତ ଜିନ ମାଁହି ବନାବୈଂ ।
ପାଲେ ପୋଷେ ସତତ ଅନ୍ତମହଁ ପ୍ରଳୟ କରାବୈଂ ॥
ସୃଷ୍ଟି ପ୍ରପଞ୍ଚ ସବ ଶକ୍ତି କୋ, କ୍ରୀଡ଼ା-ଥଳ ଋଷି ମୁନି କହେଁ ।
ଜଗଦମ୍ବା କେ ପିତା ବନି, ସୀରଧ୍ୱଜ ଅତି ଯଶ ଲହେଁ ।"



# ମହାରାଜ ଧର୍ମଧ୍ୱଜ ଓ ଯୋଗିନୀ ସୁଲଭା

"କୁଶଧ୍ୱଜସ୍ତସ୍ୟ ପୁତ୍ରସ୍ତତୋ ଧର୍ମଧ୍ୱଜୋ ନୃପଃ ।
ଧର୍ମଧ୍ୱଜସ୍ୟ ଦ୍ୱୌ ପୁତ୍ରୌ କୃତଧ୍ୱଜମିତଧ୍ୱଜୌ ॥

(ଶ୍ରୀ ଭା. ୯ । ୧୩ । ୧୯ )

**ଭାବ୍ ପଦ୍ୟ**

"ସୀରଧ୍ୱଜ ସୁତ ଭୟେ କୁଶଧ୍ୱଜ ଜନକ ଆମାନୀ ।
ଧର୍ମଧ୍ୱଜ ତନ ପୁତ୍ର କର୍ମଯୋଗୀ ଅତ ଜ୍ଞାନୀ ॥
ଲୋକ ବେଦ ମହିଁ ନିପୁଣ ସବନକୁଁ ଜ୍ଞାନ ସିଖାଓ୍ୱେ ।
ପରମାରଥକେ ପ୍ରଶ୍ନ ପୂଛବେ ପଣ୍ଡିତ ଆଓ୍ୱେ ॥
ଭୟୋ ସୁଖଦ ସମ୍ବାଦ ଶୁଭ, ସୁଲଭା ଯୋଗିନ ସଂଗମହିଁ ।
ଘୁଷୀ ଯୋଗିନୀ ଯୋଗ ତେଂ, ଜନକ ନୃପତ କେ ଅଗଂମହିଁ ॥"

ଅର୍ଥାତ୍, ଶୁକଦେବ କହୁଛନ୍ତି—"ହେ ରାଜନ୍ ! ସୀତାଙ୍କ ପିତା ସୀରଧ୍ୱଜଙ୍କର କୁଶଧ୍ୱଜ ନାମରେ ପୁତ୍ର ହୋଇଥିଲେ । ତାଙ୍କ ପୁତ୍ର ଥିଲେ ଧର୍ମଧ୍ୱଜ । ତାଙ୍କର ଦୁଇ ପୁତ୍ର ହୋଇଥିଲେ । ପ୍ରଥମ ପୁତ୍ରର ନାମ କୃତଧ୍ୱଜ ଓ ଦ୍ୱିତୀୟ ପୁତ୍ରର ନାମ ଥିଲା—ମିତଧ୍ୱଜ ।

ଦୁଇ ଜଣ ସମାନ ସିଦ୍ଧାନ୍ତବାଦୀ ସଜ୍ଜନ ମିଳିତ ହେଲେ—ସତ କଥାରେ ଦୁହେଁ କାଳଯାପନ କରନ୍ତି । ଜ୍ଞାନୀମାନେ ଜ୍ଞାନୀଙ୍କ ଅନୁସନ୍ଧାନ କରନ୍ତି ଏବଂ ବିଳାସୀ-ମାନେ ବିଳାସୀଙ୍କୁ ଖୋଜି ଥାଆନ୍ତି । ସମାନ ମତବାଦୀ ନ ହେଲେ ଆଲୋଚନାରେ ଆନନ୍ଦ ମିଳେ ନାହିଁ । ଦୁହିଙ୍କ ମନର ମିଳନରୁ ପ୍ରକୃତ ସତ୍କଥାର ସୁଖ ମିଳିଥାଏ ।

ସୂତ ମହୋଦୟ କହିଲେ—"ହେ ମୁନିଗଣ ! ମୁଁ ଆପଣମାନଙ୍କୁ ଧର୍ମଧ୍ୱଜ ଓ ଯୋଗିନୀ ସୁଲଭାଙ୍କ ଆଲୋଚନା ସମ୍ବନ୍ଧରେ ଶୁଣାଉଛି । ଆପଣମାନେ ସାବଧାନ ହୋଇ ସେହି ପ୍ରସଙ୍ଗ ଶୁଣନ୍ତୁ ।"

ପ୍ରାଚୀନ କାଳରେ ସୁଲଭା ନାମରେ ଜଣେ ପ୍ରସିଦ୍ଧ ଯୋଗିନୀ ଥିଲେ । ସେ ସମୟରେ ସେହି ଯୋଗିନୀ ଥିଲେ—ଜଣେ ଉଚ୍ଚକୋଟିର ନାରୀ । ମହାରାଜ

ଧର୍ମଧ୍ୱଜ ଜନକ ମଧ୍ୟ ଜଣେ ପରମ ଜ୍ଞାନୀ ଥିଲେ । ସେ ବୈଦିକ କର୍ମକାଣ୍ଡ ତଥା ମୋକ୍ଷପ୍ରଦ ଜ୍ଞାନ କାଣ୍ଡରେ ପାରଗ ଥିଲେ । ତାଙ୍କ ସଦାଚାର, ବୈରାଗ୍ୟ, ଜ୍ଞାନ, ତ୍ୟାଗ ଓ ଦାନର ମହିମା ସର୍ବତ୍ର ବ୍ୟାପି ଯାଇଥିଲା । ସୁଲଭା ଯୋଗିନୀ ଭାବିଲେ—"ଦେଖିବା, ରାଜା ଧର୍ମଧ୍ୱଜ ପ୍ରକୃତରେ ଜ୍ଞାନୀ କିମ୍ବା ତାଙ୍କ ଜ୍ଞାନରେ କିଛି ତ୍ରୁଟି ରହିଛି ! ଯୋଗିନୀ ନିଜର ଆଭୂଷଣ ତ୍ରିଦଣ୍ଡ ଆଦି ଛାଡ଼ିଦେଇ ଆସିଥିଲେ । ମହାରାଜ ଧର୍ମଧ୍ୱଜ ନିଜର ରାଜୋଚିତ ଭୂଷଣମାନ ତ୍ୟାଗ କରି, ଜଣେ ସାଧାରଣ ବ୍ୟକ୍ତିଙ୍କପରି ଦରବାରରେ ବସି ଜନସାଧାରଣଙ୍କ ସହିତ ଆଲୋଚନା କରୁଥିଲେ । ସେ ଗୋଟିଏ ସୁନ୍ଦରୀ ସ୍ତ୍ରୀ ରୂପରେ ରାଜାଙ୍କ ଦରବାରରେ ଉପସ୍ଥିତ ହୋଇଥିଲେ । ତାଙ୍କ ମୁଖମଣ୍ଡଳରେ ଦୀପ୍ତତେଜ ଶୋଭା ପାଉଥିଲା । ସେ ସ୍ୱର୍ଗୀୟ ଦେବୀ ପରି ଶୋଭା ପାଉଥିଲେ । ରାଜା ଯୋଗିନୀଙ୍କୁ ଯଥାବିଧି ସ୍ୱାଗତ ଜଣାଇ ତାଙ୍କୁ ପାଦ୍ୟ ଅର୍ଘ୍ୟ ଦେଇ ଅର୍ଚ୍ଚନା କରିଥିଲେ । ଯୋଗିନୀ ରାଜାଙ୍କ ଉପଚାର ଗ୍ରହଣ କରି ତାଙ୍କ ଆଗରେ ବସି ପଡ଼ିଲେ । ସେ ରାଜାଙ୍କୁ ପରୀକ୍ଷା କରିବାକୁ ଚାହୁଁଥିଲେ । ସେ ରାଜାଙ୍କ ଆଡ଼କୁ ଅପଲକ ନେତ୍ରରେ ଚାହିଁ ତାଙ୍କୁ ପ୍ରଭାବିତ କରିବାକୁ ଇଚ୍ଛା କଲେ । ରାଜାଙ୍କର ଆତ୍ମବିଶ୍ୱାସ ଥିଲା ଯେ, ତାଙ୍କ ଉପରେ କେହି ପ୍ରଭାବ ବିସ୍ତାର କରିପାରିବ ନାହିଁ । ସେ ଯୋଗିନୀଙ୍କୁ ଚାହିଁ କହିଲେ—"ଦେବି ! ଆପଣ ଏପରି ବେଶ ଧାରଣ କରିଛନ୍ତି କାହିଁକି ?"

ଯୋଗିନୀ ଉତ୍ତର ଦେଇ କହିଲେ—"ରାଜନ୍ ! ସମସ୍ତେ ଗୋଟିଏ ଗୋଟିଏ ବେଶ ଧାରଣ କରନ୍ତି । ଏଥିରେ ଆପଣ ଆଶ୍ଚର୍ଯ୍ୟ ହେଉଛନ୍ତି କାହିଁକି ?"

ରାଜା ଜନକ ଉତ୍ତର ଦେଇ କହିଲେ—"ସମସ୍ତଙ୍କର ଗୋଟିଏ ଗୋଟିଏ ବେଶ ଅଛି ଯେ, ଆପଣ ଏ' ଅସ୍ୱାଭାବିକ ବେଶ ଧାରଣ କରିଛନ୍ତି କାହିଁକି ? ବେଶ ବଦଳାଇ ରାଜାଙ୍କ ପାଖକୁ ଯିବାଲାଗି ନିଷେଧ ବାକ୍ୟ ରହିଛି । ଆପଣ ବେଶ ବଦଳାଇ ଆସିଥିବାରୁ ମୁଁ ଆପଣଙ୍କୁ ଚିହ୍ନି ପାରୁନାହିଁ । ଆପଣ ନିଜର ପ୍ରକୃତ ପରିଚୟ ଦିଅନ୍ତୁ । ଆପଣଙ୍କ ଆଗମନର କାରଣ ମୋ' ଆଗରେ ବ୍ୟକ୍ତ କରନ୍ତୁ । ଆପଣ ଏଠାରୁ କୁଆଡ଼େ ଯିବେ ?"

ରାଜାଙ୍କ ପ୍ରଶ୍ନ ଶୁଣି ସୁଲଭା କହିଲେ—"ରାଜନ୍ ! କାହାର ଗୋଟିଏ ପ୍ରକାର ବେଶ ନଥାଏ । ସମସ୍ତେ ବରାବର ବେଶ ବଦଳାଉ ଥାଆନ୍ତି । କେବଳ ପରମାତ୍ମାଙ୍କ ବ୍ୟତୀତ ଆଉ କାହାର ବେଶ ବଦଳେ ନାହିଁ ଯେ ? ବେଶ ବଦଳିବା ଓ ବଦଳାଇବା ଯେତେବେଳେ ସଂସାରର ନିୟମ, ତେଣୁ ମୋ' ବେଶକୁ ଆପଣ ଅସ୍ୱାଭାବିକ ବେଶ ବୋଲି ଭାବୁଛନ୍ତି କାହିଁକି ? ଆପଣ ପଚାରୁଛନ୍ତି—ମୁଁ କିଏ ? କେଉଁଠୁ ଆସିଛି ଓ କୁଆଡ଼େ ଯିବି ? ମୋ' ବିଚାରରେ ସମସ୍ତେ ଗୋଟିଏ ସ୍ଥାନରୁ ଆସିଛନ୍ତି ଓ ଗୋଟିଏ ସ୍ଥାନକୁ ଯିବେ । ସମସ୍ତେ ଏହି ସଂସାରରେ ରହି ପ୍ରତି ମୁହୂର୍ତ୍ତରେ ବେଶ ବଦଳାଇବାରେ ଲାଗିଛନ୍ତି ।"

"ସ୍ତ୍ରୀର ରଜ ଓ ପୁରୁଷର ବୀର୍ଯ୍ୟ ମିଳି ଗୋଟିଏ ଭିନ୍ନ ରୂପ ଧାରଣ କରେ । ସେହି ସ୍ୱରୂପ ନଅମାସ ପର୍ଯ୍ୟନ୍ତ ବରାବର ରୂପ ବଦଳାଇ ଶେଷରେ ଗୋଟିଏ ସନ୍ତାନର ରୂପ ଧାରଣ କରିଥାଏ । ସେହି ସନ୍ତାନଟି ଗର୍ଭରୁ ଜାତ ନ ହେବା ଯାଏ, ତାହା ପୁଲିଙ୍ଗ କିମ୍ବା ସ୍ତ୍ରୀଲିଙ୍ଗ କେହି ଜାଣି ନଥାଏ । ଧୀରେ ଧୀରେ ଶିଶୁ ସନ୍ତାନଟି ରୂପ ବଦଳାଇ ଶେଷରେ ଅରୂପଙ୍କ ସହିତ ମିଶିଯାଏ ।"

ଏହା ମଧ୍ୟରେ ଯୋଗିନୀ ଯୋଗ ବଳରେ ରାଜାଙ୍କ ଅନ୍ତରରେ ପ୍ରବେଶ କରିଯାଇଥିଲି । ରାଜା ଧର୍ମଧ୍ୱଜ ତାହା ଜାଣିପାରି କହିଲେ—"ଦେବି ! ତୁମେ ମୋ' ଶରୀରରେ ପ୍ରବେଶ କଲ କାହିଁକି ?"

ସୁଲଭା ଯୋଗିନୀ କହିଲେ—"ରାଜନ୍ ! ମୁଁ ପ୍ରକୃତରେ ଜାଣିବାକୁ ଚାହୁଁଛି—ଆପଣ ପ୍ରକୃତରେ ଜ୍ଞାନୀ ଅଥବା ଲୋକମାନେ ଆପଣଙ୍କୁ ଜ୍ଞାନୀ ବୋଲି ପ୍ରଚାର କରୁଛନ୍ତି ! ସେଇଥିପାଇଁ ମୁଁ ଆପଣଙ୍କ ଶରୀର ମଧ୍ୟରେ ପ୍ରବେଶ କରିଛି ।"

ମହାରାଜ ଜନକ କହିଲେ—"ଯୋଗିନି ! ତୁମେ ବହୁଜ୍ଞାନ ଅର୍ଜନ କରିଛ-ବୋଲି ତୁମ ମନରେ ଅଭିମାନ ରହିଛି । ତେଣୁ ତୁମେ ସ୍ତ୍ରୀସୁଲଭ ଚଞ୍ଚଳତା ବଶତଃ ଏପରି କାର୍ଯ୍ୟ କରିଛ । ଏହା ତୁମର ଅନୁଚିତ କାର୍ଯ୍ୟ ।"

ଯୋଗିନୀ ସୁଲଭା ପଚାରିଲେ—"ଏଥିରେ ଅନୁଚିତ କାର୍ଯ୍ୟ କଅଣ ?"

ରାଜା ଧର୍ମଧ୍ୱଜ କହିଲେ—"ଏଥିରେ ଗୋଟିଏ ନୁହେଁ, ଅନେକ ଅନୁଚିତ କାର୍ଯ୍ୟ ତୁମେ କରିଛ । ସ୍ତ୍ରୀମାନେ ସ୍ୱତନ୍ତ୍ର ହେଲେ ନଷ୍ଟ ହୋଇ ଯାଆନ୍ତି । ମୁଁ ଜ୍ଞାନୀ କିମ୍ବା ଅଜ୍ଞାନ, ସେଥିରେ ତୁମର କ'ଣ ଗଲା ? ତୁମେ ମୋ' ଅନ୍ତରରେ ପ୍ରବେଶ କରି ଘୋର ଅନ୍ୟାୟ କରିଛ । ସନ୍ନ୍ୟାସୀମାନେ ନାରୀଙ୍କୁ ସ୍ପର୍ଶ କରିବା ନିଷେଧ । ସେହିପରି ସନ୍ନ୍ୟାସିନୀ ମଧ୍ୟ କୌଣସି ପୁରୁଷକୁ ସ୍ପର୍ଶ କରିବା ଉଚିତ ନୁହେଁ । ତୁମେ ମୋ' ଅନ୍ତରରେ ପ୍ରବେଶ କରି ସେହି ସନ୍ନ୍ୟାସ ଧର୍ମକୁ ଅବମାନନା କରିଛ । ଏଥିରୁ ମନେ-ହେଉଛି—ତୁମେ ନାମକୁ ମାତ୍ର ସନ୍ନ୍ୟାସିନୀ, ଅଦ୍ୟାପି ତୁମ ମନରେ କାମଭାବନା ରହିଛି । ତେଣୁ ତୁମେ ପୁରୁଷମାନଙ୍କୁ ସ୍ପର୍ଶ କରିବାର ଦୁରାଶା ମନରେ ପୋଷଣ କରିଛ । ତୁମ ମନକୁ 'କାମନା' ଅଧିକାର କରିବାରୁ, ତୁମେ ନିଜକୁ ସନ୍ନ୍ୟାସିନୀ ବୋଲି କହିବାର ଅଧିକାରିଣୀ ନୁହ । ତା'ପରେ ତୁମେ ବ୍ରାହ୍ମଣ କୁଳ-ସମ୍ଭୂତା ଏବଂ ମୁଁ କ୍ଷତ୍ରିୟ । ତୁମେ ମୋ' ଅଙ୍ଗରେ ପ୍ରବେଶ କରିଥିବାରୁ ବର୍ଣ୍ଣସଙ୍କର ନୀତିକୁ ସମର୍ଥନ କରୁଛ । ତୁମେ ମୋକ୍ଷଧର୍ମ ପରାୟଣା ସନ୍ନ୍ୟାସିନୀ ଓ ମୁଁ ଗୃହସ୍ଥଧର୍ମୀ ଜଣେ ଗୃହସ୍ଥ । ତୁମେ ଯଦି ନିଜର ବଡ଼ପଣ ଦେଖାଇବାକୁ ମୋ' ହୃଦୟରେ ପ୍ରବେଶ କରିଥାଅ, ତେବେ ତାହା ତୁମ ମନର ଚଞ୍ଚଳତା । ସ୍ତ୍ରୀମାନଙ୍କ ପକ୍ଷରେ ଚଞ୍ଚଳତା

ପ୍ରକାଶ ପାଇବା ନିତାନ୍ତ ଗର୍ହିତ କାର୍ଯ୍ୟ । ଯଦି ତୁମେ ବିଜୟିନୀ ହେବା ଉଦ୍ଦେଶ୍ୟରେ ମୋ' ହୃଦୟରେ ପ୍ରବେଶ କରିଥାଅ, ତେବେ ତାହା ତୁମ ପକ୍ଷରେ ଯଥାର୍ଥ କାର୍ଯ୍ୟ ନୁହେଁ । କାରଣ ସନ୍ନ୍ୟାସ ଗ୍ରହଣ କରିଥିବା ବ୍ୟକ୍ତି ପକ୍ଷରେ ଅହଙ୍କାର ମନରେ ରଖିବା ଉଚିତ ନୁହେଁ ।

ଏହାଶୁଣି ସୁଲଭା ହସି ହସି କହିଲେ—"ରାଜନ୍ ! ମୁଁ ଭାବିଥିଲି, ଆପଣଙ୍କ ମନରୁ ଦ୍ୱୈତ ଭାବନା ଲୋପ ପାଇ ସାରିଛି । କିନ୍ତୁ ମୁଁ ଦେଖୁଛି—ସ୍ୱ-ଜାତି, ପରଜାତି, ସ୍ତ୍ରୀ-ପୁରୁଷ, ଗୋତ୍ର-ଅଗୋତ୍ର ଓ ଧର୍ମ-ଅଧର୍ମ ରୂପକ ସଙ୍କୀର୍ଣ୍ଣ ଭାବନା ଆପଣଙ୍କ ମନକୁ ଅବୋରି ରହିଛି । ମୁଁ ଆପଣଙ୍କ ଶରୀର ମଧ୍ୟରେ ପ୍ରବେଶ କରିଥିଲେ ହେଁ ଜଳରେ ପଦ୍ମପତ୍ର ପରି ସମ୍ପୂର୍ଣ୍ଣ ନିର୍ଲିପ୍ତ ହୋଇ ରହିଛି । ମୁଁ ଆପଣଙ୍କ ବୁଦ୍ଧିକୁ ଏକାନ୍ତ ବୋଲି ମନେ କରି, ସେଥିରେ ପ୍ରବେଶ କରିଛି । ଜ୍ଞାନ ଦୃଷ୍ଟିରୁ ଏହା ସଙ୍କର ନୁହେଁ ଏବଂ ଲୌକିକ ଦୃଷ୍ଟିରୁ ମଧ୍ୟ ଏହାକୁ ସଙ୍କର ବୋଲି କୁହାଯାଇ ପାରିବ ନାହିଁ । କାରଣ ମୁଁ ମଧ୍ୟ କ୍ଷତ୍ରିୟ କନ୍ୟା ଓ ମୋର ଗୋତ୍ର ମଧ୍ୟ ଭିନ୍ନ । ତେଣୁ ମୁଁ ଆପଣଙ୍କଠାରୁ ଉଚ୍ଚଜାତିର କିମ୍ବା ନୀଚ ଜାତିର ନୁହେଁ ।"

ରାଜା ତାଙ୍କ ପରିଚୟ ପଚାରନ୍ତେ ସୁଲଭା କହିଲେ—"ରାଜନ୍ ! ଆପଣ ପ୍ରଧାନ ନାମକ ରାଜର୍ଷିଙ୍କ ନାମ ଶୁଣିଥିବେ । ମୁଁ ତାଙ୍କର ପୁତ୍ରୀ । ବାଲ୍ୟକାଳରୁ ମୋର ଅଧ୍ୟାତ୍ମ ବିଦ୍ୟାପ୍ରତି ଅଭିରୁଚି ରହିଛି । ଯୌବନକାଳ ଉପସ୍ଥିତ ହୁଅନ୍ତେ, ମୋତେ ବିବାହ କରିବାଲାଗି ଅନେକ ରାଜକୁମାର ଆସିଥିଲେ । କିନ୍ତୁ ସେମାନଙ୍କ ମଧ୍ୟରେ ଜଣେ ହେଲେ ମୋ' ଯୋଗ୍ୟ ନ ଥିଲେ । ଯୋଗ୍ୟବର ନ ମିଳିବାରୁ ମୁଁ ଗୁରୁଙ୍କଠାରୁ ମୋକ୍ଷ ଧର୍ମର ଉପଦେଶ ଗ୍ରହଣ କରି ସନ୍ନ୍ୟାସିନୀ ହୋଇଛି । ମୋ' ମନରେ କୌଣସି କାମନା ନାହିଁ । ମୁଁ ବ୍ରହ୍ମଚାରିଣୀ । କେବଳ ଆପଣଙ୍କ ଜ୍ଞାନର ସୀମା ଜାଣିବାପାଇଁ ମୁଁ ଏଠାକୁ ଆସିଛି ।"

ଧର୍ମଧ୍ୱଜ କହିଲେ—"ଦେବି ! ଏହା ମଧ୍ୟ ତୁମର ଚଞ୍ଚଳତା ବୋଲି ମନେ ହୁଏ । ମୁଁ ଜ୍ଞାନୀ ହୁଏ ବା ଅଜ୍ଞାନ, ଏଥିରେ ତୁମର କ'ଣ ଯାଏ ଆସେ ? ମୁଁ ଜ୍ଞାନୀ ନୁହେଁ ବୋଲି ତୁମର ସନ୍ଦେହ କାହିଁକି ହେଉଛି ? ମୁଣ୍ଡ ଲଣ୍ଡାକରି ବାବାଜୀ ହେଲେ କେହି କ'ଣ ଜ୍ଞାନୀ ବୋଲି କଥିତ ହୁଏ କି ? ମୁଁ ଗୁରୁପରମ୍ପରାରୁ ଜ୍ଞାନଲାଭ କରିଛି । ଘରେ ରହି କ'ଣ କେହି ଜ୍ଞାନୀ ହୋଇ ପାରେ ନାହିଁ ? ମୁଁ ରାଜକାର୍ଯ୍ୟ କରୁଥିଲେ ମଧ୍ୟ ସେଥିରେ ନିର୍ଲିପ୍ତ ଅଛି । ମୋର ପୂର୍ଣ୍ଣଜ୍ଞାନ ହୋଇଛି ବୋଲି ଧାରଣା । ଗୃହସ୍ଥ ହୋଇ ମଧ୍ୟ ଯେ, ସଦାଚାର ନିୟମ ପାଳନ କରୁଛି, ସେ ଜ୍ଞାନୀ । ଯୋଗିନି ! କେବଳ ଅକର୍ମଣ୍ୟ ହୋଇଗଲେ, ଅଗ୍ନି ସ୍ପର୍ଶ ନ କଲେ, କେବଳ କାଷାୟବସ୍ତ୍ର ପିନ୍ଧି ତ୍ରିଦଣ୍ଡ ଧାରଣ କଲେ କେହି ଜ୍ଞାନୀ ହୋଇପାରେ ନାହିଁ । ସଂସାରର ବିଷୟବାସନାରୁ

ବିମୁକ୍ତ ନ ହେଲେ କେହି ଜ୍ଞାନୀ ହୋଇଯାଏ ନାହିଁ । ଜ୍ଞାନବିନା ମୋକ୍ଷପ୍ରାପ୍ତି ହୁଏ ନାହିଁ । ଜ୍ଞାନବିନା ମୃତ୍ୟୁଭୟ ମନରୁ ଦୂର ହୁଏ ନାହିଁ ।"

"ପୂର୍ବଜନ୍ମର ପାପ ପୁଣ୍ୟରୁ ମନୁଷ୍ୟ ବନ୍ଧନରେ ପଡ଼େ । କାରଣ ବାସନାମୟ ଜୀବ ସଂସାରର ଚକ୍ରରେ ପଡ଼ିଥାଏ । ମୁଁ ଗୁରୁଙ୍କ ଅନୁଗ୍ରହରୁ ବାସନାକୁ ଜ୍ଞାନାଗ୍ନିରେ ଦଗ୍ଧ କରି ଦେଇଛି । ଏହି ନଶ୍ବରଶୀଳ ବାସନା ପ୍ରତି ମୋ' ମନରେ ଆସକ୍ତି ନାହିଁ । ମୁଁ ଉଦାସୀନଙ୍କ ପରି ବ୍ୟବହାର କରୁଛି।"

"ହେ ସୁଲଭେ ! ତୁମେ ବିଦୁଷୀ ଅଛ । ତୁମ ଓଜ, ତେଜ ଓ ପ୍ରଭାବରେ ମୁଁ ପ୍ରଭାବିତ ହୋଇଛି ସତ, କିନ୍ତୁ ତୁମେ ସୁନ୍ଦରୀ, ସୁକୁମାରୀ ଓ ଯୁବତୀ ଅଛ । ତେଣୁ ମୁଁ ତୁମର ଯୋଗ୍ୟ ନୁହେଁ । ସେହି ଦୃଷ୍ଟିରୁ ତୁମେ ମୋ' ଅନ୍ତରରେ ପ୍ରବେଶ କରିବା ଉଚିତ ହୋଇ ନାହିଁ ।"

ଏହାଶୁଣି ସୁଲଭା କହିଲେ—"ରାଜନ୍ ! ଆପଣଙ୍କ କଥନ ସତ୍ୟ । କିନ୍ତୁ ଜ୍ଞାନୀ ପକ୍ଷରେ ବେଶି ଗୋଟିଏ ବନ୍ଧନ ନୁହେଁ । ରାଜନ୍ ! ମୁଁ ବିନା କାରଣରେ ଆପଣଙ୍କ ପାଖକୁ ଆସିନାହିଁ । ମୁଁ ମୁମୁକ୍ଷୁମାନଙ୍କୁ ଖୋଜୁଛି । ମୁଁ ଶୁଣିଛି—ଆପଣ ଜ୍ଞାନୀ ଓ ବ୍ରହ୍ମବେତ୍ତା ଅଛନ୍ତି । ମୁଁ କେବଳ ଆପଣଙ୍କ କଲ୍ୟାଣପାଇଁ ଏଠାକୁ ଆସିଛି । ମୁଁ ବାଦବିବାଦଠାରୁ ଦୂରରେ ରହେ । ସାଧାରଣ ଶାବ୍ଦିକମାନଙ୍କ ପରି ମୁଁ ଶବ୍ଦରୁ ଅର୍ଥ ଅର୍ଥାନ୍ତର କରେ ନାହିଁ । ମୁଁ ଆପଣଙ୍କ ଜ୍ଞାନ ସମ୍ବନ୍ଧରେ ବେଶ୍ ଜାଣି ଗଲିଣି । ଜ୍ଞାନୀ ବ୍ୟକ୍ତି କୌଣସିଠାରେ ବେଶି ସମୟ ରହେ ନାହିଁ । ମୁଁ ଆପଣଙ୍କୁ ଜଣେ ପରମଜ୍ଞାନୀ ବୋଲି ଜାଣି ଆଜି ରାତିକ ଆପଣଙ୍କ ଅନ୍ତରରେ ବିଶ୍ରାମ କରି କାଲି ଅନ୍ୟତ୍ର ଚାଲିଯିବି । ରାଜନ୍ ! ସୌଭାଗ୍ୟର ବିଷୟ, ଆପଣ ରାଜଭୋଗ ମଧ୍ୟରେ ରହି ମଧ୍ୟ ସର୍ବଦା ନିର୍ଲିପ୍ତ ଅଛନ୍ତି । ଆପଣ ପ୍ରପଞ୍ଚରେ ରହି ମଧ୍ୟ ନିଷ୍ପ୍ରପଞ୍ଚ ଅଛନ୍ତି । ଆପଣଙ୍କ ପୂର୍ବପୁରୁଷମାନେ ମଧ୍ୟ ଜ୍ଞାନୀ ଥିଲେ । ମୁଁ ଆପଣଙ୍କ ବାକ୍ୟାଳାପରେ ସନ୍ତୁଷ୍ଟ ହୋଇଛି । ଆପଣଙ୍କର କଲ୍ୟାଣ ହେଉ !"

## ଛପ୍‌ପୟ

"ଭଣେ୍ତ ଯୋଗିନୀ ସଙ୍ଗେ ଜନକ ନୃପକେ ପ୍ରଶ୍ନୋତ୍ତର ।
ଯୋଗ ଜ୍ଞାନ ଅଧ୍ୟାତ୍ମଯୁକ୍ତ ସୁନ୍ଦର ଅତି ସୁଖକର ।।
ହୋତେ ହୋଂ ଜ୍ଞାନୀ ପରମଜ୍ଞାନ କୀ ଙ୍ଗେ ବହାଇ ।
ଜନକ ତ୍ୟାଗ ତପ ତେଜ ନିରଖି ସଲଭ ହରଷାଇ ।।
ସ୍ୱୟଂ ତରେ ତାରେ ବହୁତ, ହେ ଜନକେ ଅନୁରୂପ ସୁତ ।
ଭଣେ୍ତ କୃତଧ୍ୱଜ ପ୍ରଥମ ନୃପ, ଦ୍ୱିତୀୟ ମିତଧ୍ୱଜ ଯୋଗଯୁତ ।।"

# ମହାରାଜ କେଶିଧ୍ୱଜ ଓ ଖାଣ୍ଡିକ୍ୟ

"କୃତଧ୍ୱଜାତ୍ କେଶିଧ୍ୱଜଃ ଖାଣ୍ଡିକ୍ୟସ୍ତୁ ମିତଧ୍ୱଜାତ୍ ।
କୃତଧ୍ୱଜସୁତୋ ରାଜନ୍ନାତ୍ମବିଦ୍ୟାବିଶାରଦଃ ॥"

(ଶ୍ରୀଭା. ୯ସ୍କ ୧୩ଅ, ୨୦ ଶ୍ଳୋ)

## ଛପ୍ପୟ

"ପୁତ୍ର କୃତଧ୍ୱଜ ମାଁହ ଭୟେ କେଶିଧ୍ୱଜଜ୍ଞାନୀ ।
ନୃପ ମିତଧ୍ୱଜ ତନୟ ଭୟେ ଖାଣ୍ଡିକ୍ୟ ଅମାନୀ ॥
କେଶିଧ୍ୱଜ ଅଧ୍ୟାତ୍ମ ଜ୍ଞାନମହଁ ଶବଦ ଦିବାକର ।
କର୍ମ ତତ୍ତ୍ୱ ପରବୀନ ନୃପତି ଖାଣ୍ଡିକ୍ୟ ଉଜାଗର ॥
କ୍ଷତ୍ରିୟ-ଧର୍ମ କଠୋର ଅତି, ସମର ଉଭୟଦଳ ମହଁ ଭୟୋ ।
ହାରେଯୋ ଲଘୁ ଖାଣ୍ଡିକ୍ୟ ନୃପ, ଡରିକେ ବନ ମହଁ ଭଗି ଗୟୋ ॥"

ଶ୍ରୀ ଶୁକଦେବ କହିଲେ—"ହେ ରାଜନ୍ ! ମହାରାଜ ଜନକଙ୍କର କୃତଧ୍ୱଜ ଓ ମିତଧ୍ୱଜ ନାମକ ଦୁଇ ପୁତ୍ର ହୋଇଥିଲେ । ତାଙ୍କ ମଧ୍ୟରେ କୃତଧ୍ୱଜର ପୁତ୍ର କେଶିଧ୍ୱଜ ଅଟନ୍ତି ଏବଂ ମିତଧ୍ୱଜଙ୍କ ପୁତ୍ର ଖାଣ୍ଡିକ୍ୟ । ଏହାଙ୍କ ମଧ୍ୟରେ କେଶିଧ୍ୱଜ ଆତ୍ମବିଦ୍ୟା ବିଶାରଦ ଥିଲେ ।"

ଗୁଣ ଗ୍ରହଣ କରିବା ସମସ୍ତଙ୍କ ପକ୍ଷରେ ସମ୍ଭବ ନୁହେଁ । ଯେଉଁ ବ୍ୟକ୍ତି ଅନ୍ୟର ଗୁଣ ଗ୍ରହଣ କରେ, ସେ ଅନ୍ୟ ସହିତ ଶତ୍ରୁତା କରିବ ନାହିଁ । ଅଜ୍ଞାନତା ବଶତଃ ଆମେ ଯେତେବେଳେ ଅସତ୍ ବସ୍ତୁକୁ ସତ୍ ବୋଲି ମନେ କରି ସେଥିରେ ଆସକ୍ତି ରଖୁଥାଉଁ, ସେତେବେଳେ ଆମର କେହି ଶତ୍ରୁ ଓ ମିତ୍ର ହୋଇଥାଆନ୍ତି । ଯଦି ଦୈବାତ୍ ଜ୍ଞାନୀ ଲୋକର ମନରେ କାହାରି ପ୍ରତି ଶତ୍ରୁତା ଜାତ ହୋଇଥାଏ, ତେବେ ପରମୁହୂର୍ତ୍ତରେ ତାହା ମିତ୍ରତାରେ ପରିଣତ ହୁଏ । କିନ୍ତୁ ମୂର୍ଖ ଲୋକର ମନରୁ ଶତ୍ରୁତା ଦୂର ହୁଏ ନାହିଁ । ଜ୍ଞାନୀ ବ୍ୟକ୍ତିର ହୃଦୟରେ ଶତ୍ରୁତାର କୌଣସି ପ୍ରଭାବ ପଡ଼େ ନାହିଁ ।

ସୂତ କହିଲେ—"ମୁଁ ଆପଣମାନଙ୍କୁ ଧର୍ମଧ୍ୱଜ ଓ ଯୋଗିନୀ ସୁଲଭାଙ୍କ ଆଖ୍ୟାୟିକା କହିଲି । ଏହାପରେ ମୁଁ ଜନକ ବଂଶୀୟ ଅନ୍ୟାନ୍ୟ ମୈଥିଳ ରାଜମାନଙ୍କ ବଂଶର ବର୍ଣ୍ଣନା କରିବି ।

ମହାରାଜ ଧର୍ମଧ୍ୱଜଙ୍କର ଦୁଇପୁତ୍ର ଥିଲେ । କୃତଧ୍ୱଜ ଓ ମିତଧ୍ୱଜ । କୃତଧ୍ୱଜଙ୍କ ପୁତ୍ର କେଶିଧ୍ୱଜ ଏବଂ ମିତଧ୍ୱଜଙ୍କ ପୁତ୍ର ଖାଣ୍ଡିକ୍ୟ । ଏହି ଦୁଇଭାଇଙ୍କ ମଧ୍ୟରେ ପରମାର୍ଥ ସମ୍ବନ୍ଧରେ ଅନେକ ଆଲୋଚନା ହୋଇଥିଲା ।

ଶୌନକଙ୍କ ଅାଗ୍ରହ ମତେ ସୂତ ମୁନି କହିଲେ—"ମହାରାଜ କୃତଧ୍ୱଜଙ୍କ ପୁତ୍ର ଥିଲେ—କେଶିଧ୍ୱଜ । ସେ ପରମଜ୍ଞାନୀ ଓ ତତ୍ତ୍ୱଦର୍ଶୀ ଥିଲେ । ଋଷିମୁନିଗଣ ବେଳେବେଳେ ତାଙ୍କ ନିକଟକୁ ଆସି ନିଜ ନିଜର ଶଙ୍କା ସମାଧାନ କରୁଥିଲେ । କିନ୍ତୁ ମିତଧ୍ୱଜଙ୍କ ପୁତ୍ରଥିଲେ—ଖାଣ୍ଡିକ୍ୟ । ସେ ମଧ୍ୟ ଜ୍ଞାନୀ ଥିଲେ । କର୍ମକାଣ୍ଡ ପ୍ରତି ତାଙ୍କ ମନରେ ବିଶେଷ ଆଗ୍ରହ ଥିଲା । ସେ ମଧ୍ୟ କର୍ମକାଣ୍ଡ ସମ୍ବନ୍ଧୀୟ ଅନେକ ଶଙ୍କା ସମାଧାନରେ ପ୍ରବୀଣ ଥିଲେ । ତାଙ୍କର ଗୋଟିଏ ଶ୍ରେଷ୍ଠ ରାଜ୍ୟ ଥିଲା । ସେ ସେହିଠାରେ ରହି ଆନନ୍ଦରେ ଯଜ୍ଞ କରୁଥିଲେ ।"

କ୍ଷତ୍ରିୟମାନେ ଯୁଦ୍ଧପ୍ରିୟ । ବିଶେଷତଃ ଯୁଦ୍ଧପାଇଁ କେହି ଆହ୍ୱାନ କଲେ, ସେମାନେ ପ୍ରାଣପଣ କରି ଯୁଦ୍ଧକୁ ଡେଇଁ ପଡ଼ନ୍ତି ।

କୌଣସି କାରଣ ବଶତଃ କେଶିଧ୍ୱଜ ଓ ଖାଣ୍ଡିକ୍ୟଙ୍କ ମଧ୍ୟରେ ଯୁଦ୍ଧ ହେଲା । ସେହି ଯୁଦ୍ଧରେ କେଶିଧ୍ୱଜ ବିଜୟୀ ହେଲେ । ଖାଣ୍ଡିକ୍ୟ ପରାସ୍ତ ହୋଇ ବଣକୁ ପଳାଇ ଯାଇ, ସେହିଠାରେ ଗୋଟିଏ ଦୁର୍ଗ ନିର୍ମାଣ ପୂର୍ବକ ରହିଲେ ।

"ମହାରାଜ କେଶିଧ୍ୱଜ ଖାଣ୍ଡିକ୍ୟଙ୍କ ରାଜ୍ୟ ଅଧିକାର କରିନେଲେ ସତ, କିନ୍ତୁ ସେ ନିଷ୍କାମଭାବରେ ଯଜ୍ଞ କରିବାକୁ ଲାଗିଲେ । ଥରେ କେଶିଧ୍ୱଜଙ୍କ ଯଜ୍ଞୀୟ ଧେନୁଟିକୁ ବନରେ ସିଂହ ମାରିଦେଲା । ଯଜ୍ଞୀୟ ଦୁଗ୍ଧବତୀ ଧେନୁଟି ମରିଯିବା ଫଳରେ, ରାଜାଙ୍କ ଅସାବଧାନତା ଲାଗି ତାଙ୍କୁ ପାପ ହେଲା । ସେ ପାପରୁ ମୁକ୍ତ ହେବାର ଉପାୟ ବିଷୟରେ ପ୍ରଶ୍ନ କରନ୍ତେ—ଋତ୍ୱିକମାନେ କହିଲେ—"ଆଜିକାଲି ମହର୍ଷି କଶେରୁ ହେଉଛନ୍ତି ଜଣେ ପ୍ରସିଦ୍ଧ କର୍ମକାଣ୍ଡଜ୍ଞ । ସେ କେବଳ ଆପଣଙ୍କ ପାପର ପ୍ରାୟଶ୍ଚିତ ସମ୍ବନ୍ଧରେ ଉଚିତ ଉତ୍ତର ଦେଇ ପାରିବେ ।"

ତହୁଁ ମହାରାଜ କେଶିଧ୍ୱଜ କଶେରୁ ମହର୍ଷିଙ୍କ ନିକଟକୁ ଗଲେ । ମହର୍ଷି କଶେରୁ ରାଜାଙ୍କ ଠାରୁ ସବୁ ବିଷୟ ଶୁଣି କହିଲେ—"ରାଜନ୍ ! ମୁଁ ଏ' ବିଷୟରେ କିଛି କହି ପାରିବି ନାହିଁ । ଆପଣ ଏ ବିଷୟର ସମାଧାନପାଇଁ ମହର୍ଷି ଶୁନକଙ୍କ ନିକଟକୁ ଯାଆନ୍ତୁ ।"

ସୂତମୁନି କହିଲେ—"ହେ ଶୌନକ ! ତହୁଁ ରାଜା କେଶିଧ୍ୱଜ ଆପଣଙ୍କ ପିତା ଶୁନକଙ୍କ ନିକଟକୁ ଗଲେ । ସେଠାରେ ପହଞ୍ଚି ନିଜ ସମସ୍ୟା ବିଷୟରେ ତାଙ୍କୁ ଜଣାଇ, ପ୍ରତିକାର ଲୋଡ଼ିଲେ । ତାଙ୍କଠାରୁ ଘଟଣାଟି ଶୁଣିସାରି ଶୁନକ କହିଲେ—ରାଜନ୍ ! ଏହା ଏକ ଗୂଢ଼ ପ୍ରଶ୍ନ । ଏ ପ୍ରଶ୍ନର ସମାଧାନ କେବଳ ଜଣେ ମାତ୍ର ଜାଣନ୍ତି । କିନ୍ତୁ ଆପଣ ତାଙ୍କ ପାଖକୁ ଯିବେ ନାହିଁ ।"

ତହୁଁ ରାଜା ହାତଯୋଡ଼ି କହିଲେ—"ମୁନିବର ! ମୋତେ ଯାଜ୍ଞିକମାନେ ମହର୍ଷି କଶେରୁଙ୍କ ନିକଟକୁ ପଠାଇଲେ । ସେ ମୋତେ ଆପଣଙ୍କ ପାଖକୁ ପଠାଇ ଦେଲେ । ଆପଣ ପୁଣି କହୁଛନ୍ତି—ଅନ୍ୟ କାହା ପାଖକୁ ଯିବାକୁ ହେବ ! ହେଲେ, ଆପଣ ତାଙ୍କ ନାମ କହୁ ନାହାନ୍ତି । କେବଳ କହୁଛନ୍ତି—ମୁଁ ତାଙ୍କ ପାଖକୁ ଯାଇ ପାରିବି ନାହିଁ । ଆପଣ ଦୟାକରି ତାଙ୍କ ନାମ କହନ୍ତୁ । ସେ ଯେତେବଡ଼ ଋଷି ହୋଇଥିଲେ ମଧ୍ୟ ମୁଁ ତାଙ୍କ ପାଖକୁ ଯିବାଲାଗି ଯଥାସାଧ୍ୟ ଚେଷ୍ଟା କରିବି ।"

ଏହା ଶୁଣି ଶୁନକ କହିଲେ—"ରାଜନ୍ ! ଏ ବିଷୟ କେବଳ ଆପଣଙ୍କ ଶତ୍ରୁ ଖାଣ୍ଡିକ୍ୟ ଜାଣିଛନ୍ତି । ଆପଣ ତାଙ୍କୁ ଯୁଦ୍ଧରେ ପରାସ୍ତ କରି ରାଜ୍ୟରୁ ତଡ଼ି ଦେଇଛନ୍ତି । ତେଣୁ ମୋର ଧାରଣା ଆପଣ ତାଙ୍କ ପାଖକୁ ଯିବେ ନାହିଁ ।"

ରାଜା ଦୃଢ଼ତାର ସହିତ କହିଲେ—"ବ୍ରହ୍ମନ୍ ! ମୁଁ ନିଶ୍ଚୟ ତାଙ୍କ ପାଖକୁ ଯିବି । ମୁଁ ଯଜ୍ଞରେ ଦୀକ୍ଷିତ ହୋଇଥିବାରୁ, ଅସ୍ତ୍ରଧାରଣ କରି ଯିବି ନାହିଁ । ମୁଁ ଜଣେ ଶତ୍ରୁ ରାଜାଭାବରେ ତାଙ୍କ ପାଖକୁ ନ ଯାଇ, ଜଣେ ଶିଷ୍ୟରୂପେ ଭାବି ତାଙ୍କ ପାଖରେ ଉପସ୍ଥିତ ହେବି । ଏଥିରେ ମୋର ଉଦ୍ଦେଶ୍ୟ ସିଦ୍ଧ ହେବ । ସେ ଯଦି ମୋତେ ମାରିଦିଅନ୍ତି, ମୁଁ ପାପରୁ ମୁକ୍ତ ପାଇ ସ୍ୱର୍ଗରେ ବସିବି । ସେ ଯଦି ଗୁରୁରୂପେ ମୋତେ ପାପରୁ ମୁକ୍ତି ପାଇବାର ଉପାୟ ବତାଇ ଦେବେ, ତେବେ ମୋର ଉଦ୍ଧାର ହୋଇଯିବ ।"

ତାହା ଶୁଣି ଶୁନକ କହିଲେ—"ମହୋଦୟ ! ଆପଣ ତାଙ୍କର ପାଖକୁ ଯାଆନ୍ତୁ । ଆପଣଙ୍କର କଲ୍ୟାଣ ହେବ ।"

ଏହା ଶୁଣି ରାଜା ମୁନି ଶୁନକଙ୍କୁ ପ୍ରଣାମ ଜଣାଇ ଖାଣ୍ଡିକ୍ୟଙ୍କ ପାଖକୁ ଗଲେ । ସେତେବେଳେ ରାଜା କୃଷ୍ଣ ମୃଗଚର୍ମ ପିନ୍ଧିଥିଲେ । ତାଙ୍କୁ ଦେଖିବା ମାତ୍ରେ ଖାଣ୍ଡିକ୍ୟଙ୍କ ମନରେ କ୍ରୋଧ ଜାତ ହେଲା । ସେ ଭାବିଲେ—"ମୁଁ ରାଜ୍ୟ, ସିଂହାସନ ତ୍ୟାଗ କରି ବନରେ ଆସି ରହିଛି । ତଥାପି ଏ' ମୋ' ପିଚ୍ଛା ଧରିଛି । ଠିକ୍ ଅଛି, ମୁଁ ଏହା ସହିତ ଯୁଦ୍ଧ କରିବି । ଏହା ଚିନ୍ତାକରି ସେ ଧନୁଧର ଛିଡ଼ା ହୋଇଗଲେ ।"

ଖାଣ୍ଡିକ୍ୟଙ୍କୁ ଯୁଦ୍ଧ ଲାଗି ଉଦ୍ୟତ ହୋଇଥିବାର ଦେଖି, କେଶିଧ୍ୱଜ କହିଲେ—"ଭାଇ ! ମୁଁ ଯୁଦ୍ଧ କରିବାକୁ ଆସି ନାହିଁ । ତୁମେ କ'ଣ ମୋତେ ଏ' ଅବସ୍ଥାରେ ଦେଖି ବାଣ ମାରିବ ?"

ଏହାଶୁଣି ଖାଣ୍ଡିକ୍ୟ କହିଲେ—"ରାଜନ୍ ! ଆପଣ ମୋର ଶତ୍ରୁ ଅଟନ୍ତି । ଶତ୍ରୁକୁ ବଧ କରିବା କ୍ଷତ୍ରିୟର ପରମ ଧର୍ମ । ଆପଣ ମୃଗଚର୍ମ ଧାରଣ କରି ଆସିଥିବାରୁ ମୁଁ ଆପଣଙ୍କ ଉପରକୁ ବାଣ ମାରିବି ନାହିଁ ବୋଲି ଯଦି ଭାବିଥାଆନ୍ତି, ତେବେ ତାହା ଆପଣଙ୍କର ଭ୍ରମଧାରଣା । ମୃଗଙ୍କ ପିଠିରେ କ'ଣ ମୃଗଚର୍ମ ନଥାଏ କି ? ଶତ୍ରୁ ହେଉଛି—ଶତ୍ରୁ । ସେ ଯେ କୌଣସି ବେଶରେ ଆସିଲେ ମଧ୍ୟ ଶତ୍ରୁ । ମୁଁ ଆପଣଙ୍କୁ କୌଣସିମତେ ଛାଡ଼ିବି ନାହିଁ ।"

ତହୁଁ କେଶିଧ୍ୱଜ କହିଲେ—"ଭାଇ ! ଥରେ ମୋ' କଥା ଶୁଣ । ମୁଁ ଯଜ୍ଞ କରୁଥିଲି । ମୋ' ଯଜ୍ଞୀୟ ଧେନୁଟିକୁ ସିଂହ ବନରେ ବଧ କରି ଦେଇଛି । ଯେହି ବିଷୟରେ 'ବିଧାନ' ପଚାରିବା ଲାଗି ମୁଁ ଧନୁଶର ତ୍ୟାଗ କରି ଆପଣଙ୍କ ପାଖକୁ ଆସିଛି । ଏଣିକି ଆପଣଙ୍କ ଇଚ୍ଛା । ମୋତେ ଶତ୍ରୁ ଭାବି ମାରି ଦିଅନ୍ତୁ କିମ୍ବା ଶିଷ୍ୟ-ବୋଲି ଭାବି ଉପଦେଶ ଦିଅନ୍ତୁ ।"

ତାହା ଶୁଣି ଖାଣ୍ଡିକ୍ୟ ଧନୁଶର ଥୋଇଦେଇ ଭିତରକୁ ଚାଲିଗଲେ ଏବଂ ମନ୍ତ୍ରିମାନଙ୍କ ସହିତ ପରାମର୍ଶ କଲେ ।

ଖାଣ୍ଡିକ୍ୟଙ୍କ କଥା ଶୁଣି ମନ୍ତ୍ରିମାନେ କହିଲେ—"ମହାରାଜ ! ଏପରି ସୁବର୍ଣ୍ଣ ସୁଯୋଗକୁ ହାତଛଡ଼ା କରିବା ଉଚିତ ନୁହେଁ । ଯାହାଙ୍କପାଇଁ ଆଜି ଆମର ଏ' ଦୁର୍ଦ୍ଦଶା, ସେ ଆଜି ଆମ ଅଞ୍ଚଳକୁ ଆସିଛି । ନିଜ ଆୟତ୍ତରେ ଥିବା ଶତ୍ରୁକୁ ନ ମାରି ଛାଡ଼ିଦେବା ବିଜ୍ଞତାର କାମ ହେବ ନାହିଁ । ଆପଣ ଏହି ଶତ୍ରୁକୁ ସହଜରେ ଜୟ କରି, ସମ୍ପୂର୍ଣ୍ଣ ଭୂମଣ୍ଡଳର ରାଜା ହୋଇ ପାରିବେ ।"

ଏହାଶୁଣି ଖାଣ୍ଡିକ୍ୟ କହିଲେ—"ଆପଣମାନେ ସତ୍ୟ କହୁଛନ୍ତି । କିନ୍ତୁ ବର୍ତ୍ତମାନ ମୋ' ଭାଇ ଶତ୍ରୁ ଭାବରେ ମୋ' ପାଖକୁ ଆସିନାହିଁ । ସେ ମୋତେ ଧର୍ମ ସମ୍ବନ୍ଧରେ ପଚାରିବାକୁ ଆସିଛି । ମୁଁ ଏହାକୁ ମାରିଦେଲେ ମୋତେ ନିଷ୍କଣ୍ଟକ ରାଜ୍ୟ ମିଳିଯିବ ସତ, କିନ୍ତୁ ମୋର ପରଲୋକ ନଷ୍ଟ ହୋଇଯିବ । ସେ ପାପରୁ ମୁକ୍ତ ହୋଇ ପରଲୋକକୁ ଚାଲିଯିବ । କିନ୍ତୁ ମୁଁ ଯଦି ଶତ୍ରୁଭାବ ଛାଡ଼ି ଦେଇ ତାଙ୍କୁ ଜ୍ଞାନ ଉପଦେଶ ଦିଏ, ତେବେ ମୋର ପରଲୋକ, ସୁଧୁରି ଯିବ । ତେଣୁ ଦ୍ୱେଷଭାବ ଛାଡ଼ି ଦେଇ ମୁଁ ଏହାକୁ ଉପଦେଶ ଦେବି ।"

ସେ ବାହାରକୁ ଆସି କହିଲେ—"କୁହନ୍ତୁ ମହାରାଜ ! ଆପଣ କ'ଣ ଜାଣିବାକୁ ଚାହୁଁଛନ୍ତି ।" ତହୁଁ ରାଜା କେଶିଧ୍ୱଜ ତାଙ୍କୁ ଯଜ୍ଞୀୟ ଧେନୁବଧର ସମସ୍ତ ଘଟଣା ଶୁଣାଇ ଦେଲେ ଏବଂ ପ୍ରାୟଶ୍ଚିତ୍ତ କରି କିପରି ପାପରୁ ମୁକ୍ତ ହେବେ, ତା'ର ଉପାୟ ପଚାରିଲେ ।

ରାଜା ଖାଣ୍ଡିକ୍ୟ ଶାସ୍ତ୍ରୀୟବିଧି ଅନୁସାରେ କେଶିଧ୍ୱଜଙ୍କୁ ଗୋ-ବଧ ପ୍ରାୟଶ୍ଚିତ୍ତ ସମ୍ବନ୍ଧରେ ସମସ୍ତ ବିଧିବିଧାନ ବତାଇଦେଲେ । ତାହାଶୁଣି ରାଜା କେଶିଧ୍ୱଜ ପରମ ସନ୍ତୋଷରେ ଖାଣ୍ଡିକ୍ୟଙ୍କଠାରୁ ବିଦାୟ ନେଇ ନିଜ ଯଜ୍ଞ ଭୂମିକୁ ଫେରି ଆସିଲେ । ସେ ଯାଜ୍ଞିକମାନଙ୍କ ଆଗରେ ଖାଣ୍ଡିକ୍ୟଙ୍କ ବିଧାନ କହିଲେ ଏବଂ ସେହି ଅନୁସାରେ ପ୍ରାୟଶ୍ଚିତ୍ତ କଲେ । ତା'ପରେ ସେ ଦାନ, ମାନ ଓ ଆଦରର ସହିତ ସମସ୍ତଙ୍କୁ ସମ୍ବର୍ଦ୍ଧନା ଜଣାଇ, ଉପଯୁକ୍ତ ଦକ୍ଷିଣା ପ୍ରଦାନ କଲେ । ତା'ପରେ ଯାଜ୍ଞିକମାନେ ପରମ ସନ୍ତୁଷ୍ଟହୋଇ ତାଙ୍କୁ ଆଶୀର୍ବାଦ ପ୍ରଦାନ ପୂର୍ବକ ସେଠାରୁ ଚାଲିଗଲେ ।

ତା'ପରେ ସେ ଚିନ୍ତାକଲେ—"ଆରେ···! ମୁଁ ଗୋଟିଏ ଭୁଲ୍ କରିଦେଲି ! ମୁଁ ଖାଣ୍ଡିକ୍ୟଙ୍କୁ ଗୁରୁଦକ୍ଷିଣା ନ ଦେଇ ଚାଲିଆସି ଭୁଲ୍ କରିଛି । ଗୁରୁଦକ୍ଷିଣା ବିନା ସମସ୍ତ କାର୍ଯ୍ୟ ଅପୂର୍ଣ୍ଣ ହୋଇଥାଏ । ମୁଁ ଯାଇ ଖାଣ୍ଡିକ୍ୟଙ୍କୁ ଗୁରୁଦକ୍ଷିଣା ଦେଇ ଆସିବି ।"

ସୂତମୁନି କହିଲେ—"ମୁନିଗଣ ! ଏହା ବିଚାର କରି ମହାରାଜ କେଶିଧ୍ୱଜ ନିଜ ରଥରେ ବସି ରାଜର୍ଷି ଖାଣ୍ଡିକ୍ୟଙ୍କ ନିକଟରେ ପହଞ୍ଚିଲେ ।"

## ଛପ୍‌ପୟ

**ଇତ କେଶିଧ୍ୱଜ କରେୟୋ ଯଜ୍ଞ ଇକ ଅତିଶୟ ଭାରୀ ।**
**ସିଂହ ଯଜ୍ଞ କୀ ଧେନୁ ଖାଇ ସବ ବାତ ବିଗାରୀ ।।**
**ପୂଛେଁ ପ୍ରାୟଶ୍ଚିତ୍ତ ସବନ ଖାଣ୍ଡିକ୍ୟ ବତାୟେ ।**
**ତନ ଢଂଗ ଭୂପତି ଗୟେ ବୁଝି ସବ ତିନହି ସୁନାଏ ।।**
**ପ୍ରାୟଶ୍ଚିତ୍ତ ସୁତେନ୍ୟା ଜନକ, ଆଇ କରେୟା ବିଧିବତ ସକଲ ।**
**ସୋଚେୟା ଗୁରୁ ଖାଣ୍ଡିକ୍ୟଙ୍କୁ ଦଇ ଦକ୍ଷିଣା ନହିଁ ବିପୁଲ ।।"**



## କେଶିଧ୍ୱଜ ଦ୍ୱାରା ଖାଣ୍ଡିକ୍ୟଙ୍କୁ
## ଜ୍ଞାନୋପଦେଶ

"ଖାଣ୍ଡିକ୍ୟଃ କର୍ମତତ୍ତ୍ୱଜ୍ଞୋ ଭୀତଃ କେଶିଧ୍ୱଜାଦ୍ ଦ୍ରୁତଃ ।
ଭାନୁମାଂସ୍ତସ୍ୟ ପୁତ୍ରୋଽଭୂଚ୍ଛତଦ୍ୟୁମ୍ନସ୍ତୁ ତତ୍ସୁତଃ ।।"

(ଶ୍ରୀଭା ୯ସ୍କ, ୧୩ଅ, ୨୧ ଶ୍ଳୋକ)

### ଛପ୍ପୟ

"ଦେନ ଦକ୍ଷିଣା ଗଲ୍ୟେ ନ ଯାଚ୍ୟେ ରାଜକୋଷ ଧନ ।
କହ୍ୟା ଦକ୍ଷିଣା ଦେହୁ ଅସତ୍ ସତ୍ ସମୁଝେ କସମନ ।।
ହଁସି କେଶିଧ୍ୱଜ କହ୍ୟା ଲଭ ଜଗ ତୁମହି ପାୟୋ ।
ସମୁଝି ବିଷୟ ବିଷ ସରସ ନ ଜନମହଁ ଖତ୍ର ଫଁସାୟୋ ।।
ଦେହୀ ଦେହ ପୃଥକ୍ ସତତ, ସୁନହୁ ଜ୍ଞାନ ପରମାର୍ଥ ଯୁତ ।
ଦେହୀ ନିତ୍ୟ ଅନିତ୍ୟ ତନୁ, ତତ୍ ସମ୍ବନ୍ଧୀ ଗେହ ସୁତ ।।"

ଅର୍ଥାତ୍—ଶୁକଦେବ କହୁଛନ୍ତି—"ହେ ରାଜନ୍ ! ଖାଣ୍ଡିକ୍ୟ କର୍ମକାଣ୍ଡ ଜାଣିଥିଲେ । ନିଜ ଭାଇ କେଶିଧ୍ୱଜଙ୍କୁ ଭୟ କରି ବଣକୁ ପଳାଇଗଲେ । କେଶିଧ୍ୱଜଙ୍କ ପୁତ୍ର ଭାନୁମାନ୍ ହୋଇଥିଲେ ଏବଂ ଭାନୁମାନ୍‌ଙ୍କ ପୁତ୍ର ଶତଦ୍ୟୁମ୍ନ ଥିଲେ ।"

ସାଂସାରିକ ଭୋଗ ନଶ୍ୱରଶୀଳ ଏବଂ ପରିଣାମରେ ଦୁଃଖଦାତ୍ମକ ଅଟେ । ବିଦ୍ୱାନ୍‌ମାନେ ଏଥିରେ କେବେହେଲେ ପଶନ୍ତି ନାହିଁ । ଯେଉଁ ବ୍ୟକ୍ତି ଏହି ଶରୀରକୁ ସବୁକିଛି ବୋଲି ଭାବନ୍ତି, ସେମାନେ ବହୁ ଅସତ୍ ଉପାୟରେ ଧନ ଆହରଣ କରିବା-ଲାଗି ଚେଷ୍ଟା କରନ୍ତି । ସେମାନେ ପରମାର୍ଥ ଓ ପରମାତ୍ମାଙ୍କ ବିଷୟରେ ଧାରି ଧାରନ୍ତି ନାହିଁ । ପଇସା ମିଳୁ, ଯଶ ମିଳୁ ଓ ଶରୀର ସୁଖଭୋଗ କରୁ ; ଏହା ହିଁ ହେଉଛି—ସେମାନଙ୍କର ଧାରଣା । ସେମାନେ ନରପଶୁ ଅଟନ୍ତି । ଆହାର, ନିଦ୍ରା ଓ ମୈଥୁନଆଦିକୁ

ସବୁକିଛୁ ବୋଲି ଭାବି, ତା'ର ଉପଭୋଗରେ ସେମାନେ କାଳ ବିତାଇ ଦିଅନ୍ତି । ତେଣୁ ସେମାନେ ଜନ୍ମ-ମରଣରେ ବନ୍ଧନରୁ ତ୍ରାହି ପାଇ ପାରନ୍ତି ନାହିଁ ।

ସୂତ କହିଲେ—"ମୁନିଗଣ ! ଖାଣ୍ଡିକ୍ୟ ଜନକଙ୍କ ଉପଦେଶ ଅନୁସାରେ କେଶିଧ୍ୱଜ ଯଜ୍ଞ ଶେଷକରି, ଗୁରୁଦକ୍ଷିଣା ଦେବାଲାଗି ପୁଣି ଗହନବନକୁ ଯାଇଥିଲେ । ତାଙ୍କୁ ଦେଖି ଖାଣ୍ଡିକ୍ୟ ପୁଣି ଧନୁଶର ଧରି ମାରିବାଲାଗି ଉଦ୍ୟତ ହୁଅନ୍ତେ କେଶିଧ୍ୱଜ କହିଲେ—"ରାଜନ୍ ! ମୁଁ ଯୁଦ୍ଧ କରିବାଲାଗି ତୁମ ପାଖକୁ ଆସି ନାହିଁ । ଆପଣଙ୍କ ଅନୁଗ୍ରହରୁ ମୋ' ଯଜ୍ଞ କୁଶଳରେ ସମ୍ପୂର୍ଣ୍ଣ ହୋଇଗଲା । ତେଣୁ ମୁଁ ଆପଣଙ୍କୁ ଗୁରୁଦକ୍ଷିଣା ଦେବାଲାଗି ଏଠାକୁ ଆସିଛି । ଆପଣ ମୋ'ଠାରୁ ନିଜ ଇଚ୍ଛା ଅନୁସାରେ ଦକ୍ଷିଣା ମାଗି ନିଅନ୍ତୁ ।"

ଏହା ଶୁଣି ପୁଣି ଖାଣ୍ଡିକ୍ୟ ତାଙ୍କ ମନ୍ତ୍ରିମାନଙ୍କ ସହିତ ପରାମର୍ଶ କଲେ । ତହୁଁ ମନ୍ତ୍ରୀମାନେ ତାଙ୍କୁ ପରାମର୍ଶ ଦେଇ କହିଲେ—"ରାଜନ୍ ! ଆପଣ ଏ ସୁଯୋଗ ଛାଡ଼ନ୍ତୁ ନାହିଁ । ଆପଣ ତାଙ୍କ ରାଜ୍ୟ, ସିଂହାସନ ଓ ସୈନ୍ୟବଳ ମାଗି ନିଅନ୍ତୁ । ତା' ଫଳରେ ଆପଣ ବିନା ପରିଶ୍ରମରେ ରାଜାଧୀଶ୍ୱର ହୋଇଯିବେ । ଏପରି ସୁଯୋଗ ଆପଣ ଜାଣିଶୁଣି ଛାଡ଼ନ୍ତୁ ନାହିଁ ।"

ଏହାଶୁଣି ରାଜର୍ଷି ଖାଣ୍ଡିକ୍ୟ ହସି ହସି କହିଲେ—"ଆପଣମାନେ ଲୌକିକ ସ୍ୱାର୍ଥସାଧନରେ ନିପୁଣ ମନ୍ତ୍ରୀ ଅଟନ୍ତି । ଆପଣମାନେ ପାରଲୌକିକ ସ୍ୱାର୍ଥସାଧନରେ ଆଦୌ ଅଭିଜ୍ଞ ନୁହନ୍ତି । ମୁଁ ଏପରି ଏକ ତୁଚ୍ଛ ବସ୍ତୁ କେବେହେଲେ ଦକ୍ଷିଣା ରୂପ ମାଗିବି ନାହିଁ । ଏହି ରାଜ୍ୟ, ସିଂହାସନ ଓ ସୈନ୍ୟବଳ ସବୁକିଛି କ୍ଷଣସ୍ଥାୟୀ । ତେଣୁ ମୋ' ବ୍ରହ୍ମଜ୍ଞାନୀ ଭାଇଙ୍କଠାରୁ ମୁଁ ଏପରି ଗୋଟିଏ ତୁଚ୍ଛ ବସ୍ତୁ କାହିଁକି ମାଗିବି ? ମୁଁ ତାଙ୍କ ପାଖରୁ ଏପରି ଏକ ବସ୍ତୁ ମାଗିବି, ଯାହାଫଳରେ ମୁଁ ଜନ୍ମ ମୃତ୍ୟୁର ଜଞ୍ଜାଳରୁ ମୁକ୍ତ ହୋଇ ପାରିବି ।"

ମନ୍ତ୍ରିମାନେ ଖାଣ୍ଡିକ୍ୟଙ୍କ ଦୃଢ଼ତାପୂର୍ଣ୍ଣ ବାଣୀ ଶୁଣି କହିଲେ—"ଯାହା ଆପଣଙ୍କ ଇଚ୍ଛା ! ଆମେମାନେ ନିଜ ନିଜର ବୁଦ୍ଧି ଅନୁସାରେ ପରାମର୍ଶ ଦେଇଛୁ । ଆପଣ ଯାହା ଭଲ ବୋଲି ଭାବୁଛନ୍ତି, ତାହା ହିଁ କରନ୍ତୁ ।"

ରାଜର୍ଷି ଖାଣ୍ଡିକ୍ୟ କେଶିଧ୍ୱଜଙ୍କ ପାଖକୁ ଆସି କହିଲେ—"ଆପଣ ପ୍ରକୃତରେ କ'ଣ ମୋ' ଇଚ୍ଛାନୁସାରେ ଦକ୍ଷିଣା ଦେବା ଲାଗି ଚାହୁଁଛନ୍ତି ?"

କେଶିଧ୍ୱଜ କହିଲେ—"ଭାଇ ! ମୁଁ ଆପଣଙ୍କୁ କେବଳ ଦକ୍ଷିଣା ଦେବାଲାଗି ଏଠାକୁ ଆସିଛି । ଆପଣ ଯାହା ମାଗିବେ, ମୁଁ ଦକ୍ଷିଣାରୂପେ ତାହା ଅର୍ପଣ କରିବି ।"

ଖାଣ୍ଡିକ୍ୟ କହିଲେ—"ଠିକ୍ ଅଛି ! ଆପଣ ଅଧ୍ୟାତ୍ମବିଦ୍ୟାରେ ପାରଙ୍ଗତ ଅଟନ୍ତି । ତେଣୁ ଆପଣ ମୋତେ ଦକ୍ଷିଣା ସ୍ୱରୂପ 'କର୍ମ' ସମ୍ବନ୍ଧରେ ଉପଦେଶ ଦିଅନ୍ତୁ । ଯାହାଫଳରେ ମୁଁ ସତ୍ ଓ ଅସତ୍ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଅର୍ଜନ କରି ପାରିବି !"

ଏହାଶୁଣି କେଶିଧ୍ୱଜ ଆନନ୍ଦରେ କହିଲେ—"ଆରେ ! ତୁମେ ଏ କ'ଣ ମୋତେ ମାଗିଲ ? ତୁମେ ମୋ'ଠାରୁ ସମଗ୍ର ରାଜ୍ୟ, ସିଂହାସନ ଓ ସୈନ୍ୟସାମନ୍ତ ନ ମାଗିଲ କାହିଁକି ? କ୍ଷତ୍ରିୟମାନଙ୍କ ପକ୍ଷରେ ରାଜ୍ୟଲାଭ ହେଉଛି—ସବୁଠାରୁ ବଡ଼ଲାଭ । ଆପଣ ରାଜ୍ୟ ଲାଭ କରି ପ୍ରଜାମାନଙ୍କୁ ସୁଖ ଶାନ୍ତି ପ୍ରଦାନ କରିଥା'ନ୍ତେ, ଦାନ ପୁଣ୍ୟ କରିଥା'ନ୍ତେ, ମିତ୍ର, ବନ୍ଧୁବାନ୍ଧବଙ୍କୁ ଆନନ୍ଦିତ କରିବା ସଙ୍ଗେ ସଙ୍ଗେ ନିଜେ ମଧ୍ୟ ସୁଖ ଭୋଗ କରିବାର ସୁଯୋଗ ପାଇଥା'ନ୍ତେ । ତା' ବଦଳରେ ଏ' କ'ଣ କଲେ ଆପଣ ?"

ଏହା ଶୁଣିବା ମାତ୍ରେ ଖାଣ୍ଡିକ୍ୟ ଦୃଢ଼ତାର ସହିତ କହିଲେ—"ଭାଇ ! ଆପଣ ମୋତେ ଭୁଲାଇ ଦେଉଛନ୍ତି କାହିଁକି ? ଆପଣ ବୋଧହୁଏ ମୋ' ନିଷ୍ଠାର ପରୀକ୍ଷା ନେଉଛନ୍ତି ! ଆପଣ ଭଲଭାବରେ ଜାଣିଛନ୍ତି—ରାଜ୍ୟଲାଭ କରିବା ମାତ୍ରେ ରାଜା ଅହଙ୍କାରୀ ହୋଇ ଯାଆନ୍ତି, ଏ' ଅହଙ୍କାର ହେଉଛି—ଗୋଟିଏ ପ୍ରକାର ମାଦକ ମଦ୍ୟ । ଏହାକୁ ପାନ କରିବାମାତ୍ରେ ମନୁଷ୍ୟ ଜନ୍ମ ମରଣର ଚକାଭଉଁରୀ ମଧ୍ୟରେ ପଡ଼ିଯାଏ । ମୁଁ ଅବଶ୍ୟ ରାଜ୍ୟ ସିଂହାସନ ନିଜ ଇଚ୍ଛାରେ ଛାଡ଼ି ନାହିଁ । ଆପଣ ବଳପୂର୍ବକ ମୋ'ଠାରୁ ରାଜ୍ୟ ଛଡ଼ାଇ ନେଇ ମୋର ପରମ ଉପକାର କରିଛନ୍ତି । ମୋ'ଠାରେ ଭୋଗଲିପ୍ସା ଯଥେଷ୍ଟ ଥିଲା । କିନ୍ତୁ ଆପଣ ମୋତେ ସେଥିରୁ ଉଦ୍ଧାର କରି ଦେଲେ । ଏତେଦିନ ଧରି ଜଙ୍ଗଲରେ କଷ୍ଟ ସହିବା ଫଳରେ, ମୁଁ ଧନ ସମ୍ପତ୍ତି, ରାଜ୍ୟ, ସିଂହାସନ ଓ କ୍ଷମତାର କ୍ଷଣଭଙ୍ଗୁରତା ବିଷୟରେ ଜାଣିଗଲିଣି । ବିଷୟ-ବାସନା ପ୍ରତି 'ମୋ' ମନରେ ବୈରାଗ୍ୟ ଜାତ ହୋଇଛି । ମୋ' ମନରେ ମୋକ୍ଷପାଇଁ ପ୍ରବଳ ଇଚ୍ଛା ଜାଗ୍ରତ ହୋଇଛି । ଯେଉଁ ଅନ୍ଧକାରମୟ ଗର୍ତ୍ତରୁ ଭଗବାନ ମୋତେ ହାତଧରି ଟାଣି ଆଣିଛନ୍ତି, ମୁଁ ଜାଣି ଶୁଣି ପୁଣି ସେହି ଗର୍ତ୍ତରେ ପଡ଼ିବି ? ଆପଣଙ୍କ-ପରି ବ୍ରହ୍ମଜ୍ଞାନୀ ଓ ଅଧ୍ୟାତ୍ମତତ୍ତ୍ୱ ବିଶାରଦଙ୍କୁ ପାଇ ମୁଁ କ୍ଷୁଦ୍ର ସାଂସାରିକ ବାସନାକୁ କିପରି ଆଦରି ନେଇ ଥାଆନ୍ତି ?"

ଏହାଶୁଣି କେଶିଧ୍ୱଜ କହିଲେ—"ପ୍ରକୃତରେ ଆପଣ ଅଧ୍ୟାତ୍ମଜ୍ଞାନର ଅଧିକାରୀ ହୋଇ ଅଛନ୍ତି । ମୁଁ ମଧ୍ୟ ଯାହା କିଛି କରୁଛି, ମୃତ୍ୟୁରୁ ରକ୍ଷା ପାଇବାପାଇଁ କରୁଛି । ଯେତେବେଳେ ପାପ ପୁଣ୍ୟ ଉଭୟ ମନୁଷ୍ୟଠାରୁ ଦୂରେଇଯିବ, ସେତେବେଳେ ସେ ମୁକ୍ତ ହେବ । ଅବିଦ୍ୟା ହିଁ ସଂସୃତିର କାରଣ ।"

ଖାଣ୍ଡିକ୍ୟ ପଚାରିଲେ—"ଅବିଦ୍ୟା କ'ଣ ?"

କେଶିଧ୍ୱଜ କହିଲେ—"ଅସତ୍‌ଠାରେ ସତ୍‌ ଜ୍ଞାନ ଓ ଅନାତ୍ମଠାରେ ଆତ୍ମଜ୍ଞାନ ହେଉଛି—ଅବିଦ୍ୟା । ଏ' ଦେହ ପଞ୍ଚଭୂତରେ ନିର୍ମିତ ହୋଇଥିବାରୁ ଏହା ନଶ୍ବରଶୀଳ ଅଟେ । ଅଜ୍ଞାନମାନେ ଏ ଦେହକୁ ଆତ୍ମା ବୋଲି ଜ୍ଞାନ କରୁଛନ୍ତି । ତେଣୁ ଅଜ୍ଞାନବ୍ୟକ୍ତି ଦେହର ସୁଖ ଲାଗି ସବୁକିଛି କରିଥାଏ ।"

ଖାଣ୍ଡିକ୍ୟ ପୁଣି ପଚାରିଲେ—"ଦେହ ଯେତେବେଳେ ପଞ୍ଚଭୂତରେ ନିର୍ମିତ, ତାକୁ ପଞ୍ଚଭୂତ କି ସୁଖ ଦେବେ ?"

ଏହାଶୁଣି କେଶିଧ୍ୱଜ କହିଲେ—"ସେମାନେ କେବେହେଲେ ସୁଖ ଦେଇ ପାରିବେ ନାହିଁ । ତାହା କେବଳ ମନରେ ଗୋଟିଏ ଭ୍ରମ । ମଣିଷ ମାଟିରେ ଘରଟିଏ ତିଆରି କରିବା ପରେ, ପୁଣି ମାଟିପାଣି ମିଶାଇ ତାକୁ ଲିପିପୋଛି ସଫାସୁତୁରା କରିଦିଏ । ସେହିପରି ଏ ଦେହ ପୃଥିବୀରୁ ଜାତ ହୋଇଛି ଏବଂ ପାର୍ଥିବ ପଦାର୍ଥ—ଦୁଧ, ଘିଅ, ଅନ୍ନ ଓ ବ୍ୟଞ୍ଜନ ଦ୍ୱାରା ତାହା ପୁଷ୍ଟ ହୋଇଥାଏ । ଅନ୍ନଜଳରେ ଏହାର ସ୍ଥିତି ଅଟେ । ଘରର ମାଲିକ ଘରଟିକୁ ବର୍ଜି କରି ଦେଇ ଅନ୍ୟ ଘରକୁ ଚାଲିଯାଏ । ସେ ଘର ପରିବର୍ତ୍ତନ କରିଦେଲେ ମଧ୍ୟ ନିଜେ ଗୃହସ୍ୱାମୀ ପରିବର୍ତ୍ତିତ ହୁଏ ନାହିଁ । ସେହିପରି ଦେହ ନାଶ ହୋଇଗଲେ ମଧ୍ୟ ଦେହୀ 'ଆତ୍ମା' ନାଶ ହୁଏ ନାହିଁ । ପଞ୍ଚଭୂତରେ ନିର୍ମିତ ଏ ଦେହ, ପଞ୍ଚଭୂତରେ ହିଁ ପରିପୁଷ୍ଟ ହୋଇଥାଏ । ତେଣୁ ଏଥିପାଇଁ ଅହଙ୍କାର କରିବାର କଅଣ ଅଛି ? ଆତ୍ମଦୃଷ୍ଟିରେ ଦେଖିଲେ ଆତ୍ମା ସର୍ବଶ୍ରେଷ୍ଠ ଅଟେ । ଦେହ ଦୃଷ୍ଟିରେ ଦେଖାଗଲେ, ଦେହ ମୋଟା ହେଉ ବା ପତଳା ହେଉ, ସୁରୂପ ବା କୁରୂପ, ଗୋରା ବା କଳା, ଶ୍ରେଷ୍ଠ କିମ୍ବା ବଡ଼; ସବୁକିଛି ନଶ୍ବରଶୀଳ ଅଟେ । ତେଣୁ ଏହି ଦେହଠାରେ ଏତେ ମୋହ କାହିଁକି ?"

ତା'ପରେ ଖାଣ୍ଡିକ୍ୟ ପଚାରିଲେ—"ଦେହୀ ଯେତେବେଳେ ଦେହଠାରୁ ପୃଥକ୍, ସେତେବେଳେ ପ୍ରାଣୀମାନେ ଧନ, ଜନ, ପୁତ୍ର, ପରିବାର ତଥା ଦେହ ପ୍ରତି ଏତେ ଆସକ୍ତ ହେଉଛନ୍ତି କାହିଁକି ?"

କେଶିଧ୍ୱଜ କହିଲେ—"ଅନେକ ଜନ୍ମର କୁସଂସ୍କାର ଫଳରେ ଜୀବ ସଂସାରରେ ବାନ୍ଧିହୋଇ ରହିଥାଏ । ତା'ଫଳରେ ସେ ବାରମ୍ବାର ସଂସାରରେ ଜନ୍ମଗ୍ରହଣ କରି ମୃତ୍ୟୁ ମୁଖରେ ପଡ଼େ । ଦେହର ଉପଚାରରୁ ସେଥିରେ ଜନ୍ମମରଣର ପରିକଳ୍ପନା କରାଯାଏ । ବାସନାର ମଳରେ ମନୁଷ୍ୟ ତା'ର ଅନ୍ତଃକରଣକୁ ମଳିନ କରିଦିଏ, ନିଜ ଯଥାର୍ଥ ସ୍ୱରୂପରୁ ବିଚ୍ୟୁତ ହୋଇଯାଏ । ଅଜ୍ଞାନ ମନୁଷ୍ୟର ଅନ୍ତଃକରଣରେ ଥିବା ମଳକୁ ଜ୍ଞାନ ରୂପକ ଗରମ ଜଳରେ ଧୋଇ ଦିଆଯାଇ ପାରେ । ଯେପରି କୁହୁଡ଼ି ଛାଇଯିବା ମାତ୍ରେ ଜଣାପଡ଼େ—ସୂର୍ଯ୍ୟ ଢାଙ୍କି ହୋଇ ରହିଛନ୍ତି ।

ଅନ୍ତଃକରଣ ରୂପକ ମଳିନବସ୍ତ୍ର ଜ୍ଞାନରୂପକ ଗରମ ପାଣି ଦ୍ୱାରା ଶୁଦ୍ଧ ଓ ନିର୍ମଳ ହୋଇଥାଏ । ଏହିପରି ଭାବରେ ଦେଖିବାକୁ ଗଲେ, ଆତ୍ମା ନିତ୍ୟ, ଶୁଦ୍ଧ, ନିର୍ମଳ ଓ ନିରାମୟ ଅଟେ । ପ୍ରକୃତିର ସଂସର୍ଗରୁ ମନୁଷ୍ୟ ସୁଖୀ ଓ ଦୁଃଖୀ ହୋଇଥାଏ ।"

ଖାଣ୍ଡିକ୍ୟ ପଚାରିଲେ—"ଆଚ୍ଛା କହିଲେ—ଦୁଃଖ, ଅଜ୍ଞାନ ଅଥବା ଭ୍ରମ କେଉଁଠାରେ ଜାତ ହୁଏ ? ପ୍ରକୃତିରେ ନା ଆତ୍ମାରେ ?"

କେଶିଧ୍ୱଜ କହିଲେ—"ଆତ୍ମାଠାରେ ସୁଖ, ଦୁଃଖ, ଅଜ୍ଞାନ ଓ ଭ୍ରମ ଆଦି ସମ୍ଭବ ନୁହେଁ । ଏହା କେବଳ ପ୍ରକୃତିର ଧର୍ମ ଅଟେ । ଆତ୍ମା ଏଥିରୁ ସର୍ବଦା ନିର୍ଲିପ୍ତ ଅଟେ ।"

"ଏହି କ୍ଲେଶ କର୍ମର ନାଶ କିପରି ସମ୍ଭବ ହେବ ?"

କେଶିଧ୍ୱଜ କହିଲେ—"ଯୋଗ ହେଉଛି—କ୍ଲେଶ ନିରାକରଣର ଏକମାତ୍ର ଉପାୟ ।" ଯୋଗ ବ୍ୟତିରେକେ ମନର ଚଞ୍ଚଳତା କେବେହେଲେ ସ୍ଥିର ହୋଇପାରେ ନାହିଁ । ଚିତ୍ତ ସ୍ଥିର ନ ହେଲେ ଆତ୍ମିକ ଭାବ ଜାତ ହୁଏ ନାହିଁ ।"

ଖାଣ୍ଡିକ୍ୟ କହିଲେ—"ହେ ମହାଭାଗ ! ଆପଣ ମୋତେ ସେହି ଯୋଗର ସ୍ୱରୂପ ସମ୍ବନ୍ଧରେ କହନ୍ତୁ ।"

କେଶିଧ୍ୱଜ ଯୋଗର ସରଳ ଉପାୟ ସମ୍ବନ୍ଧରେ ବୁଝାଇବାକୁ ଯାଇ କହିଲେ—"ମନକୁ ବଶ କରିବାର ଅନ୍ୟନାମ ହେଉଛି—ଯୋଗ । ସାଧାରଣତଃ ପ୍ରାଣୀମାନେ ମନର ବଶବର୍ତ୍ତୀ ହୋଇ କାର୍ଯ୍ୟ କରି ଥାଆନ୍ତି । ମନର ଜୟରେ ଜୟ ଓ ପରାଜୟରେ ପରାଜୟ ବୋଲି ଲୋକେ ଗ୍ରହଣ କରନ୍ତି । ବନ୍ଧନ ଓ ମୋକ୍ଷର କାରଣ ମଧ୍ୟ ମନ । ବିଷୟାସକ୍ତ ମନ ବନ୍ଧନର କାରଣ ହୋଇଥାଏ । ବିଷୟବାସନା ପ୍ରତି ବୈରାଗ୍ୟ ମୁକ୍ତିର କାରଣ ଅଟେ । ଅଶୁଦ୍ଧ ମନ ହିଁ ଜୀବକୁ ଚୌରାଶୀ ନର୍କରେ ପକାଇଥାଏ । ସେହିପରି ବିଶୁଦ୍ଧ ମନ ବ୍ରହ୍ମଙ୍କ ସହିତ ନିଜକୁ ସଂଯୋଗ କରାଏ । ବ୍ରହ୍ମଙ୍କ ସହିତ ମନର ସଂଯୋଗକୁ 'ଯୋଗ' କୁହାଯାଏ । ଯେଉଁ ବ୍ୟକ୍ତି 'ଯୋଗ' ସାଧନ କରେ ଓ ମୁକ୍ତିପାଇଁ ପ୍ରଚେଷ୍ଟା କରେ ତାହାକୁ 'ମୁମୁକ୍ଷୁ ଯୋଗୀ' କୁହାଯାଏ । ଯୋଗୀ ଦୁଇ ପ୍ରକାର । ଗୋଟିଏ 'ଯୋଗଯୁକ୍ତ' ଓ ଅନ୍ୟଟି 'ଯୁଞ୍ଜମାନ' । ଯାହାର ସମାଧି ସିଦ୍ଧ ହୋଇ ଯାଇଛି, ତାହାକୁ 'ଯୋଗଯୁକ୍ତ' କୁହାଯାଏ । ଯେ ଯୋଗପାଇଁ ପ୍ରଚେଷ୍ଟା କରୁଛି, ଅଥଚ ବାଧା ଉପସ୍ଥିତ ହେଉଥିବାରୁ ସିଦ୍ଧିଲାଭ କରି ପାରୁନାହିଁ, ତାହାକୁ 'ଯୁଞ୍ଜମାନ' କୁହାଯାଏ । ଯୋଗଯୁକ୍ତ ଯୋଗୀ ସଙ୍ଗେ ସଙ୍ଗେ ମୁକ୍ତ ହୋଇଯାଏ କିନ୍ତୁ ଯାହାଙ୍କର ଯୋଗରେ ଅନ୍ତରାୟ ସୃଷ୍ଟି ହୋଇଥାଏ ସେ

ଜନ୍ମାନ୍ତରରେ ମୁକ୍ତିଲାଭ କରେ । ଯୋଗୀମାନେ ଯମ, ନିୟମର ପାଳନ ସର୍ବଦା କରିଥା'ନ୍ତି ।"

ଖାଣ୍ଡିକ୍ୟ ପୁଣି ପଚାରିଲେ "ଯମ ନିୟମ କେତେ ପ୍ରକାର ?"

କେଶିଧ୍ୱଜ କହିଲେ—"ଯମ ଓ ନିୟମ ପାଞ୍ଚ ପାଞ୍ଚ ପ୍ରକାର ଅଟନ୍ତି । ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ ଏ ପାଞ୍ଚ ପ୍ରକାର ଯମ ଏବଂ ଶୌଚ, ସନ୍ତୋଷ, ତପଃ, ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନ ଏହି ପାଞ୍ଚ ପ୍ରକାର ନିୟମ ଅଟେ । ଏହି ଯମ ଓ ନିୟମକୁ ବିଶେଷ କାମନାର ସହିତ ପାଳନ କରାଗଲେ, ସେହି କାମନା ପୂରଣ ହୋଇଥାଏ । ନିଷ୍କାମଭାବରେ ଯମ ଓ ନିୟମ ପାଳନ କଲେ, ମୋକ୍ଷ-ପ୍ରାପ୍ତି ହୋଇଥାଏ । ଏଥିମଧ୍ୟରୁ ଗୋଟିଏ ବିଷୟକୁ ନିଷ୍କାମ ଭାବରେ ପାଳନ କରାଗଲେ ମୋକ୍ଷପ୍ରାପ୍ତି ହୋଇଥାଏ । ଏହାପରେ ଆସନର ପ୍ରକାର ଅସଂଖ୍ୟ ରହିଛି । ତନ୍ମଧ୍ୟରେ ସୁଖାସନ ମୁଖ୍ୟ । ସେହି ସୁଖାସନରେ ବସି ପ୍ରାଣାୟାମ କରାଯାଇଥାଏ ।"

"ପ୍ରାଣକୁ ସଂଯମ କରିବାର ଅପରନାମ ପ୍ରାଣାୟାମ ଅଟେ । ନିଃଶ୍ୱାସ ପ୍ରଶ୍ୱାସକୁ ପ୍ରାଣ କୁହାଯାଏ । ତାହା ସର୍ବଦା ଯା'ଆସ କରୁଥାଏ । ଏହାକୁ ଅଭ୍ୟାସ ଦ୍ୱାରା ପାଳନ କରାଗଲେ ପ୍ରାଣାୟାମ ହୋଇଥାଏ ।"

"ପ୍ରାଣାୟାମ ପରେ ପ୍ରତ୍ୟାହାର ଅଭ୍ୟାସ କରାଯାଏ । ଚଞ୍ଚଳ ଚିତ୍ତବୃତ୍ତିକୁ ଅନୁବୃତ୍ତ କରିବା ହେଉଛି—ପ୍ରତ୍ୟାହାର । ଚିତ୍ତକୁ 'ଶୁଭାଶ୍ରୟ'ରେ ଲଗାଇବା ହେଉଛି ଶୁଭାଶୟ (ଭଲକାମ) । ଏହି ଶୁଭାଶୟ ମୂର୍ତ୍ତି ଓ ଅମୂର୍ତ୍ତି ଭେଦରେ ଦୁଇପ୍ରକାର । ନିରାକାର ବ୍ରହ୍ମଙ୍କ ଭାବନା ହିଁ 'ଅମୂର୍ତ୍ତି-ଶୁଭାଶୟ' ଅଟେ ଏବଂ ସମଗ୍ର ବିଶ୍ୱକୁ ଭଗବାନଙ୍କ ରୂପାନ୍ତର ବୋଲି ଭାବିବା 'ମୂର୍ତ୍ତି ଶୁଭାଶୟ' ନାମରେ କଥିତ ହୁଏ । ଅନ୍ତଃକରଣରେ ଭଗବାନଙ୍କ ଅମୂର୍ତ୍ତି ସ୍ୱରୂପ ସ୍ଥିର ହୋଇପାରିଲେ, ସମସ୍ତ ପାପ ଭସ୍ମ ହୋଇଯାଏ । ଯମ, ନିୟମ, ଆସନ, ପ୍ରାଣାୟାମ ଓ ପ୍ରତ୍ୟାହାର—ଏହି ପାଞ୍ଚଗୋଟି ବାହ୍ୟସାଧନ, ଧାରଣା, ଧ୍ୟାନ ଓ ସମାଧି ଏହି ତିନିଗୋଟି ଅନ୍ତରଙ୍ଗ ସାଧନ ଅଟେ । ବାହ୍ୟ ଓ ଅନ୍ତରଙ୍ଗ ସାଧନ ଫଳରେ ଯୋଗୀ ବ୍ରହ୍ମଜ୍ଞାନୀ ହୋଇଥାଏ ।"

ଏହି ଅଧ୍ୟାତ୍ମଜ୍ଞାନ ବିଷୟକ ଉପଦେଶ ଶୁଣି ଖାଣ୍ଡିକ୍ୟ କେଶିଧ୍ୱଜଙ୍କ ପ୍ରତି କୃତଜ୍ଞତା ଜଣାଇଲେ । ସେ ତାହାଙ୍କୁ ସତ୍କାର କରି କହିଲେ—"ଭାଇ ! ଆପଣ ମୋର ମନରୁ ସଂଶୟ ଛିନ୍ନ କରି ମୋତେ ଅମୂଲ୍ୟ ଦକ୍ଷିଣା ଦେଇଅଛନ୍ତି । ମୁଁ ସେଥିପାଇଁ ସନ୍ତୁଷ୍ଟ ହୋଇଛି ।"

ମହର୍ଷି ସୂତ କହିଲେ—"ହେ ମୁନିଗଣ ! କେଶିଧ୍ୱଜଙ୍କଠାରୁ ଉପଦେଶ ପାଇ ଖାଣ୍ଡିକ୍ୟ କୃତ କୃତ୍ୟ ହୋଇଗଲେ । କେଶିଧ୍ୱଜ ଖାଣ୍ଡିକ୍ୟଙ୍କ ରାଜ୍ୟ ଫେରାଇ ଦେଲେ । ଖାଣ୍ଡିକ୍ୟ ନିଜ ରାଜ୍ୟର ସିଂହାସନରେ ପୁତ୍ରକୁ ବସାଇ ଯୋଗସାଧନ ନିମିତ୍ତ ବନକୁ ଚାଲିଗଲେ ।"

କେଶିଧ୍ୱଜ ମଧ୍ୟ ନିଷ୍କାମ ଭାବରେ ସମସ୍ତ କାର୍ଯ୍ୟ କରି ଶେଷରେ ପରମପଦ ଲାଭ କଲେ । ତାଙ୍କ ପରେ ଭାନୁମାନ୍ ରାଜା ହୋଇଥିଲେ ।

## ଛପ୍ପୟ

"ସ୍ୱେଁ । ଦୀୟୋ ବହୁ ଗ୍ୟାନ ଭୟୋ କୃତ୍ୟକୃତ୍ୟ ଜନକ ଜବ ।
କୀୟୋ ବହୁ ସତ୍କାର ଗୟୋ କେଶିଧ୍ୱଜ ଗୃହତବ ।।
କରନ ଯୋଗ ଖାଣ୍ଡିକ୍ୟ ଗୟୋ ବନ ଭୂପତି କରି ସୁତ ।
କେଶିଧ୍ୱଜ ହୁ କ୍ଲେଶ କର୍ମ ତଜି ଭୟୋ ଯୋଗଯୁତ ।।
ଜଗମହଁ ଜୀବନ ମୁକ୍ତ ନୃପ, କେଶିଧ୍ୱଜ ହୂ ହ୍ୱୈ ଗୟୋ ।
ତିନକେ ପୀଛେ ତନୟ ତିନ, ଭାନୁମାନ ନୃପତି ଭୟୋ" ।।



# ଜନକବଂଶୀୟ ଶେଷ ରାଜା

"ଏତେ ବୈ ମୈଥିଲା ରାଜନ୍ନାତ୍ମବିଦ୍ୟା ବିଶାରଦାଃ ।
ଯୋଗେଶ୍ୱରପ୍ରସାଦେନ ଦ୍ୱନ୍ଦ୍ୱୈର୍ମୁକ୍ତା ଗୃହେଷ୍ୱପି ॥

(ଶ୍ରୀଭା. ୯ସ୍କ, ୧୩ଅ, ୨୭ ଶ୍ଳୋକ)

## ଛପଦ୍ୟ

"ପୀଢ଼ୀ ସତାଇଶ ମାହିଁ ଅନ୍ତିମ ମୈଥିଳ କୃତି ।
ଉଦୟେ ଜନକ କୁଳମାହିଁ ପରମ ଜ୍ଞାନୀ ସବୁ ଭୂପତି ॥
ଋଷିମୁନି ନିତ ପ୍ରତି ଆଇ କରନ୍ତି ସତ୍‌ସଙ୍ଗ ସଦାହିଁ ।
ଯା କୁଳ ତେଜାଇ କୃପଣ ଅଜ୍ଞନୃପ ପ୍ରକଟ୍ୟୋ ନାହିଁ ॥
ଶୁକ ସମ ତ୍ୟାଗୀ ଜନକ ଢିଗ, ପରମାରଥ ସାଧନ ନିମିତ୍ତ ॥
ଆମ୍ଭେ ତନପଙ୍କ ଶୁଭ ଚରିତ, କରନ୍ତି ସତତ ସଂସାର ହିତ" ॥

ଅର୍ଥାତ୍—ଶ୍ରୀ ଶୁକଦେବ କହୁଛନ୍ତି—"ହେ ରାଜନ୍ ! ଯେଉଁ ମୈଥିଳ ରାଜାମାନଙ୍କ ଚରିତ ମୁଁ ଯାହା ବର୍ଣ୍ଣନ କଲି, ସେମାନେ ଆତ୍ମବିଦ୍ୟା ବିଶାରଦ ଅଟନ୍ତି । ଯୋଗେଶ୍ୱରଙ୍କ କୃପାରେ ସେମାନେ ଗୃହସ୍ଥାଶ୍ରମରେ ରହି ମଧ୍ୟ ସମସ୍ତ ପ୍ରକାର ଦ୍ୱନ୍ଦ୍ୱରୁ ମୁକ୍ତ ଥିଲେ ।"

ରୂପ, ଧନ, କୁଳ ଆଦିର ଗୌରବ ଥିଲେ ମଧ୍ୟ ବ୍ୟକ୍ତିର ପୂଜା କେବଳ ଗୁଣଯୋଗୁ ହୋଇଥାଏ । କେହି ଯଦି କୌଣସି ବିଷୟରେ ଯାଚନା କରିବାକୁ ଆସେ, ତେବେ ତା'ର ଇଚ୍ଛା ପୂରଣ କରିବା ହେଉଛି—ସବୁଠାରୁ ବଡ଼ ଶୁଭକାର୍ଯ୍ୟ । କିନ୍ତୁ ଅଭୟଦାନ ହେଉଛି—ଉନ୍ନତ ଶୁଭକାର୍ଯ୍ୟ । ମନୁଷ୍ୟକୁ ମୃତ୍ୟୁଭୟରୁ ମୁକ୍ତ କରି ଜ୍ଞାନମାର୍ଗ ଦେଖାଇବା ହେଉଛି—ପ୍ରକୃତ ଶୁଭକାର୍ଯ୍ୟ । ଯେଉଁ ବଂଶରେ ଜ୍ଞାନୀ, ଯୋଗୀ ଓ ତପସ୍ୱୀ ଜନ୍ମଗ୍ରହଣ କରିଛନ୍ତି, ସେ କୁଳ ହେଉଛି—ଧନ୍ୟ ।

ସୂତ କହିଲେ—"ହେ ମୁନିଗଣ ! ବର୍ତ୍ତମାନ ଆପଣମାନେ ଭାନୁମାନ୍‌ଙ୍କ ପରବର୍ତ୍ତୀ ରାଜାମାନଙ୍କ ସମ୍ବନ୍ଧରେ ଶୁଣନ୍ତୁ । କେଶିଧ୍ୱଜଙ୍କ ପୁତ୍ର ଭାନୁମାନ୍‌ଙ୍କ ତନୟ ଥିଲେ—ଶତଦ୍ୟୁମ୍ନ । ଶତଦ୍ୟୁମ୍ନଙ୍କ ପୁତ୍ର ଶୁଚି, ତାଙ୍କ ପୁତ୍ର ସନଦ୍ୱାଜ ଏବଂ ତାଙ୍କ ପୁତ୍ର ଊର୍ଦ୍ଧ୍ୱକେତୁ ହୋଇଥିଲେ । ତାଙ୍କ ପରେ ପୁତ୍ର ପରମ୍ପରା କ୍ରମରେ ଅଜ, ପୁରୁଜିତ, ଅରିଷ୍ଟନେମି, ଶ୍ରୁତାୟୁ, ସୁପାର୍ଶ୍ୱକ, ଚିତ୍ରରଥ, କ୍ଷେମଧି, ସମରଥ, ସତ୍ୟରଥ, ଉପଗୁରୁ ଓ ଉପଗୁପ୍ତ ରାଜା ହୋଇଥିଲେ । ତାଙ୍କ ପରେ ପରମ୍ପରା କ୍ରମେ ପୁତ୍ରରୂପେ ବସ୍ୱନନ୍ତ, ଯୁଯୁଧ ସୁଭାଷଣ, ଶ୍ରୁତ, ଜୟ, ବିଜୟ, ଋତ, ଶୁନକ, ବୀତହବ୍ୟ, ଧୃତି ବହୁଲାଶ୍ୱ, କୃତିପ୍ରମୁଖ ମହାବଳଶାଳୀ ରାଜା ହୋଇଥିଲେ । କୃତି ହେଉଛନ୍ତି—ଜନକବଂଶର ଶେଷ ରାଜା ।"

ଏହି ବଂଶର ରାଜାମାନେ 'ଜନକ' ନାମରେ ନାମିତ ଥିଲେ । ଉପନିଷଦ୍‌ରେ ଯାଜ୍ଞବଲ୍‌କ୍ୟ ଓ ଜନକ ସମ୍ବାଦ ଅତ୍ୟନ୍ତ ପ୍ରସିଦ୍ଧ ଅଟେ । ଜନକ ଶବ୍ଦ ଜ୍ଞାନୀ ଅର୍ଥରେ ବ୍ୟବହୃତ ହୁଏ । ଜନକମାନଙ୍କ ବିଷୟରେ ଅନେକ ଆଖ୍ୟାୟିକା ରହିଛି । ଏଥିମଧ୍ୟରୁ ବୃହଦାରଣ୍ୟକ ଉପନିଷଦ୍‌ରେ ବର୍ଣ୍ଣିତ ଗୋଟିଏ କଥା ଏଠାରେ ମୁଁ ଆପଣମାନଙ୍କ ଆଗରେ ଶୁଣାଉଛି—

ଥରେ ମହାରାଜ ଜନକ ଗୋଟିଏ ଯଜ୍ଞ କରି ସେଥିରେ ଅନେକ ଦକ୍ଷିଣା ଦେଇଥିଲେ । ସେହି ଯଜ୍ଞରେ ଦୂରଦୂରାନ୍ତ ସ୍ଥାନରୁ ଆସି ଅନେକ ବ୍ରାହ୍ମଣ ଯୋଗ ଦେଇଥିଲେ । କୁରୁପଞ୍ଚାଳ ରାଜ୍ୟର ଅନେକ ସ୍ୱନାମଧନ୍ୟ ଶାସ୍ତ୍ରଜ୍ଞ ବିଦ୍ୱାନ୍ ସେଥିରେ ଯୋଗ ଦେଇଥିଲେ । ସମସ୍ତଙ୍କୁ ମହାରାଜ ଦାନ ଓ ସମ୍ମାନ ପ୍ରଦର୍ଶନ କରି ସନ୍ତୁଷ୍ଟ କରିଥିଲେ । ତା'ପରେ ରାଜା ଜନକ ଭାବିଲେ—'ଏହି ବ୍ରାହ୍ମଣମାନଙ୍କ ମଧ୍ୟରେ ପୂର୍ଣ୍ଣ ବ୍ରହ୍ମଜ୍ଞାନୀ କିଏ ?' ଏହା ଭାବି ସେ ଏକ ହଜାର ଗାଈ ମଗାଇଲେ । ସେ ଗାଈଗୁଡ଼ିକୁ ସମ୍ମୁଖରେ ରଖି ଘୋଷଣା କଲେ—"ବ୍ରାହ୍ମଣ ଦେବତା ! ଆପଣମାନଙ୍କ ମଧ୍ୟରେ ଯେ ସମସ୍ତଙ୍କଠାରୁ ଅଧିକ ବ୍ରହ୍ମନିଷ୍ଠ, ସେ ସବୁତକ ଧେନୁଙ୍କୁ ନେଇ ଯାଆନ୍ତୁ ।"

ଏହା ଶୁଣିବା ମାତ୍ରେ ବ୍ରାହ୍ମଣମାନେ ପରସ୍ପର ମୁଖକୁ ଚାହିଁ ରହିଲେ । କେହି ହେଲେ ଜଣେ ଆଗେଇ ଯାଇ ପାରିଲେ ନାହିଁ । ସମସ୍ତଙ୍କୁ ଅସମଞ୍ଜସରେ ପଡ଼ିଥିବାର ଦେଖି, ଯାଜ୍ଞବଲ୍‌କ୍ୟ ନିଜ ଶିଷ୍ୟଙ୍କୁ କହିଲେ—"ବତ୍ସ ! ଏହି ଗାଈମାନଙ୍କୁ ଆମ ଆଶ୍ରମକୁ ନେଇଚାଲ" ।

ଶିଷ୍ୟ ସାମଶ୍ରବା ଗୁରୁଙ୍କ ଆଜ୍ଞା ପାଳନ କଲେ । ତହୁଁ ସେଠାରେ ଉପସ୍ଥିତ ବ୍ରାହ୍ମଣମାନେ ଅତ୍ୟନ୍ତ କୁପିତ ହୋଇ ଉଠିଲେ । ତହୁଁ ମହାରାଜାଙ୍କ ପକ୍ଷରୁ ଅଶ୍ୱଳ କହିଲେ—"ମୁନି ଯାଜ୍ଞବଲ୍‌କ୍ୟ ! ଆପଣ କ'ଣ ସମସ୍ତଙ୍କ ଅପେକ୍ଷା ଅଧିକ ବ୍ରହ୍ମଜ୍ଞାନୀ ଅଟନ୍ତି ?"

ତାହାଙ୍କୁ ଶୁଣି ଯାଜ୍ଞବଲ୍‌କ୍ୟ କହିଲେ—"ବ୍ରହ୍ମନିଷ୍ଠ ବ୍ୟକ୍ତିଙ୍କୁ ପ୍ରଣାମ ! ଆମେ କେବଳ ଗାଈମାନଙ୍କୁ ନେଇ ଅଛୁ ।"

ଏହା ଶୁଣିବାମାତେ ବ୍ରାହ୍ମଣମାନେ ଯାଜ୍ଞବଲ୍‌କ୍ୟଙ୍କୁ ଅସଂଖ୍ୟ ପ୍ରଶ୍ନ ପଚାରିଲେ । ଅଶ୍ୱଳ ମଧ୍ୟ ଯାଜ୍ଞବଲ୍‌କ୍ୟଙ୍କୁ ଯେଉଁ ପ୍ରଶ୍ନ କଲେ, ସେ ତାହାର ସମୁଚିତ ଉତ୍ତର ଦେଇଦେଲେ । ତାହାପରେ ଜରତ୍କାରୁ ଆର୍ତ୍ତଭାଗ ପ୍ରଶ୍ନ କରିବାକୁ ଲାଗିଲେ । ତାହାପରେ ଲହ୍ୟାୟନଭୁଜ୍ୟୁ ମୁନି, ଚକ୍ରାୟଣଉଷସ୍ତ, କୌଷୀତକେୟ କହୋଳ, ବ୍ରହ୍ମବାଦିନୀ ଗାର୍ଗୀ, ଅରୁଣିଉଦ୍ଦାଳକ, ଏବଂ ଶାକଲ୍ୟବିଦଗ୍ଧ ଆଦି ପ୍ରଶ୍ନ କରିଥିଲେ । ସମସ୍ତଙ୍କୁ ଯାଜ୍ଞବଲ୍‌କ୍ୟ ଅତି ଚାତୁରତାର ସହିତ ଉତ୍ତର ଦେଲେ । ତହୁଁ ରାଜା ଜନକ ଯାଜ୍ଞବଲ୍‌କ୍ୟଙ୍କୁ ଅନେକ ପ୍ରଶ୍ନ କଲେ । ଜନକ ମୁନି ଯାଜ୍ଞବଲ୍‌କ୍ୟଙ୍କ ଉତ୍ତର ଶୁଣି ଅତ୍ୟନ୍ତ ଆନନ୍ଦିତ ହେଲେ । ସେହିଦିନଠାରୁ ଯାଜ୍ଞବଲ୍‌କ୍ୟ ଜନକ କୁଳର ଜ୍ଞାନଦାତା ଗୁରୁ ହେଲେ ।

ଇକ୍ଷ୍ୱାକୁ କୁଳରେ ବଶିଷ୍ଠ କୁଳଗୁରୁ ଥିଲା ପରି, ଜନକ ବଂଶରେ ଗୌତମ କୁଳଗୁରୁ ଥିଲେ । ତାଙ୍କ ପରେ ଶତାନନ୍ଦ ସେହି ପଦରେ ଅଧିଷ୍ଠିତ ହେଲେ । ଜନକବଂଶୀୟ ରାଜାମାନେ ଅତ୍ୟନ୍ତ ନିରଭିମାନୀ ତଥା ଦାନବୀର ଥିଲେ । ସେମାନେ ମଧ୍ୟ ଆତ୍ମବିଦ୍ୟାରେ ନିପୁଣ ଥିଲେ । ଜନକଙ୍କ ରାଜସଭାରେ ସର୍ବଦା ଅଧ୍ୟାତ୍ମଜ୍ଞାନ ଚର୍ଚ୍ଚା ହେଉଥିଲା । ଉପନିଷଦ୍‌ରେ ଅଛି ଥରେ ଜଣେ ଋଷିଯାଇ ରାଜାଙ୍କୁ ଧନ ପ୍ରାର୍ଥନା କଲେ । ତହୁଁ ରାଜା କହିଲେ—"ବ୍ରହ୍ମନ୍ ! ଆପଣ ମୋତେ ଧନ ମାଗି ମୋର ପରମ ଉପକାର କରିଛନ୍ତି । କାରଣ ଆପଣଙ୍କୁ ଧନଦାନ କଲେ ମୋର ଗୌରବ ବୃଦ୍ଧି ହେବ" । ଏଥିରୁ ଜଣାଯାଏ -ଜନକ ବଂଶୀୟ ରାଜାମାନଙ୍କୁ ଅନ୍ୟ ରାଜାମାନେ ଈର୍ଷ୍ୟା କରୁଥିଲେ ।"

ଏପରି ଅନେକ ଆଖ୍ୟାୟିକା ଶୁଣାଯାଏ—ଯେଉଁଥିରୁ ମନେହୁଏ ଯେ, ଜନକବଂଶୀୟ ରାଜାମାନେ ଗୃହସ୍ଥ ହୋଇ ମଧ୍ୟ ନିସ୍ପୃହ ଥିଲେ । ଆଉ ଗୋଟିଏ ଆଖ୍ୟାୟିକାରୁ ମଧ୍ୟ ଜନକଙ୍କ ପ୍ରାଧାନ୍ୟ ପରିଲକ୍ଷିତ ହୁଏ ।

ଥରେ ଜଣେ ମୁନି ପଚାରିଲେ—"ମହାରାଜ ଜନକ ! ଆପଣ ରାଜ୍ୟ ପରିଚାଳନା କରି ମଧ୍ୟ 'ବିଦେହ' ନାମରେ କିପରି ପ୍ରସିଦ୍ଧ ହୋଇ ପାରିଛନ୍ତି ?"

ତାହା ଶୁଣି ଜନକ କହିଲେ —"ମୁନିବର ! ଆପଣ ଏଠାରେ କିଛିଦିନ ରହନ୍ତୁ । ତା'ପରେ ମୁଁ ଆପଣଙ୍କ ପ୍ରଶ୍ନର ଉତ୍ତର ଦେବି ।"

ମୁନି ସେଠାରେ କିଛିଦିନ ରହିଲେ । ଦିନେ ତାଙ୍କୁ ରାଜା ଜନକ କହିଲେ—"ଆପଣ ଗୋଟିଏ କ୍ଷୀରପୂର୍ଣ୍ଣ ପାତ୍ର ଧରି ବଜାରରେ ବୁଲି ଆସି ପାରିବେ ? ହଁ, ଦେଖନ୍ତୁ, ପାତ୍ରରୁ ଟୋପାଏ ହେଲେ କ୍ଷୀର ଯେପରି ତଳେ ନ ପଡ଼େ ।"

ମୁନିବର କହିଲେ—"ହେଉ, ତାହା କି ହେବ ? ପାତ୍ରରୁ ଟୋପାଏ ହେଲେ କ୍ଷୀରପଡ଼ିବ ନାହିଁ ।"

ଜନକ ପଚାରିଲେ—"ଯଦି ପଡ଼ିଯାଏ...... ?"

ମୁନିବର କହିଲେ—"ତା' ହେଲେ, ଆପଣ ଯେଉଁ ଦଣ୍ଡ ଦେବେ, ମୁଁ ତାହା ଗ୍ରହଣ କରିବି ।"

ଜନକ କହିଲେ—"ଠିକ୍ ଅଛି ..! ଆପଣ କ୍ଷୀର ପୂର୍ଣ୍ଣ ପାତ୍ର ନେଇ ଚାଲନ୍ତୁ । ଆପଣଙ୍କ ପଛେ ପଛେ ଚାରିଜଣ ସିପାହି ଖଡ୍ଗ ଧାରଣ କରି ଯିବେ । ପାତ୍ରରୁ ଟୋପାଏ କ୍ଷୀର ପଡ଼ିଗଲେ, ସେମାନେ ଆପଣଙ୍କ ଶିରଚ୍ଛେଦ କରିଦେବେ ।"

କ୍ଷୀର ପୂର୍ଣ୍ଣ ପାତ୍ରଟିକୁ ହାତରେ ଧରି ମୁନିବର ଧୀରେ ଧୀରେ ରାଜପଥରେ ଚାଲିବାକୁ ଲାଗିଲେ । ମୁନିବର ବୁଲି ଆସିବା ପରେ ପଚାରିଲେ ଜନକ—"ମୁନିରାଜ ! ମୋ' ନଗରର ବଜାର କପରି ? ଦୋକାନ ଗୁଡ଼ିକର ସାଜସଜ୍ଜା କପରି ଦେଖିବାକୁ ?"

ମୁନି ଉତ୍ତର ଦେଇ କହିଲେ—"ରାଜନ୍ ! ମୁଁ ଆପଣଙ୍କ ବଜାର ଆଡ଼କୁ ଥରେ ହେଲେ ଚାହିଁ ନାହିଁ । ଦୋକାନ ଦେଖିବି କ'ଣ ?" ଜନକ କହିଲେ—"ଆଶ୍ଚର୍ଯ୍ୟର କଥା ଆପଣ ସାରାବଜାର ବୁଲି ଆସିଲେ, ଅଥଚ ଆମ ବଜାର ଦେଖିଲେ ନାହିଁ । କାହିଁକି ? ବଜାର ଖୋଲା ଥିଲା ଓ ଦୋକାନଗୁଡ଼ିକ ମଧ୍ୟ ଖୋଲାଥିଲା, ଆପଣ କିଛି ଦେଖିଲେ ନାହିଁ କାହିଁକି ?"

ମୁନି କହିଲେ—"ରାଜନ୍ ! କ'ଣ ଆପଣ କହୁଛନ୍ତି ? ଦୋକାନ ଖୋଲା ଥିଲେ କ'ଣ ହେଲା ? ମୁଁ ତ କ୍ଷୀରପୂର୍ଣ୍ଣ ପାତ୍ର ଆଡ଼କୁ ଏକ ଧ୍ୟାନରେ ଚାହିଁ ଥିଲି । ତେଣୁ ମୁଁ ବଜାର ଭିତର ଦେଇ ଯାଇଥିଲେ ମଧ୍ୟ ଦୋକାନଗୁଡ଼ିକ ଆଡ଼କୁ ଚାହିଁବାର ସୁଯୋଗ ପାଇନାହିଁ" ।

ମୁନିଙ୍କ ଉତ୍ତର ଶୁଣି ଜନକ କହିଲେ—"ଠିକ୍ ଏହିପରି, ମୁଁ ରାଜ୍ୟ-ଶାସନ ମଧ୍ୟରେ ରହିଥିଲେ ମଧ୍ୟ ରାଜସୁଖଭୋଗ ପ୍ରତି ମୋ' ଦୃଷ୍ଟି ଯାଉନାହିଁ ।"

ଏହାଶୁଣି ମୁନି ନିଜ ପ୍ରଥମ ପ୍ରଶ୍ନର ଉତ୍ତର ପାଇ ମନ ଖୁସିରେ ସେଠାରୁ ଅନ୍ୟତ୍ର ଚାଲିଗଲେ ।

ଆଉଦିନେ ଜଣେ ମୁନିଆସି ଜନକଙ୍କୁ ପଚାରିଲେ—"ରାଜନ୍ ! ସାଂସାରିକ ବିଷୟଗୁଡ଼ିକ ବଡ଼ ଆକର୍ଷଣୀୟ । ତା' ବ୍ୟତୀତ ଆପଣଙ୍କ ଅନ୍ତଃପୁରରେ ମଧ୍ୟ ଅନେକ ସୁନ୍ଦରୀ ନାରୀ ଅଛନ୍ତି । ତଥାପି ଆପଣଙ୍କ ମନ ସେ ଆଡ଼କୁ ଆକର୍ଷିତ ହେଉନାହିଁ କାହିଁକି ?"

ଜନକ କହିଲେ—"ବ୍ରହ୍ମନ୍ ! ଆପଣ ପ୍ରଥମେ ଭୋଜନ କରନ୍ତୁ । ତା'ପରେ ଆଲୋଚନା କରିବା ।"

ରାଜା ଜନକ ପାଚକଙ୍କୁ କହି ସ୍ୱାଦିଷ୍ଟ ଖାଦ୍ୟ ପ୍ରସ୍ତୁତ କରାଇଲେ । ସୁନାଥାଳରେ ଖାଦ୍ୟ ପଦାର୍ଥତକ ସଜାଇ ଅଣାଗଲା । ଗୋଟିଏ ସୁନ୍ଦର ଆସନ ବିଛାଇ ମୁନିଙ୍କୁ ବସିବାଲାଗି କୁହାଗଲା । ମୁନି ଲକ୍ଷ୍ୟ କରି ଦେଖିଲେ, ସେ ବସିଥିବା ସ୍ଥାନର ଠିକ୍ ଉପରକୁ ଗୋଟିଏ ପତଳା ସୂତାରେ ଧାରୁଆ ଖଣ୍ଡାଟିଏ ଝୁଲୁଛି । ମୁନି ସେ ଖଣ୍ଡାଟିକୁ ଦେଖି ଥରି ଉଠିଲେ । କାଳେ ଖାଉଥିବାବେଳେ ସେ ଖଣ୍ଡାଟି ତାଙ୍କ ମୁଣ୍ଡ ଉପରେ ଖସି ପଡ଼ିବ ! ସେ ଅବଶ୍ୟ ସଙ୍କୋଚବଶତଃ କିଛି କହି ପାରିଲେ ନାହିଁ । କିନ୍ତୁ ଅତି ସନ୍ତର୍ପଣରେ ସହିତ ଖାଇବାକୁ ଲାଗିଲେ । ସେ ଖାଦ୍ୟ ପଦାର୍ଥର ସ୍ୱାଦ ଆଦୌ ଜାଣି ପାରିଲେ ନାହିଁ ।

ସେ ଖାଇସାରିବା ପରେ ଜନକ ପଚାରିଲେ—"ମହୋଦୟ ! କେଉଁ ତରକାରୀ କପରି ହୋଇଥିଲା ? ବିଶେଷତଃ କ୍ଷୀରି କପରି ହୋଇଥିଲା ? ସେଥିରେ ମିଠା କମ୍ ପଡ଼ି ନ ଥିଲା ତ ?"

ମୁନିବର କହିଲେ—"ମହାରାଜ ! ମୁଁ ଖାଦ୍ୟ ପଦାର୍ଥରୁ କିଛି ସ୍ୱାଦ ବାରି ପାରିନାହିଁ । କାରଣ ମୋ' ମନ ଯାଇ ସେହି ଖଣ୍ଡାରେ ଲାଗି ରହିଥିଲା । କାଳେ ସେ ମୋ' ମୁଣ୍ଡ ଉପରେ ଖସି ପଡ଼ିବ, ସେହି ଭୟରେ ମୁଁ କିଛି ଜାଣି ପାରି ନାହିଁ । ମୋତେ ଖାଦ୍ୟ ପଦାର୍ଥର ସ୍ୱାଦ କିଛି ଜଣା ପଡ଼ିଲା ନାହିଁ" ।

ତହୁଁ ରାଜା ଜନକ କହିଲେ—"ମୋର ଦଶା ଠିକ୍ ଏହିପରି । ମୋ' ମନ ସବୁବେଳେ ପରଂବ୍ରହ୍ମଙ୍କଠାରେ ଲାଗି ରହିଛି । ତେଣୁ ମୁଁ ଆପଣଙ୍କ ପରି ସାଂସାରିକ ସୁଖକୁ ଉପଭୋଗ କରି ପାରୁନାହିଁ ।"

ସୂତ ମହର୍ଷି କହିଲେ—"ହେ ମୁନିଗଣ ! ମହାରାଜା ଜନକଙ୍କ ବିଷୟରେ ଆଉରି ଗୋଟିଏ ଆଖ୍ୟାୟିକା କହୁଛି, ଶୁଣନ୍ତୁ—ଥରେ ଜଣେ ଋଷି ତାଙ୍କ ଶିଷ୍ୟଙ୍କୁ କହିଲେ—ମନ ହେଉଛି ବନ୍ଧନର କାରଣ । ତୁମେ ଘୋର ବନରେ ଯାଇ ତପସ୍ୟା କଲେ ମଧ୍ୟ ମନ ଯଦି ବନ୍ଧନ ମୁକ୍ତ ନୁହେଁ, ତେବେ ତୁମେ ଯୋଗଯୁକ୍ତ ହୋଇ ପାରିବ ନାହିଁ । ମନ ବିଶୁଦ୍ଧ ହେଲେ, ବିଷୟବାସନା ମଧ୍ୟରେ ରହିଲେ ମଧ୍ୟ ମନୁଷ୍ୟ ଯୋଗଯୁକ୍ତ ଓ ବିଶୁଦ୍ଧାତ୍ମା ହୋଇପାରେ । ରାଜା ଜନକଙ୍କର ଏହା ହିଁ ହେଉଛି ବିଶେଷତ୍ୱ । ଚାଲ, ଆମେ ଜନକରାଜାଙ୍କୁ ଭେଟିବା, ତୁମେ ସେଠାରେ ତାଙ୍କୁ ଏହି ବିଷୟରେ ପ୍ରଶ୍ନ କରିବ ।"

ଗୁରୁଶିଷ୍ୟ ଦୁହେଁ ଜନକଙ୍କ ରାଜଧାନୀରେ ଯାଇ ପହଞ୍ଚିଲେ । ଗୁରୁ ବାହାରେ ରହି ଭିତରକୁ ଶିଷ୍ୟଙ୍କୁ ପଠାଇଲେ । ଶିଷ୍ୟ ଜନକଙ୍କ ଅନ୍ତଃପୁରକୁ

ସଙ୍କୋଚରେ ସହିତ ଚାଲିଗଲେ । ସେ ଦେଖିଲେ—ଜନକ ଅନ୍ତଃପୁରରେ ରାଣୀଙ୍କ ପାଖରେ ଶୟନ କରିଛନ୍ତି । ତାଙ୍କର ଗୋଟିଏ ହାତ ତଳକୁ ଝୁଲି ପଡ଼ିଛି ଏବଂ ଆଉ ଗୋଟିଏ ହାତ ରାଣୀଙ୍କ ବକ୍ଷ ଉପରେ ରହିଛି । ଏହା ଦେଖି ଶିଷ୍ୟ ସଙ୍କୋଚରେ ସେଠାରୁ ପଳାଇ ଆସି ଗୁରୁଙ୍କୁ କହିଲେ—"ଗୁରୁଦେବ ! କ'ଣ ଆପଣ ଜନକଙ୍କୁ ଏତେ ପ୍ରଶଂସା କରୁଥିଲେ ? ସେ ଜଣେ ନିର୍ଲଜ ବ୍ୟକ୍ତି । ସେ ତାଙ୍କ ରାଣୀଙ୍କ ବକ୍ଷ ଉପରେ ହାତ ରଖି ଶୋଇଛନ୍ତି । ମୋତେ ଦେଖିଥିଲେ ମଧ୍ୟ ସଙ୍କୋଚ ବୋଧ କଲେ ନାହିଁ ।"

ତହୁଁ ଗୁରୁଦେବ ଶିଷ୍ୟଙ୍କୁ ନେଇ ପୁଣି ଜନକଙ୍କ ଅନ୍ତଃପୁରକୁ ଗଲେ । ଜନକ ସେହିପରି ଭାବରେ ଗୋଟିଏ ହାତ ତଳକୁ ଓହଳାଇ ଶୋଇଥିଲେ । ତାଙ୍କର ଅନ୍ୟ ଗୋଟିଏ ହାତ ରାଣୀଙ୍କ ବକ୍ଷସ୍ଥଳ ଉପରେ ରହିଥିଲା । ମୁନିବର ଖଣ୍ଡିଏ ଜଳନ୍ତା ଅଙ୍ଗାର ନେଇ ଜନକଙ୍କ ହାତରେ ରଖିଦେଲେ । ସେ ଲକ୍ଷ୍ୟକଲେ—ଜନକଙ୍କ ମୁହଁ ବିକୃତ ହେଉନାହିଁ । ତହୁଁ ଗୁରୁଦେବ ଶିଷ୍ୟଙ୍କୁ ବୁଝାଇ କହିଲେ—"ଦେଖିଲ ତ ? ଗୋଟିଏ ହାତରେ ତାଙ୍କର ଜଳନ୍ତା ଅଙ୍ଗାର ଏବଂ ଅନ୍ୟ ହାତଟି ସ୍ତ୍ରୀର ସୁକୋମଳ ବକ୍ଷରେ ରହିଛି । କିନ୍ତୁ ମୁଖମଣ୍ଡଳରେ ତାଙ୍କର ଭାସି ଉଠୁଛି—ଗୋଟିଏ ପ୍ରକାର ଭାବ । ତାଙ୍କ ନିକଟରେ କାମିନୀର କମନୀୟ ଅଙ୍ଗ ଓ ଜଳନ୍ତା ଅଙ୍ଗାର ମଧ୍ୟରେ କିଛି ହେଲେ ପାର୍ଥକ୍ୟ ନାହିଁ । ସର୍ପ ଓ ଫୁଲହାର ମଧ୍ୟରେ ସେ ବିଭେଦ ଜାଣି ପାରନ୍ତି ନାହିଁ । ସେ ସବୁବେଳେ ଅନାସକ୍ତ ଭାବରେ କାର୍ଯ୍ୟ କରି ଯାଆନ୍ତି ।

ତା'ପରେ ମହାରାଜ ଜନକ ଗୁରୁଶିଷ୍ୟ ଦୁହିଙ୍କୁ ଅଭ୍ୟର୍ଥନା ଜଣାଇଲେ ।

ଆଉ ଦିନେ ଜଣେ ମୁନି ଆସି କହିଲେ—"ମହାରାଜ ଜନକ ! ବିଷୟବାସନା ପାଖରେ ରହିଲେ, ତା'ପ୍ରତି ମମତ୍ୱ ଜାତ ହୋଇଥାଏ । ବିଷୟର ତ୍ୟାଗରେ ମମତ୍ୱ ଦୂରେଇ ଯାଏ । ଆପଣ ଏହି ସାଂସାରିକ ବାସନାକୁ ତ୍ୟାଗ କରି ବନରେ ବାସ କରୁ ନାହାନ୍ତି କାହିଁକି ?"

ରାଜା ଜନକ କହିଲେ—"ମହାତ୍ମନ୍ ! ଆପଣ କିଛିଦିନ ମୋ' ସହିତ ରହିଲେ, ସବୁବିଷୟ ନିଜେ ଜାଣିପାରିବେ ।"

ମୁନି ଜନକଙ୍କ ରାଜପୁରୀରେ କିଛିଦିନ ରହିଲେ । ତାଙ୍କ ପାଖରେ କେଇଖଣ୍ଡି ଲେଙ୍ଗୁଟି ଓ ଗୋଟିଏ କମଣ୍ଡଳୁ ଥିଲା । ସେ ସେତକ ଜିନିଷ ନିଜ କୋଠରୀରେ ରଖି ଦିନେ ଜନକଙ୍କ ସଭାରେ ବସିଥିଲେ । ରାଜା ଜନକ ଯୋଗବଳରେ ସେଦିନ ରାଜ-ଭବନରେ ନିଆଁ ଲଗାଇ ଦେଲେ । ନିଆଁ ଜଳି ଉଠିବା ମାତ୍ରେ, କାଳେ ତାଙ୍କ ଲେଙ୍ଗୁଟି ଓ କମଣ୍ଡଳୁ ଜଳିଯିବ, ସେଥିପାଇଁ ମୁନି ଧାଇଁଯାଇ, ସେତକ ନେଇ ପଳାଇ ଆସିଲେ । ତା'ପରେ ତାଙ୍କୁ ଉପଦେଶ ଦେଇ କହିଲେ—"ରାଜା ଜନକ ! ଆପଣ

ସାମାନ୍ୟ କେଇ ଖଣ୍ଡ ଲେଙ୍ଗୁଟି ଓ ଗୋଟିଏ କମଣ୍ଡଳୁର ସୁରକ୍ଷାପାଇଁ ରାଜସଭାରୁ ଉଠି ଧାଇଁଲେ । ଅଥଚ ମୋ' ରାଜପୁରୀ ଧ୍ୱଂସ ମୁଖ ପଡ଼ୁଥିଲେ ମଧ୍ୟ ମୁଁ ନିର୍ବିକାର ଭାବରେ ଏଠାରେ ବସି ରହିଛି । ବନରେ ରହିଲେ ମମତ୍ୱ ଦୂର ହୁଏ ନାହିଁ । ମମତ୍ୱର ଦୂରୀକରଣପାଇଁ ମନର ଦୃଢ଼ତା ଆବଶ୍ୟକ ।''

ଏହା ଶୁଣି ମୁନି ଲଜ୍ଜିତ ହୋଇ କହିଲେ—''ରାଜନ୍ ! ଆପଣ ପ୍ରକୃତରେ ଜଣେ ତ୍ୟାଗୀ ପୁରୁଷ ।''

ଆଉ ଦିନେ ଜଣେ ବ୍ରାହ୍ମଣ କୌଣସି ଗୋଟିଏ ଅପରାଧ କରିବାରୁ, ରାଜା ଜନକ ତାଙ୍କୁ ଦଣ୍ଡ ଦେଇ କହିଲେ—''ଆପଣ ମୋ' ରାଜ୍ୟରୁ ଚାଲି ଯାଆନ୍ତୁ । ଆପଣ ଏଠାରେ ରହିବାପାଇଁ ଯୋଗ୍ୟ ନୁହନ୍ତି ।''

ବ୍ରାହ୍ମଣ ଗମ୍ଭୀର ହୋଇ କହିଲେ—''ରାଜନ୍ ! ଆପଣଙ୍କର କେତୋଟି ରାଜ୍ୟ ଅଛି କି ? ଯେଉଁ ରାଜ୍ୟ ଛାଡ଼ି ଦେଇ ମୁଁ ଅନ୍ୟ ରାଜ୍ୟକୁ ଚାଲିଯିବି ?''

ରାଜା ଜନକ ଏ' ପ୍ରଶ୍ନରେ ବଡ଼ ଅଡୁଆରେ ପଡ଼ିଯାଇ କିଛି ସମୟ ଚିନ୍ତା କରି କହିଲେ—''ମୋର କ'ଣ କ'ଣ ଅଛି, ସେ ବିଷୟରେ ମୁଁ ଚିନ୍ତା କରି ଦେଖିଲି ଯେ କୌଣସି ବିଷୟ ମୋର ନୁହେଁ କିମ୍ବା ସଂସାରର ସମସ୍ତ ବିଷୟ ମୋର ।''

ବ୍ରାହ୍ମଣ ପଚାରିଲେ—''କେବଳ ଆପଣଙ୍କର ନା, ଆଉ କାହାର ?''

ତହୁଁ ରାଜା କହିଲେ—''ମୋର ଏବଂ ଅନ୍ୟମାନଙ୍କର ମଧ୍ୟ ।''

ବ୍ରାହ୍ମଣ କହିଲେ—''ଯଦି ଏହି ସମସ୍ତ ରାଜ୍ୟ ସମସ୍ତଙ୍କର, ତେବେ ଆପଣ କିପରି କହୁଛନ୍ତି, ମୋ' ରାଜ୍ୟ ଛାଡ଼ି ଚାଲିଯାଅ !''

ରାଜା କହିଲେ—''ତାହା ମୋର ଭୁଲ୍ ! ଆପଣ ନିଜ ଇଚ୍ଛାରେ ଯୁଆଡ଼େ ଚାହୁଁଛନ୍ତି ସେଠାକୁ ଚାଲି ଯାଆନ୍ତୁ !''

ବ୍ରାହ୍ମଣ କହିଲେ—''ଏ' ରାଜ୍ୟ ତ ଆପଣଙ୍କ ପୈତୃକ ସମ୍ପତ୍ତି । ତେଣୁ ପରମ୍ପରାନୁସାରେ ଏହା ଆପଣଙ୍କର । କିନ୍ତୁ ଏହାକୁ ଆପଣଙ୍କର ନୁହେଁ ବୋଲି କାହିଁକି କହୁଛନ୍ତି ?''

ରାଜା ଜନକ କହିଲେ—''ଧନୀ, ନିର୍ଦ୍ଧନ, କୁଳୀନ ଅକୁଳୀନ, ସୁରୂପ କୁରୂପ, ବଳବାନ୍ ଓ ନିର୍ବଳ ପ୍ରଭୃତି ଯେତେ କିଛି ଅବସ୍ଥା ରହିଛି, ସବୁତକ ନଶ୍ବରଶୀଳ । ସେଗୁଡ଼ିକୁ ମୋର ବୋଲି କହିବା—ମୂର୍ଖତା । ମୂର୍ଖତାବଶତଃ ମନୁଷ୍ୟ ମନରେ 'ମମତ୍ୱ' ଜାଗ୍ରତ ହୁଏ । ପ୍ରତ୍ୟେକ ପ୍ରାଣୀଙ୍କଠାରେ ଆତ୍ମାର ସତ୍ତା ଅନୁଭବ କଲେ, ମନୁଷ୍ୟ 'ମମତ୍ୱ' ଚକ୍ରରୁ ଉଦ୍ଧାର ପାଇଯିବ ।''

ବ୍ରାହ୍ମଣ ପୁଣି ପଚାରିଲେ—"ଆପଣ କହୁଛନ୍ତି—ଯେଉଁପରି ଭାବରେ ସମସ୍ତ ବିଷୟ ମୋର ସେହିପରି ଭାବରେ ଅନ୍ୟର ମଧ୍ୟ । ତାହା କେଉଁପରି ବୋଲି ଆପଣ ମନେ କରୁଛନ୍ତି ?"

ରାଜା କହିଲେ—"ବ୍ରହ୍ମନ୍ ! ଶବ୍ଦ, ରୂପ, ରସ, ଗନ୍ଧ ଓ ସ୍ପର୍ଶ ଯାହାକିଛି ଇନ୍ଦ୍ରିୟ ବିଷୟ ରହିଛି, ସବୁଗୁଡ଼ିକ ମୋ' ଇନ୍ଦ୍ରିୟ ଗୋଚର ହୋଇଛି । କିନ୍ତୁ ଏଗୁଡ଼ିକୁ ମୁଁ ନିଜପାଇଁ ଗ୍ରହଣ ନାହିଁ । ମୁଁ ଯେଉଁ ବିଷୟଗୁଡ଼ିକ ଉପରେ ବିଜୟ ଲାଭ କରିଛି, ସେଗୁଡ଼ିକ ମୋର ଅଧୀନ ଅଛନ୍ତି । ତେଣୁ ମୁଁ ଯାହା ସଂଗ୍ରହ କରୁଛି, ସେଗୁଡ଼ିକୁ ମୋ' ନିଜପାଇଁ ସଂଗ୍ରହ ନ କରି ଦେବତା, ପିତୃ, ଅତିଥି ଓ ପ୍ରଜାମାନଙ୍କ ପାଇଁ କରୁଛି । ତେଣୁ ସବୁ ବିଷୟ ମୋର ! ତେଣୁ ଆପଣ ଯେଉଁଠି ରହିଲେ ମଧ୍ୟ ମୋ'ର ରାଜ୍ୟରେ ରହିବେ । ସେହି ଦୃଷ୍ଟିରୁ, ଆପଣ ଯେକୌଣସି ସ୍ଥାନରେ ରହି ପାରନ୍ତି ।"

ଏହା ଶୁଣି ବ୍ରାହ୍ମଣ ଉଚ୍ଚ ସ୍ୱରରେ ହସି ଉଠି କହିଲେ—"ରାଜନ୍ ! ମୁଁ ଆପଣଙ୍କ ସମ୍ବନ୍ଧରେ ଯାହା ଶୁଣିଥିଲି, ତାହା ଆଜି ପ୍ରତ୍ୟକ୍ଷ କଲି । ମୁଁ ଧର୍ମ ଦେବତା, ଆପଣଙ୍କୁ ପରୀକ୍ଷା କରିବାପାଇଁ ଆସିଥିଲି । ଆପଣ ଜ୍ଞାନ ବଳରେ 'ମମତ୍ୱ' ଉପରେ ବିଜୟ ଲାଭ କରିଛନ୍ତି ।" ଏହା କହି ଧର୍ମ ଦେବ ସେଠାରୁ ଉଭେଇ ଗଲେ ।

ତା'ପରେ ସୂତ ମୁନି କହିଲେ—"ହେ ମୁନିଗଣ ! ଜନକବଂଶୀୟ ରାଜାମାନଙ୍କ ବିଷୟରେ ଏପରି ଅନେକ କଥା ରହିଛି । କେବଳ ସେମାନେ ନୁହନ୍ତି, ତାଙ୍କ ରାଣୀମାନେ ମଧ୍ୟ ଅନୁରୂପ ପ୍ରଶଂସାର ଅଧିକାରିଣୀ ଅଛନ୍ତି ।"

ମୁନିମାନେ ସେହି ଆଖ୍ୟାନ ଶୁଣିବାକୁ ଆଗ୍ରହ ପ୍ରକାଶ କରନ୍ତେ, ସୂତ ମହର୍ଷି କହିଲେ—"ଥରେ ଜଣେ ଜନକବଂଶୀୟ ରାଜା ରାଜ୍ୟ, ସିଂହାସନ, ଧନ, ରତ୍ନ ଓ ପରିବାରଙ୍କୁ ତ୍ୟାଗ କରି ସନ୍ନ୍ୟାସୀ ହୋଇଗଲେ । ସେ ବନରେ ଏକାକୀ ଖଣ୍ଡିଏ କୁଡ଼ିଆ ତିଆରି କରି ରହିଲେ । ଏଥିରେ ପ୍ରଜାମାନେ ଅତ୍ୟନ୍ତ ଦୁଃଖିତ ହେଲେ । ନିଜେ ମହାରାଣୀ ଯାଇ ଶେଷରେ ରାଜାଙ୍କ ପାଖରେ ପହଞ୍ଚିଲେ । ସେ ଅତ୍ୟନ୍ତ ସାହସିନୀ ହୋଇ କହିଲେ—"ମହାରାଜ ! ଆପଣ ଏ' କି ଖେଳ ଲଗାଇଛନ୍ତି ?"

ରାଜା କହିଲେ—"ତ୍ୟାଗ ବିନା ବିଷୟ ଆସକ୍ତି ଦୂର ହୁଏ ନାହିଁ, ବିଷୟାସକ୍ତି ଦୂର ନ ହେଲେ ଜ୍ଞାନ ଲାଭ ହୁଏ ନାହିଁ । ଜ୍ଞାନ ବିନା ମୁକ୍ତି ଅସମ୍ଭବ । ତେଣୁ ମୁଁ ସେ ସବୁକୁ ତ୍ୟାଗ କରିଛି ।"

ରାଣୀ ହସି ହସି ପଚାରିଲେ—"ଆପଣ କ'ଣ କ'ଣ ତ୍ୟାଗ କରିଛନ୍ତି କହିଲେ ?"

ରାଜା ଉତ୍ତର ଦେଲେ—"ମୁଁ ସଙ୍ଗ, ରାଜ୍ୟ, ଧନ, ଐଶ୍ୱର୍ଯ୍ୟ ସବୁ ତ୍ୟାଗ କରିଛି ।"

ରାଣୀ ଉତ୍ତର ଦେଲେ—"ଏ' ପୃଥିବୀ ପଞ୍ଚଭୂତାତ୍ମକ ଅଟେ । ଆପଣ କ'ଣ ପୃଥିବୀ ଉପରେ ରହୁ ନାହାନ୍ତି ? ପ୍ରାସାଦ ଓ କୁଟୀର ମଧ୍ୟରେ ପାର୍ଥକ୍ୟ କ'ଣ ? ଆପଣ ପ୍ରାସାଦରେ ଥିବାବେଳେ କ'ଣ କ୍ଷିତି, ଜଳ, ବାୟୁ, ଅଗ୍ନି ଓ ଆକାଶର ଉପଯୋଗ କରୁ ନଥିଲେ ? ସେତେବେଳେ ଆପଣ ଏହି ପଞ୍ଚଭୂତକୁ କାର୍ଯ୍ୟରେ ଲଗାଉ ଥିଲେ, ଏବେ ମଧ୍ୟ ଠିକ୍ ସେହିପରି କରୁ ଅଛନ୍ତି । ସେଠାରେ ଆପଣଙ୍କ ଚାରିପଟେ ମନ୍ତ୍ରୀ, ଅମାତ୍ୟ, ଦୂତ, ବ୍ରାହ୍ମଣ ଘେରି କରି ରହୁଥିଲେ ଏବଂ ଏଠାରେ ଶିଷ୍ୟ, ପଶୁ, ପକ୍ଷୀ କୀଟ ଓ ପତଙ୍ଗ ଆପଣଙ୍କ ଚାରିପଟେ ଅଛନ୍ତି । ତେଣୁ ଆପଣ ସଙ୍ଗ-ତ୍ୟାଗ କଲେ କିପରି ?"

ତହୁଁ ରାଜା କହିଲେ—"ମୁଁ ପରିଗ୍ରହ ତ୍ୟାଗ କରିଛି ।" ରାଣୀ ସଙ୍ଗେ ସଙ୍ଗେ ଉତ୍ତର ଦେଇ କହିଲେ—"ଆପଣ ପରିଗ୍ରହ ତ୍ୟାଗ କିପରି କଲେ ? ଏବେ କ'ଣ ଭୋକ ଲାଗିଲେ ଆପଣ ଖାଉ ନାହାନ୍ତି ନା ଶୋଷ କଲେ ପାଣି ପିଉ ନାହାନ୍ତି ? ଆଗରୁ ଆପଣ ରାଜ୍ୟ, ପ୍ରଜା ଓ ସୈନ୍ୟସାମନ୍ତଙ୍କ ସୁରକ୍ଷାରେ ନିଯୁକ୍ତ ଥିଲେ, ଏବେ ଦଣ୍ଡ, କମଣ୍ଡଳୁ, ମାଳା, କୌପୀନର ସୁରକ୍ଷାପାଇଁ ଆପଣ ବ୍ୟଗ୍ର ଅଛନ୍ତି । ସେତେବେଳେ ଆପଣଙ୍କୁ ହଜାର ହଜାର ଲୋକ ଦାନ ମାଗୁଥିଲେ, ବର୍ତ୍ତମାନ ଆପଣ ଉଦର ପୋଷଣ ଲାଗି ନଗରକୁ ଧାଉଁଛନ୍ତି । ସେଠାରେ ଆପଣଙ୍କ ମନରେ ରାଜ୍ୟ, ପରିବାର, ଜ୍ଞାତି ଓ କୁଟୁମ୍ବ ପ୍ରତି ମମତା ରହିଥିଲା, ଏଠାରେ ମଧ୍ୟ ଆଶ୍ରମ, ଶିଷ୍ୟ ଓ ଆଶ୍ରମରେ ପାଳିତ ପଶୁମାନଙ୍କ ପ୍ରତି ଆପଣଙ୍କ ମନରେ ମମତା ଜାଗ୍ରତ ରହିଛି । ବରଂ ମୁଁ କହିବି—ଆପଣ ସେତେବେଳେ ଜଣେ କର୍ମଙ୍କର ଭାବରେ 'ବହୁଜନ ହିତାୟ' 'ବହୁଜନ ସୁଖାୟ' କାର୍ଯ୍ୟ କରୁଥିଲେ ଏବେ କର୍ମକୁଣ୍ଠ ହୋଇ ଆଶ୍ରମରେ ବସି ସମୟ ନଷ୍ଟ କରୁଛନ୍ତି । ଏଥିରେ ହୁଏତ ଆପଣ ଉପକୃତ ହୋଇ ପାରନ୍ତି, କିନ୍ତୁ ପୂର୍ବରୁ ଆପଣ ଅସଂଖ୍ୟ ଲୋକଙ୍କର ଉପକାର କରୁଥିଲେ ।"

ମହର୍ଷି ସୂତ କହିଲେ—"ଏହା ଶୁଣିବା ପରେ ରାଜାଙ୍କର ସନ୍ନ୍ୟାସ ପ୍ରତି ମୋହ ତୁଟିଗଲା । ସେ ରାଣୀଙ୍କ କଥାନୁସାରେ ଆଶ୍ରମରୁ ଫେରିଯାଇ ପୁଣି ପ୍ରଜା-ପାଳନରେ ବ୍ରତୀ ହେଲେ । ତାଙ୍କର ନିଷ୍କାମ ପ୍ରୟାସ ଫଳରେ ପ୍ରଜାମାନେ ସୁଖ ଶାନ୍ତିରେ କାଳଯାପନ କଲେ ।"

"ଜନକବଂଶୀୟ ରାଜାମାନେ ଏତେ ଜ୍ଞାନୀ ଥିଲେ ଯେ, ଆଜନ୍ମ ବ୍ରହ୍ମର୍ଷି ଶୁକଦେବ ମଧ୍ୟ ରାଜା ଜନକଙ୍କୁ ଗୁରୁରୂପେ ସ୍ୱୀକାର କରିଥିଲେ ।"

ଏହାଶୁଣି ଶୌନକ କହିଲେ—"ସୂତ ମହୋଦୟ ! ଆପଣ ଆମକୁ ସେହି ସମ୍ବାଦଟି ଶୁଣାଇ ଅନୁଗୃହୀତ କରନ୍ତୁ ।"

ମୁନିମାନଙ୍କ ଅନୁରୋଧରେ ସୂତମୁନି ଆରମ୍ଭ କଲେ—"ଶୁକଦେବ ଥିଲେ—ଜନ୍ମରୁ ବୈରାଗୀ । ଯେତେ ଚେଷ୍ଟା କରାଗଲେ ମଧ୍ୟ ସେ ଗୃହସ୍ଥାଶ୍ରମ ଆଡ଼କୁ ଆଦୌ ମନ ଦେଲେ ନାହିଁ । ସେ ଦେବଗୁରୁ ବୃହସ୍ପତିଙ୍କଠାରୁ ସମସ୍ତ ଶାସ୍ତ୍ର ଅଧ୍ୟୟନ କରିଥିଲେ । ସେ ଦିନେ ତାଙ୍କ ପିତା ବ୍ୟାସଦେବଙ୍କୁ ପଚାରିଲେ—"ଭଗବନ୍ ! ଆପଣ ମୋକ୍ଷଧର୍ମର ଜ୍ଞାତା ଅଟନ୍ତି । ତେଣୁ ଆପଣ ମୋତେ ମୋକ୍ଷଧର୍ମ ସମ୍ବନ୍ଧରେ ଉପଦେଶ ଦିଅନ୍ତୁ ।"

ବ୍ୟାସଦେବ ବହୁ ଚିନ୍ତାକରି କହିଲେ—"ବତ୍ସ ! ତୁମ ପ୍ରଶ୍ନର ଉତ୍ତର ମୁଁ ଦେଇ ପାରିବି ନାହିଁ । ତେଣୁ ତୁମେ ମହାରାଜ ଜନକଙ୍କ ନିକଟକୁ ଯାଅ । ସେ ମୋକ୍ଷଧର୍ମ ସମ୍ବନ୍ଧରେ ବିଶେଷ ଯୋଗ୍ୟ ବ୍ୟକ୍ତି ଅଟନ୍ତି । ଆଉ ମଧ୍ୟ ତୁମେ ମନେରଖ ଜ୍ଞାନ ଅଧ୍ୟୟନ ନିମିତ୍ତ ଯିବାବେଳେ ତୁମେ ସମ୍ପୂର୍ଣ୍ଣ ନିରଭିମାନ ହୋଇଯିବ । ତୁମେ ତାଙ୍କ ନିକଟକୁ ଯୋଗବଳରେ ନ ଯାଇ ଚାଲି ଚାଲି ତାଙ୍କ ରାଜଧାନୀରେ ଉପସ୍ଥିତ ହେବ । ତାଙ୍କ ନିକଟରେ ପହଞ୍ଚିବା ପରେ, ତାଙ୍କୁ ଉପଯୁକ୍ତ ଭାବରେ ଶ୍ରଦ୍ଧା ଓ ସମ୍ମାନ କରିବ ଏବଂ ତାଙ୍କଠାରୁ କେବେହେଲେ ସମ୍ମାନ ପାଇବାକୁ ଆଶା ରଖିବ ନାହିଁ ।"

ଶୁକଦେବ ପିତାଙ୍କ ଆଶ୍ରମରୁ ବାହାରି, ବଦ୍ରିନାଥ, ବିଷ୍ଣୁପ୍ରୟାଗ ଓ ହୃଷିକେଶ ଆଦି ମାର୍ଗ ଛାଡ଼ି ଦେଇ, କଲାପଗ୍ରାମ ଦେଇ ସରସ୍ୱତୀ ନଦୀର କୂଳେ କୂଳେ ଆଗେଇ ଗଲେ । ତା'ପରେ ସେ କାକଭୁଶୁଣ୍ଡି ପର୍ବତ ପାରହୋଇ ଦୂରଦେଶ (ତିବ୍ବତ)ରେ ପହଞ୍ଚିଲେ । ସେଠାରୁ କୈଳାସ, ମାନସରୋବର ପାରି ହୋଇ ଅଲମୋଡ଼ାରେ ପହଞ୍ଚିଲେ । ତା'ପରେ ସେ ସରଯୂ ନଦୀର କୂଳେ କୂଳେ ଯାଇ ଗଙ୍ଗାତଟରେ ପହଞ୍ଚି, ସେଠାରୁ ମିଥିଳାପୁରୀରେ ଉପଗତ ହେଲେ । ମାର୍ଗ ମଧ୍ୟରେ ତାଙ୍କ ପରି ଜଣେ ଦିଗମ୍ବର ସାଧୁଙ୍କୁ ସମସ୍ତେ ସ୍ୱାଗତ ଜଣାଇଲେ । ସେ ମିଥିଳାପୁରୀରେ ପହଞ୍ଚି ସେଠାକାର ପ୍ରାକୃତିକ ଶୋଭା ସମ୍ପଦ ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେଠାକାର ଆଡ଼ମ୍ବରପୂର୍ଣ୍ଣ ଗୃହ, ବାଟିକା, ବିପଣୀ ତାଙ୍କ ମନକୁ ଆକୃଷ୍ଟ କରି ପାରିଲା ନାହିଁ । ସେ ଯାଇ ମିଥିଳାର ରାଜପୁରୀର ସିଂହଦ୍ୱାରରେ ଉପସ୍ଥିତ ହେଲେ । କିନ୍ତୁ ଦ୍ୱାରପାଳ ତାଙ୍କୁ ଭିତରକୁ ଛାଡ଼ିଲା ନାହିଁ । ସେ ଅପମାନିତ ହୋଇଥିଲେ ହେଁ, ମନରେ ବିଚଳିତ ହେଲେ କିଛି ଭାବିଲେ ନାହିଁ । ଶୁକଦେବ ଥିଲେ—ଜିଜ୍ଞାସୁ, ତେଣୁ ସେ ଆଦୌ ବିଚଳିତ ନ ହୋଇ, ଦ୍ୱାର ଦେଶରେ ଅପେକ୍ଷା କରି ରହିଲେ । ରାଜାଜ୍ଞା ମିଳିବା ପରେ ଦ୍ୱାରପାଳ ତାଙ୍କୁ ରାଜପୁରୀକୁ ନେଇଗଲା । କିନ୍ତୁ ରାଜଭବନର ମୁଖ୍ୟ ଦ୍ୱାରରେ ଆଉ ଜଣେ ପ୍ରହରୀ ତାଙ୍କୁ ଅଟକାଇ ଦେଲା । ତା'ପରେ ସେ ସେହିଠାରେ କିଛି ସମୟ ପୁଣି ଅପେକ୍ଷା କଲେ । ତାଙ୍କ ମନରେ ଆଦୌ କ୍ରୋଧ ଜାତ ହେଲା ନାହିଁ ।

ଏହି ସମୟରେ ମନ୍ତ୍ରୀ ମହୋଦୟ ଆସି ତାଙ୍କୁ ସେଠାରୁ ପାଛୋଟି ନେଲେ । ମନ୍ତ୍ରୀ ମହୋଦୟଙ୍କ ଭବ୍ୟ ସ୍ୱାଗତ ଓ ସମ୍ବର୍ଦ୍ଧନାରେ ସେ ବିଚଳିତହେଲେ ହର୍ଷ ବା

ଆନନ୍ଦ ପ୍ରକାଶ କଲେ ନାହିଁ । ମନ୍ତ୍ରୀ ତାଙ୍କୁ ନେଇ ସୁରମ୍ୟ ଅତିଥିଶାଳାରେ ରଖାଇଲେ । ସେଠାରେ ଅନୁପମ ସୁନ୍ଦରୀ ସ୍ତ୍ରୀମାନେ ପରିଚାରିକା ରୂପେ କାର୍ଯ୍ୟ କରୁଥିଲେ । ଅତିଥିଶାଳାର ପରିସର ମଧ୍ୟ ଅତ୍ୟନ୍ତ ମନୋରମ ଥିଲା । ମହର୍ଷି ଶୁକଦେବ ସେଠାରେ ପହଞ୍ଚିବା ମାତ୍ରେ ସେହି ଅନିନ୍ଦ୍ୟ ସୁନ୍ଦରୀ ନାରୀମାନେ ତାଙ୍କ ପରିଚର୍ଯ୍ୟାରେ ଲାଗି ପଡ଼ିଲେ । ସ୍ନାନ, ଭୋଜନ ପରେ ଶୁକଦେବ ବିଶ୍ରାମ କଲେ । ତହୁଁ ସୁନ୍ଦରୀ ପରିଚର୍ଯ୍ୟାକାରିଣୀମାନେ ଗୀତ, ବାଦ୍ୟ ଓ ନୃତ୍ୟ ଆରମ୍ଭ କରିଦେଲେ । ନର୍ତ୍ତକୀମାନେ ନାନାପ୍ରକାର ଅଶ୍ଳୀଳ ଇଙ୍ଗିତ ପୂର୍ବକ ନୃତ୍ୟ କଲେ ଏବଂ ଗାୟିକାମାନେ ଆଦିରସାତ୍ମକ ଗୀତ ଅର୍ଦ୍ଧରାତ୍ରି ପର୍ଯ୍ୟନ୍ତ ଗାନ କରିଥିଲେ । କିନ୍ତୁ ସେଥିରେ ଶୁକଦେବ ଆଦୌ ବିଚଳିତ ନହୋଇ ବ୍ରହ୍ମସମାଧିରେ ଲୀନ ରହିଲେ ।

ଏହିପରି ଭାବରେ ସେଦିନଟି କଟିଗଲା । ପରଦିନ ରାଜର୍ଷି ଜନକ ପତ୍ନୀ, ମନ୍ତ୍ରୀ ଓ ପୁରୋହିତଙ୍କ ଗହଣରେ ଆସି ମହର୍ଷି ଶୁକଦେବଙ୍କ ସାକ୍ଷାତ୍ କଲେ । ରାଜା ଜନକ ଶୁକଦେବଙ୍କୁ ଆସନ, ପାଦ୍ୟ ଓ ଅର୍ଘ୍ୟ ଆଦି ଉପଚାରରେ ପୂଜା କରି ତାଙ୍କୁ କୁଶଳ ପ୍ରଶ୍ନ ପଚାରିଲେ ।

ଶୁକଦେବ କହିଲେ—"ରାଜନ୍ ! ପିତା ମୋତେ ଆପଣଙ୍କ ନିକଟକୁ ପ୍ରବୃତ୍ତି ନିବୃତ୍ତି ବିଷୟକ ପ୍ରଶ୍ନର ସମାଧାନ ପାଇଁ ପଠାଇ ଅଛନ୍ତି । ପିତା କହିଛନ୍ତି—ଆପଣ ମୋକ୍ଷଧର୍ମର ଜ୍ଞାତା ଅଟନ୍ତି । ତେଣୁ ଆପଣଙ୍କ ଆଶୀର୍ବାଦରୁ ମୁଁ ମୋ' ମନରୁ ସଂଶୟ ଦୂର କରି ପାରିବି ।"

ରାଜା ଜନକ ବିନୀତ ଭାବରେ କହିଲେ—"ଭଗବନ୍ ! ମୁଁ ଯାହା କିଛି ଶିଖିଛି, ସବୁକିଛି ମୋତେ ପୂଜ୍ୟ ଗୁରୁ ବ୍ୟାସଦେବ ଶିଖାଇଛନ୍ତି । ହେଉ, ସେ ବୋଧହୁଏ ଅନ୍ୟକୌଣସି ଉଦ୍ଦେଶ୍ୟରେ ଆପଣଙ୍କୁ ମୋ' ନିକଟକୁ ପଠାଇ ଅଛନ୍ତି । ଆପଣଙ୍କର ସନ୍ଦେହ କଅଣ, ମୋତେ ପଚାରନ୍ତୁ ।"

ଶ୍ରୀ ଶୁକଦେବ କହିଲେ—"ରାଜନ୍ ! ମୁମୁକ୍ଷୁ ଲୋକର କର୍ତ୍ତବ୍ୟ କଅଣ ? ମୋକ୍ଷର ସ୍ୱରୂପ କ'ଣ ? ମୋକ୍ଷ ପ୍ରାପ୍ତିର ସାଧନ ତପସ୍ୟା ନା ଜ୍ଞାନ ?"

ଏହାଶୁଣି ରାଜା ଜନକ ଗମ୍ଭୀର ହୋଇଯାଇ କହିଲେ—"ଆପଣଙ୍କ ପ୍ରଶ୍ନ ଅତ୍ୟନ୍ତ ଗୂଢ଼ । ତଥାପି ମୁଁ ଯଥାସାଧ୍ୟ ଉତ୍ତର ଦେଉଛି, ଶୁଣନ୍ତୁ । ଭଗବନ୍, ଯେ ମୋକ୍ଷ କାମନା କରୁଛି, ତା'ର ଏକମାତ୍ର କାର୍ଯ୍ୟ ହେଉଛି—ପରମାର୍ଥିକ କର୍ମ । ସେ ଗୋଟିଏ ଆଶ୍ରମରୁ ଅନ୍ୟ ଆଶ୍ରମକୁ ଯାଇ ପରମାର୍ଥତତ୍ତ୍ୱ ମୂଳକ କାର୍ଯ୍ୟ କରିବା ଉଚିତ ।"

ଶୁକଦେବ କହିଲେ—"ରାଜନ୍ ! ଅବାଲ୍ୟରୁ ଯାହାର ଜ୍ଞାନ ଉଦୟ ହୋଇ ସାରିଛି, ସେ କ'ଣ ବ୍ରହ୍ମଚର୍ଯ୍ୟାଶ୍ରମରୁ ଗୃହସ୍ଥାଶ୍ରମ, ସେଥିରୁ ବାନପ୍ରସ୍ଥ ଆଶ୍ରମରେ କିଛି କାଳ ରହି, ପୁଣି ସନ୍ନ୍ୟାସ ହେବା ଉଚିତ ?"

ଜନକ କହିଲେ—"ଜ୍ଞାନ ବିଜ୍ଞାନ ପ୍ରାପ୍ତି ବ୍ୟତୀତ ମୋକ୍ଷ ଲାଭ ହୋଇ-ପାରେ ନାହିଁ । ଏଥିପାଇଁ ଗୁରୁ ଆବଶ୍ୟକ । ଗୁରୁ ହିଁ ଏହି ସଂସାରସାଗରରେ ନୌକାର ସନ୍ଧାନ ଦିଅନ୍ତି । ଜ୍ଞାନ ହେଉଛି—ସୁଦୃଢ଼ ନୌକା । କର୍ଣ୍ଣଧାରର କାର୍ଯ୍ୟ ଗୁରୁଦେବ ହିଁ କରିଥା'ନ୍ତି । ପରମ୍ପରା ଅନୁସାରେ ଜ୍ଞାନୀମାନେ ଗୃହରେ ଗୋଟି ବର୍ଣ୍ଣାଶ୍ରମ ଦେଇ ଗଢ଼ କରିଥା'ନ୍ତି । ଯାହାଙ୍କ ମନ ଦୃଢ଼ତଃ ଶୁଦ୍ଧ ହୋଇ ସାରିଛି, ତା'ପକ୍ଷରେ ଆଶ୍ରମର ଆବଶ୍ୟକତା କେଉଁଠି ? ସେ ପରମହଂସ ରୂପେ ସ୍ୱେଚ୍ଛାରେ ବିଚରଣ କରିପାରେ ! କାରଣ ତା' ମନରେ କୌଣସି କାମନା ନାହିଁ । ମନରୁ କାମନା ଦୂର କରିବା ହେଉଛି—ପ୍ରବୃତ୍ତି ମାର୍ଗ । ପ୍ରବୃତ୍ତିମାର୍ଗରେ ପରିଚାଳିତ ହୋଇ ଜ୍ଞାନୀ ନିବୃତ୍ତି ମାର୍ଗର ପଥିକ ହୁଏ । ମହର୍ଷି ବ୍ୟାସଦେବଙ୍କ ଅନୁକମ୍ପାରୁ ଆପଣ ମହାଜ୍ଞାନୀରେ ପରିଣତ ହୋଇଛନ୍ତି । ତେଣୁ ଆପଣଙ୍କ ଚିତ୍ତବୃତ୍ତି ସମ୍ପୂର୍ଣ୍ଣ ଭାବରେ କାମନା ରହିତ ହୋଇଛି । ଆପଣଙ୍କ ପିତୃଦେବଙ୍କ ଦୟାରୁ 'ଆତ୍ମସାକ୍ଷାତ୍କାର' ଜ୍ଞାନରେ ମୁଁ ପାରଙ୍ଗମ ହୋଇଛି । ଯୋଗବଳରେ ମୁଁ ଜାଣି ସାରିଛି ଯେ, ଆପଣଙ୍କ ମନରେ କାମନାର ଲେଶମାତ୍ର ନାହିଁ । ଆପଣଙ୍କ ଆଗମନ ସମ୍ବନ୍ଧରେ ମୁଁ ଜାଣିପାରି, ପରୀକ୍ଷାର ଏକ ଜାଲ ବିସ୍ତାର ଥିଲି । ଆପଣ ସେହି ଜାଲକୁ ଛିନ୍ନ କରି ପରମଜ୍ଞାନୀ ରୂପେ ପ୍ରତିଷ୍ଠିତ ହୋଇ ପାରିଛନ୍ତି । ଆପଣ ସର୍ବଜ୍ଞ, ସମସ୍ତ ଜ୍ଞାନର ଅଧିକାରୀ, ସମଦୃଷ୍ଟି-ସମ୍ପନ୍ନ ତଥା ଅବିକାରୀ ଅଟନ୍ତି । ମୋକ୍ଷଫଳ ଆପଣ ପାଇ ସାରିଲେଣି ।"

ରାଜା ଜନକଙ୍କ ବାକ୍ୟ ଶୁଣି ଶୁକଦେବ ମନେ ମନେ ଆନନ୍ଦିତ ହୋଇ ନିଜ ଇଚ୍ଛାରେ ଅନ୍ୟତ୍ର ଚାଲିଗଲେ ।

ଏହାଶୁଣି ସାରିବା ପରେ ଶୌନକାଦି ମୁନିଗଣ ମହାରାଜ ଦଣ୍ଡକ ଓ ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ ସମ୍ବାଦ ଶୁଣିବା ଲାଗି ଆଗ୍ରହ ପ୍ରକାଶ କଲେ । ଶୁକ୍ରାଚାର୍ଯ୍ୟଙ୍କ ଅଭିଶାପ ଫଳରେ ଦଣ୍ଡକ କପରି ଦଣ୍ଡିତ ହେଲେ, ସେ ସମ୍ବନ୍ଧରେ ସୂତମୁନି ବ୍ୟାଖ୍ୟାନ କରିବାକୁ ପ୍ରତିଶ୍ରୁତି ଦେଇ କହିଲେ—"ମୁଁ ଆପଣମାନଙ୍କୁ ଏହି କଥା ଶୁଣାଇବା ପରେ ସୋମବଂଶ ଚରିତ ବର୍ଣ୍ଣନା କରିବି । ସେହି ବଂଶରେ ଶ୍ରୀ କୃଷ୍ଣଚନ୍ଦ୍ର ଉତ୍ପନ୍ନ ହୋଇଛନ୍ତି ।"

## ଛପ୍‌ପୟ

"ଜନକ ବଂଶକୋ ବିମଲ ଚରିତ ଅତି ସୁଖଦ ସୁନାୟୋ ।
ଜିହି ଜଗମହଁ ଯଶ ଜ୍ଞାନ ଦାନ ଦୈଁ ବିପୁଲ କମାୟୋ ॥
ପ୍ରକଟୀ ଆଦ୍ୟା ଶକ୍ତି ଅମର କୁଲ ଭୟୋ ଭୁବନ ମହଁ ।
କରନ ଜୀବ କଲ୍ୟାଣ ଫିରା ପ୍ରଭୁ ସଙ୍ଗ ବନ ବନ ମହଁ ।
ତ୍ୟୋଂ ଇକ୍ଷ୍ୱାକୁ ନମି ବଂଶ କୀ, କହୀ କଥା ଅତି ସୁଖମୟୀ ।
ଦଣ୍ଡକ ତୀସର ତନୟ କୀ, ସୁନହୁ କଥା ଅବ ଦୁଖ ମୟୀ ।"

# ମହାରାଜ ଦଣ୍ଡକ

"କ୍ଷୁବତସ୍ତୁ ମନୋର୍ଜଜ୍ଞେ ଇକ୍ଷ୍ୱାକୁର୍ଘ୍ରାଣତଃ ସୁତଃ ।
ତସ୍ୟ ପୁତ୍ରଶତ ଜ୍ୟେଷ୍ଠା ବିକୁକ୍ଷିନିମିଦଣ୍ଡକାଃ ।"

(ଶ୍ରୀ ଭା. ୯ । ୬ଅ । ୪ଶ୍ଳୋ ।)

## ଛପ୍ପୟ

"ସୁତ ଇକ୍ଷ୍ୱାକୁ ତୃତୀୟ ଗୟୋ ଦଣ୍ଡକ ବନମାଁହୀ ।
ଶୁକ୍ର ସୁତା ଲଖି ଭଇ ବିକଲତା ଅତି ମନ ମାଁହୀ ।
ଅନୁଚିତ କର ପ୍ରସ୍ତାବ କୁପିତ କନ୍ୟା ତବ କୀନ୍ହୀ ।
ଭୟୋ କାମ ବଶ ଶିଖା ପକର କନ୍ୟାକୀ ଲୀନ୍ହୀ ।।
ଗୁରୁ କୀ କନ୍ୟା ଦ୍ୱିଜ ସୁତା, ବିରଜା ସଂଗମତେ ରହିତ ।
ବୁଦ୍ଧି,ଭ୍ରଷ୍ଟ ନୃପ କୀ ଭଇ, କର ଅନୁଚିତ କୀୟୋ ଅହିତ ।।"

ଅର୍ଥାତ୍—ଶ୍ରୀଶୁକ କହୁଛନ୍ତି—"ହେ ରାଜନ୍ ! ମନୁ ମହାରାଜ ଛିଙ୍କିବା ଫଳରେ ତାଙ୍କ ନାସିକାରୁ ଇକ୍ଷ୍ୱାକୁ ନାମକ ପୁତ୍ର ଜାତ ହୋଇଥିଲେ । ତାଙ୍କର ଶହେ ପୁତ୍ର ଜାତ ହୋଇଥିଲେ । ସେମାନଙ୍କ ମଧ୍ୟରେ ବିକୁକ୍ଷି, ନିମି ଓ ଦଣ୍ଡକ ପ୍ରଧାନ ଥିଲେ ।"

ମନୁଷ୍ୟ ଯେତେବେଳେ କାମବଶ ହୋଇଯାଏ, ସେ ହିତ ଓ ଅହିତ କିଛି ଚିନ୍ତା କରେ ନାହିଁ । ଯାହା ପ୍ରତି ତା' ମନରେ ଆସକ୍ତି ଜାତ ହୁଏ, ସେ ତାହାକୁ ପ୍ରେୟସୀ ରୂପେ ପାଇବାପାଇଁ ପ୍ରାଣପଣେ ଲାଗିପଡ଼େ । ଦୀପଶିଖା ପ୍ରତି ପତଙ୍ଗର ଆସକ୍ତି ଜାତ ହୁଏ । ତେଣୁ ସେ ପ୍ରାଣର ମୋହ ତ୍ୟାଗ କରି ତାକୁ ହିଁ ଆଲିଙ୍ଗନ କରିଥାଏ । ତା' ଫଳରେ ସେ ଭସ୍ମ ହୋଇଯାଏ । ଏହି ଘଟଣା ପରେ ଅନ୍ୟ

ପତଙ୍ଗମାନେ ସାବଧାନ ହୋଇଯିବା ଉଚିତ । କିନ୍ତୁ ସେମାନେ ତାହା କରନ୍ତି ନାହିଁ । ସେମାନେ ଗୋଟି ଗୋଟି ହୋଇ ଅଗ୍ନି ଶିଖାରେ ପ୍ରାଣତ୍ୟାଗ କରନ୍ତି । କାମବାସନାରେ ଆବଦ୍ଧ ହୋଇ କିଏ ଅବା ସୁଖ ପାଇଛି ? ରାବଣ କାମ ବଶରେ ବଶୀଭୂତ ହୋଇ ସୀତାଦେବୀଙ୍କୁ ଅପହରଣ କରିନେଲା । ତା'ଫଳରେ ସେ ସବଂଶ ଧ୍ୱଂସ ହୋଇଗଲା । ଇନ୍ଦ୍ର କାମବଶରେ ଅନ୍ୟାୟ କାର୍ଯ୍ୟ କଲା । ଯାହା ଫଳରେ ତା' ଶରୀର ବିକୃତ ହୋଇଗଲା ଏବଂ ତାଙ୍କ ଇନ୍ଦ୍ରପଦ ଉପରେ ସଙ୍କଟ ପଡ଼ିଲା । ନହୁଷ କାମବଶରେ ବଶୀଭୂତ ହୋଇ ସ୍ୱର୍ଗସାମ୍ରାଜ୍ୟରୁ ବିଚ୍ୟୁତ ହେବା ସଙ୍ଗେ ସଙ୍ଗେ ସର୍ପ ହୋଇ ଯାଇଥିଲେ । ଚନ୍ଦ୍ର କାମବଶରେ କୁଷ୍ଠ ରୋଗାକ୍ରାନ୍ତ ହୋଇଥିଲେ । ବ୍ରହ୍ମା କାମବଶରେ ହରିଣ ରୂପ ଧାରଣ କରିଥିଲେ । ଶିବ କାମାଧୀନ ହୋଇ ମୋହିନୀ କନ୍ୟାଙ୍କ ପଛେ ପଛେ ଧାଇଁ ଧାଇଁ ଲଜ୍ଜିତ ହୋଇଥିଲେ ଏବଂ ବିଷ୍ଣୁ ପାଷାଣ ହୋଇ ଯାଇଥିଲେ । ପରମେଶ୍ୱର କାମଦେବଙ୍କୁ ସୃଷ୍ଟି କରି ପ୍ରାଣୀମାନଙ୍କୁ କାଳର ଅଧୀନ କରି ଅଛନ୍ତି । କାମକୁ ଜୟ କରି ପାରିଲେ 'କାଳ' କିଛି କରି ପାରିବ ନାହିଁ । ବିନ୍ଦୁପାତ ହିଁ ମରଣ ଏବଂ ବିନ୍ଦୁଧାରଣ ହିଁ ଜୀବନ । କାମର ବେଗ ଏତେ ପ୍ରବଳ ଯେ, ସେତେବେଳେ ବୁଦ୍ଧିବୃତ୍ତି କିଛି କାମ କରେ ନାହିଁ । ଚିତ୍ତବୃତ୍ତି ଏତେ ପ୍ରବଳ ହୋଇ ଉଠେ ଯେ, ବିବେକ କାର୍ଯ୍ୟ କରେ ନାହିଁ । ମନୁଷ୍ୟ ବିବଶ ତଥା ଆତ୍ମବିସ୍ମୃତ ହୋଇ ଉଠେ । ସେ କ'ଣ କରୁଛି, ଆଦୌ ଧାରଣା କରିପାରେ ନାହିଁ । ମୁନିମାନେ ଯୋଗଭ୍ରଷ୍ଟ ହୋଇ କାମର ଅଧୀନ ହୋଇ ଉଠନ୍ତି । ସେମାନେ କାମାଧୀନ ହୋଇ ଅନେକ ପ୍ରକାର କଳଙ୍କ କାର୍ଯ୍ୟରେ ମାତି ଉଠନ୍ତି । ଯେଉଁମାନେ ବିଦ୍ୱାନ୍, ଜ୍ଞାନୀ, ଯଶସ୍ୱୀ ତଥା ସାମର୍ଥ୍ୟବାନ୍, ସେମାନେ କାମବଶ ହୋଇ ଅନୁଚିତ କାର୍ଯ୍ୟ କଲେ, ସେମାନଙ୍କୁ ସମୁଚିତ ଦଣ୍ଡଠାରୁ ଅଧିକ ଦଣ୍ଡ ମିଳିବା ଉଚିତ । ଅଜ୍ଞ ବ୍ୟକ୍ତି ଅପରାଧ କଲେ, ତାକୁ କ୍ଷମା ଦିଆ ଯାଇପାରେ ! କିନ୍ତୁ ବିଜ୍ଞ ବ୍ୟକ୍ତିର ଅପରାଧ ମାର୍ଜନୀୟ ନୁହେଁ । ଏହା ହେଉଛି – ସନାତନ ନିୟମ ।

ସୂତ ମହର୍ଷି କହିଲେ—"ମହାରାଜା ଇକ୍ଷ୍ୱାକୁଙ୍କ ପୁତ୍ର ଦଣ୍ଡକ, ପିତାଙ୍କ ଆଦେଶରେ ଦକ୍ଷିଣ ଦେଶରେ ରାଜତ୍ୱ କରୁଥିଲେ । ସେ ଭଗବାନ ଶୁକ୍ରାଚାର୍ଯ୍ୟଙ୍କୁ ନିଜର ପୁରୋହିତ କରାଇ ଥିଲେ । କିନ୍ତୁ ରାଜା ଦଣ୍ଡକ ଥିଲେ—ନିତାନ୍ତ କାମୀ ଓ ଇନ୍ଦ୍ରିୟାଧୀନ ବ୍ୟକ୍ତି ।"

ଦିନେ ରାଜା ଦଣ୍ଡକ ଘୋଡ଼ାରେ ବସି ଅରଣ୍ୟକୁ ଯାଇଥିଲେ । ଠିକ୍ ସେତିକବେଳେ ଶୁକ୍ରଙ୍କ କୁମାରୀ କନ୍ୟା ଅରଜା ଅରଣ୍ୟ ଶୋଭାରେ ମୁଗ୍ଧ ହୋଇ ବନରେ ବୁଲୁଥିଲା । ଅରଜା ଥିଲା—ଅପ୍ରାପ୍ତ ବୟସ୍କା କିନ୍ତୁ ଅପରୂପ ସୁନ୍ଦରୀ । ତା' ସୌନ୍ଦର୍ଯ୍ୟରେ ଅପ୍ସରାମାନେ ମଧ୍ୟ ଲଜ୍ଜିତା ହେଉଥିଲେ । ସେ ବାଲ୍ୟାବସ୍ଥା ପାରି

ହୋଇ କୈଶୋର ବୟସରେ ପଦାର୍ପଣ କରିଥିଲା । ତେଣୁ ସେ ଥିଲା—କାନ୍ତ ଚଞ୍ଚଳା ସ୍ୱପ ଖୁସିରେ ବନଭୂମିକୁ ମୁଖରିତ କରି ସେ ଏଣେତେଣେ ଖେଳି ବୁଲୁଥିଲା ।

ରାଜା ଦଣ୍ଡକ ଅରଜାର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ତା' ପାଖରେ ଯାଇ ପହଞ୍ଚିଲେ । ସେ କନ୍ୟାର ଚଳଚଞ୍ଚଳ ସ୍ୱଭାବରେ ମୁଗ୍ଧ ହୋଇ କହିଲେ—"ଭାମିନି ! ତୁମେ କିଏ ? କାହାର କନ୍ୟା ? ତୁମେ ସାକ୍ଷାତ୍ କମଳା, ପାର୍ବତୀ ଓ ରତି ପରି ମନୋହର ହେଉଛ । ତୁମର ଏ କୋମଳ ପାଦକୁ ଏଠାକାର କଙ୍କରିଳ ଭୂମିରେ ଚାଲିବାକୁ କଷ୍ଟ ହେଉ ନାହିଁ ?"

ଅରଜା ଲଜ୍ଜାରେ ଅବନତାଙ୍ଗୀ ହୋଇ କହିଲା—"ରାଜନ୍ ! ମୁଁ ମହର୍ଷି ଶୁକ୍ରାଚାର୍ଯ୍ୟଙ୍କ କନ୍ୟା । ଏପର୍ଯ୍ୟନ୍ତ ବିବାହ କରିନାହିଁ ।"

ରାଜା ଦଣ୍ଡକ କହିଲେ—"ଦେବି ! ମୁଁ ଏହି ଦେଶର ରାଜା । ବର୍ତ୍ତମାନ ମୁଁ କାମର ଅଧୀନ ହୋଇ ଯାଇଛି । ତୁମର ସୌନ୍ଦର୍ଯ୍ୟ ମୋତେ ମୁଗ୍ଧ କରିଛି । ତୁମକୁ ଆୟୁଧ କରି ମୋତେ କାମଦେବ ଅତିଶୟ ପୀଡ଼ା ଦେଉଛି । ତୁମେ ମୋ' ଉପରେ ଅନୁଗ୍ରହ କର !"

ରାଜାଙ୍କ ଚାଟୁବାଣୀ ଶୁଣିବା ମାତ୍ରେ ଅରଜା ମନେ ମନେ ରାଗରେ ଜଳିଯାଇ କହିଲା—"ରାଜନ୍ ! ଏପରି ବାକ୍ୟ ଆପଣଙ୍କ ମୁଖରେ ଶୋଭା ପାଉ ନାହିଁ । ଆପଣ ଏପରି ଚିନ୍ତା ମନରେ ଆଣିଲେ କିପରି ? ଆପଣ ରାଜା, ସମସ୍ତଙ୍କର ପିତା ସ୍ୱରୂପ । ସେହି ଦୃଷ୍ଟିରୁ ଆପଣ ମୋର ପିତା ଓ ମୁଁ ଆପଣଙ୍କର କନ୍ୟା । ଆପଣ ମୋ ବାପାଙ୍କ ଶିଷ୍ୟ ହୋଇଥିବାରୁ, ମୁଁ ଆପଣଙ୍କର ଭଗିନୀ । ତା'ବ୍ୟତୀତ ଆପଣ କ୍ଷତ୍ରିୟ, ମୁଁ ବ୍ରାହ୍ମଣ କନ୍ୟା । ସେହି ଦୃଷ୍ଟିରୁ ମୁଁ ଆପଣଙ୍କର ପୂଜନୀୟା । ତେଣୁ ଆପଣ ଏପରି କୁବାକ୍ୟ କହିବାକୁ ସାହସ କଲେ କିପରି ? ଆପଣ ଏ ପ୍ରକାର ଧାରଣା ମନରୁ ଦୂର କରି ଆମ ଆଶ୍ରମକୁ ଆସନ୍ତୁ । ସେଠାରେ ମୋ ବାପା ଆପଣଙ୍କୁ ଉଚିତ ସମାଦର କରିବେ ।"

ରାଜା କାମବାଣରେ ଅଧୀର ହୋଇ କହିଲେ—"ସୁନ୍ଦରି ! ବର୍ତ୍ତମାନ ମୋ ମନ ପ୍ରକୃତରେ ମୋ' ଅଧୀନରେ ନାହିଁ । ମୁଁ ତୁମ ସୌନ୍ଦର୍ଯ୍ୟର ଜ୍ୱାଳାରେ ଭସ୍ମ ହୋଇ ଯାଉଛି । ମୁଁ ପ୍ରେମରେ ଅନ୍ଧ ହୋଇ ଗଲିଣି । ତେଣୁ ମୁଁ ତୁମର ହିତ ବଚନ ଶୁଣିଥିଲେ ମଧ୍ୟ ମୋ' ମନ ତାକୁ ଗ୍ରହଣ କରି ପାରୁନାହିଁ । ମୁଁ ତୁମକୁ ପ୍ରେମ କରୁଛି । ମୋତେ ଦୟାକର ସୁନ୍ଦରି !"

ଅରଜା କହିଲା—"ରାଜନ୍ ! ଆପଣ ପ୍ରେମ ଶବ୍ଦକୁ କଳଙ୍କିତ କରନ୍ତୁ ନାହିଁ । ଏହା ହେଉଛି—ଆପଣଙ୍କର ବିଳାସମୟ କାମନା । ଆପଣ ଜାଣିଶୁଣି

ହଲାହଲ ପାନ କରୁଅଛନ୍ତି । ମୋ' ବାପା ଏକଥା ଜାଣିଲେ ଆପଣଙ୍କର ସର୍ବନାଶ କରିଦେବେ । ଆପଣ ଜାଣିଶୁଣି ମୃତ୍ୟୁକୁ ଆଲିଙ୍ଗନ କରନ୍ତୁ ନାହିଁ । ମୁଁ ଅଦ୍ୟାପି ଯୁବାବସ୍ଥା ପ୍ରାପ୍ତ ହୋଇନାହିଁ । ତେଣୁ ଅଗମ୍ୟା ଅଟେ । ଆପଣ ଏପରି ପାପ ଭାବନାକୁ ମନରୁ ଦୂରକରି ଦିଅନ୍ତୁ । ରାଜନ୍ ! ଆପଣ ନିଜର ମଙ୍ଗଳ କାମନା ନିଜେ କରନ୍ତୁ । ନୋହିଲେ ପରିଣାମ ଭୟଙ୍କର ହେବ ।"

ରାଜା କାମାତୁର ହୋଇ କହିଲେ—"ବରବର୍ଣ୍ଣିନି ! ତୁମ ସହିତ ସଙ୍ଗମ ସୁଖ ପାଇବା ପରେ, ମୋର ମୃତ୍ୟୁ ହୋଇଗଲେ ମଧ୍ୟ ଚିନ୍ତା ନାହିଁ । ମୁଁ ମୋ' ରାଜ୍ୟ ଧନ, ଧାନ୍ୟ ତୁମର ପାଦରେ ଅର୍ପଣ କରୁଛି ।"

ଅରଜା ବ୍ୟତିବ୍ୟସ୍ତ ହୋଇ କହିଲା—"କାମାନ୍ଧ କୁକୁର ! ତୁ ହିତାହିତ ଜ୍ଞାନ ହରାଇ ବସିଛୁ । ଯାଃ ମୋ' ଆଗରୁ ଦୂର ହୋଇଯାଃ ।"

ଏହା କହି ଅରଜା ସେଠାରୁ ପଳାଇବାକୁ ଲାଗିଲା ।

ରାଜା ଦଣ୍ଡକ ବୁଦ୍ଧି ହରାଇ ବସିଥିଲେ । ତେଣୁ ସେ ଧାଇଁଯାଇ ଅରଜାର କେଶପାଶ ଧରି ଭିଡ଼ି ଆଣିଲେ । ସେ ତାକୁ ଅଣାୟତ୍ତ କରି ତା ଉପରେ ପାଶବିକ ଅତ୍ୟାଚାର ଆରମ୍ଭ କରିଦେଲେ । ଅରଜା ବହୁତ କାନ୍ଦି, ଚିତ୍କାର କରି ନିଜକୁ ରାଜା ଦଣ୍ଡକ ହାତରୁ ମୁକୁଳାଇବା ପାଇଁ ଯେତେ ଚେଷ୍ଟା କଲା, ସବୁ କିଛି ବ୍ୟର୍ଥ ହୋଇଗଲା । ନରପିଶାଚ ରାଜା ଦଣ୍ଡକ କିଛି ହେଲେ ଶୁଣିଲା ନାହିଁ ।

ଦଣ୍ଡକ ତା'ର କାମବାସନା ପରିତୃପ୍ତ କରିବା ପରେ, ଭୟରେ ସେଠାରୁ ପଳାଇ ଗଲା । ଅରଜା ଲଜ୍ଜାରେ ମୁହଁ ତଳକୁ କରି କାନ୍ଦି କାନ୍ଦି ଯାଇ ଆଶ୍ରମରେ ପହଞ୍ଚିଲା । କନ୍ୟାର ଅବସ୍ଥା ଲକ୍ଷ୍ୟ କରି ଶୁକ୍ରାଚାର୍ଯ୍ୟ ଧ୍ୟାନ ବଳରେ ସବୁକିଛି ଜାଣି ପାରିଲେ । ସେ ରାଜା ଦଣ୍ଡକର ଔଦ୍ଧତ୍ୟରେ ଅଗ୍ନିଶର୍ମା ହୋଇଯାଇ ଅଭିଶାପ ଦେଇ କହିଲେ— "ଯେଉଁ କ୍ରୂରକର୍ମୀ, ନୀଚ ଓ ନିର୍ଲଜ ରାଜା ଏପରି ଜଘନ୍ୟ କାର୍ଯ୍ୟ କରିଛି, ତା' ରାଜ୍ୟ ନଷ୍ଟ ହୋଇଯାଉ ! ତା' ରାଜ୍ୟରେ ଗୋଟିଏ ହେଲେ ପଶୁପକ୍ଷୀ ମଧ୍ୟ ନ ବଞ୍ଚନ୍ତୁ । ସାତଦିନ ଧରି, ତା'ରାଜ୍ୟରେ ତାତିଲା ବାଲି ବୃଷ୍ଟି ହେଉ ! ତା' ରାଜ୍ୟ ବାଲୁକାମୟ ଅରଣ୍ୟରେ ପରିଣତ ହୋଇଯାଉ !"

ଏହି ଅଭିଶାପ ଦେବାପରେ, ସେ ଅନ୍ୟାନ୍ୟ ମୁନିମାନଙ୍କୁ ସେଠାରୁ ପଳାଇ ଯିବାପାଇଁ ଆଦେଶ ଦେଲେ ଏବଂ ନିଜ କନ୍ୟାକୁ ଆଦେଶ ଦେଇ କହିଲେ— "ତୁ ଏହିଠାରେ ରହି ଘୋର ତପସ୍ୟା କର । ମୁଁ ବରଦାନ ଦେଉଛି—ତୋର ଏ' ଆଶ୍ରମ ନଷ୍ଟ ହେବନାହିଁ । ଏହିଠାରେ ତପସ୍ୟା କରିବା ପରେ ତୁ କାଳକ୍ରମେ ବଇକୁଣ୍ଠ ହୋଇଯିବୁ ।"

ଶୁକ୍ରାଚାର୍ଯ୍ୟ ଝିଅରଜାକୁ ସେଠାରେ ରଖାଇ ଅନ୍ୟତ୍ର ଚାଲିଗଲେ । ମୁନିଙ୍କ ଅଭିଶାପ ଅସତ୍ୟ ହୋଇ ନପାରେ । ସାତଦିନ ସାତରାତି ଅଗ୍ନିକଣା ମିଶ୍ରିତ ବାଲି ବର୍ଷା ହେବାକୁ ଲାଗିଲା । ତା' ଫଳରେ ସମଗ୍ର ରାଜ୍ୟ ଧ୍ୱଂସ ପାଇଗଲା । ଦଣ୍ଡକ ରାଜାଙ୍କ ନାମାନୁସାରେ ସେ ସ୍ଥାନର ନାମ ହେଲା—'ଦଣ୍ଡକାରଣ୍ୟ' । ଅନେକ ଦିନ ପର୍ଯ୍ୟନ୍ତ ସେଠାରେ ଗଛ, ପତ୍ର ପଶୁ, ପକ୍ଷୀ କେହି ରହୁ ନଥିଲେ । କିଛିକାଳ ବିତିଗଲା ପରେ ଶ୍ରୀରାମଚନ୍ଦ୍ର ସେହି ବନକୁ ଆସିବାର ସୂଚନା ପାଇ, ମୁନିମାନେ ସେଠାରେ ଆସି ରହିବାକୁ ଲାଗିଲେ । ତା'ପରେ ସେ ସ୍ଥାନ ଅତ୍ୟନ୍ତ ପବିତ୍ର ସ୍ଥାନ ରୂପେ ପରିଗଣିତ ହେଲା । ଶ୍ରୀରାମଙ୍କ ପାଦଧୂଳି ପଡ଼ିବା ପରେ ସେ ସ୍ଥାନ ପୂର୍ବପରି ହସି ଉଠିଲା ।

ସୂତ ମହୋଦୟ କହିଲେ—"ହେ ମୁନିଗଣ ! ଏହିପରି ଭାବରେ ରାଜା ଦଣ୍ଡକଙ୍କ ବଂଶ ଧ୍ୱଂସ ହୋଇଗଲା । ଏହି ଘଟଣାଟିକୁ ମୁଁ ଆପଣମାନଙ୍କ ଆଗରେ ଅତି ସଂକ୍ଷେପରେ ବର୍ଣ୍ଣନା କଲି । ଏହାପରେ ମୁଁ ଚନ୍ଦ୍ରବଂଶର ରାଜାମାନଙ୍କ ବଂଶ ବର୍ଣ୍ଣନା କରିବି ।"

ମୁନିଗଣ କହିଲେ—"ସୂତ ମହୋଦୟ ! ଚନ୍ଦ୍ରବଂଶରେ ଭଗବାନ କୃଷ୍ଣଚନ୍ଦ୍ର ଜନ୍ମ ହୋଇ କି କି କୃତ୍ୟ କରିଥିଲେ, ଆମେ ସେହି ବୃତ୍ତାନ୍ତ ଶୁଣିବାକୁ ଆଗ୍ରହ ପ୍ରକାଶ କରୁଛୁ । ଆପଣ ଅନୁଗ୍ରହ କରି ଚନ୍ଦ୍ରବଂଶର ବର୍ଣ୍ଣନା କରିବା ସଙ୍ଗେ ସଙ୍ଗେ ଶ୍ରୀକୃଷ୍ଣଙ୍କ ଲୀଳା ସମ୍ବନ୍ଧରେ ଆଲୋଚନା କରନ୍ତୁ ।"

ଏହାଶୁଣି ସୂତ କହିଲେ—"ମୁନିଗଣ ! ଏହାପରେ ମୁଁ ଆପଣମାନଙ୍କ ଆଗରେ ଚନ୍ଦ୍ରବଂଶର ବର୍ଣ୍ଣନା କରିବି । ଆପଣମାନେ ସାବଧାନ ହୋଇ ତାହା ଶ୍ରବଣ କରନ୍ତୁ ।"

## ଛପ୍ପୟ

"ଲଜ୍ଜିତ ପିତୁ ଢିଂଗ ଗଇ ଶୁକ୍ରତନୟା କବ ସେବନ୍ତ ।
ଦୁହିତା ଦେଖି ଦୁଖିତ କୁପିତ ତବ ଭୟେ ଶୁକ୍ର ଅତ ॥
ଦୟୋ ଶାପ ନୃପ ସକ ନଷ୍ଟ ହେଁ କାଉେଁ ସବଇ ।
ବରସି ବାଲୁ ତପ୍ତ ଭୟୋ ଦଣ୍ଡକବନ ତବଇ ।
ଘୋର ପାପ ତେଂ ପଲକମହଁ, ଧୂର ମାହଁ ବୈଭବମିଲେଯା ।
ନଷ୍ଟ ଭୟୋ ପରିବାର ସବ, ଫର ଦଣ୍ଡକ କୁଲ ନହିଁ ଚଲେଯା ॥"

●

ମୁଦ୍ରଣ—କଲ୍ୟାଣୀ ପ୍ରିଣ୍ଟର୍ସ, ପିଠାପୁର, କଟକ